ପ୍ରକାଶକ: **ଦକ୍ଷ ବୁକ୍ସ**, କଟକ
ମୁଦ୍ରଣ: ଜଗନ୍ନାଥ ପ୍ରୋସେସ୍ ପ୍ରା.ଲି., ଡଗରପଡା, କଟକ

Published in and by
Dakshya Books
(A unit of Dakshya Venture Pvt Ltd)
305, Siddhivinayak Residency
Jharpada,-751006, Bhubaneswar,
Khurdha, Odisha, India
Mob- 9778311533
E-mail: dakshyaodisha@gmail.com


Printed at Jagannath Process Pvt. Ltd
Dagarapada, Cuttack-02



**ALAPA**
Nonfiction
1st Edition : 2014

Price : ₹ **250/-**

# ପଦେ:

“ଆଳାପ” ସାହିତ୍ୟିକମାନଙ୍କ ସହିତ ହୋଇଥିବା ସାକ୍ଷାତକାର ସଂଗ୍ରହର ଏକ ରୂପ। ଓଡିଶାର ପ୍ରଥମ ମହିଳା ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥିଙ୍କ ସ୍ମୃତିରେ ଧରିତ୍ରୀ ପକ୍ଷରୁ ପ୍ରକାଶ ପାଇ ଆସୁଥିବା “ସାହିତ୍ୟାୟନ” ପାଇଁ ସେପ୍ଟେମ୍ବର ୨୦୦୭ରୁ ସେପ୍ଟେମ୍ବର ୨୦୧୨ ମଧ୍ୟରେ ବିଭିନ୍ନ ସମୟରେ ମୁଁ ଏହି ପୁସ୍ତକରେ ସନ୍ନିହିତ ସାହିତ୍ୟିକମାନଙ୍କୁ ସାକ୍ଷାତ କରିଥିଲି । ଏହି ସମସ୍ତ ସାକ୍ଷାତକାରଗୁଡ଼ିକ ପ୍ରସ୍ତୁତ କଲାବେଳେ ମୁଁ ପ୍ରାୟ ଓଡିଶା ଏବଂ ଓଡିଶା ବାହାରର ଅନେକ ସାହିତ୍ୟିକଙ୍କୁ ଭେଟିଛି ଏବଂ ସେମାନଙ୍କର ସଂପୂର୍ଣ୍ଣ ସହଯୋଗ ପାଇଛି । ଏହି ସୁ-ପ୍ରତିଷ୍ଠିତ ସାହିତ୍ୟିକମାନଙ୍କୁ ଭେଟି ସେମାନଙ୍କ ସାହିତ୍ୟ ଜୀବନକୁ ନେଇ ପ୍ରଶ୍ନ ସବୁ ତିଆରି କରିବା ପାଇଁ ମୋତେ ଅନେକ ବେଳରେ ସେମାନଙ୍କର ସାହିତ୍ୟ ଭିତରକୁ ପଶିବାକୁ ପଡିଛି । ଯ’ଦ୍ୱାରା ମୁଁ ସେମାନଙ୍କୁ ଅତି ନିକଟରୁ ଜାଣିବାର ସୁଯୋଗ ପାଇଲି ଏବଂ ସାହିତ୍ୟ ତଥା ସାହିତ୍ୟିକଙ୍କ ସଂପର୍କରେ ଅଧିକ ଜ୍ଞାନ ଆହରଣ କଲି । ଏହି ସୁଯୋଗ “ଧରିତ୍ରୀ” ପକ୍ଷରୁ ମୋତେ ମିଳିଥିବାରୁ ମୁଁ ଧରିତ୍ରୀର ସଂପାଦକ ଶ୍ରୀଯୁକ୍ତ ତଥାଗତ ସତପଥି ଏବଂ ପ୍ରକାଶକ ଶ୍ରୀଯୁକ୍ତ ଦଣ୍ଡପାଣି ମିଶ୍ରଙ୍କ ନିକଟରେ ଋଣୀ। “ଧରିତ୍ରୀ” ସାହିତ୍ୟାୟନର ଦାୟିତ୍ୱରେ ଥିବା ଶ୍ରୀଯୁକ୍ତ କମଳାକାନ୍ତ ପତିଙ୍କ ସମୟୋପଯୋଗୀ ପରାମର୍ଶ ପାଇଁ ତାଙ୍କୁ ଅଶେଷ ଧନ୍ୟବାଦ । ପ୍ରକାଶିତ ଏହି ସାକ୍ଷାତକାରଗୁଡ଼ିକ ପାଠକମାନଙ୍କ ପାଖରେ ଖୁବ୍ ଆଦୃତ ଲାଭ କରିଥିଲା ଏବଂ ପ୍ରଶଂସିତ ହୋଇଥିଲା । ଯାହାକି ମୋତେ ପରବର୍ତ୍ତୀ ସମୟରେ ସେସବୁକୁ ଏକାଠି କରି ଏକ ପୁସ୍ତକ ରୂପରେ ପ୍ରକାଶ କରିବାରେ ମୋ ଭିତରେ ଇଚ୍ଛା ଜାଗ୍ରତ କରାଇଲା । ଆଜି ଯେତେବେଳେ ସେହି ସାକ୍ଷାତକାର ଗୁଡ଼ିକ ପୁସ୍ତକର ରୂପ ନେଉଛି ମୁଁ ମହାପ୍ରଭୁ ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ନିକଟରେ ଆଶା ବାନ୍ଧୁଛି ତାଙ୍କରି ଆଶୀର୍ବାଦରେ “ଆଳାପ” ପୂର୍ବଭଳି ପାଠକଙ୍କ ଦ୍ୱାରା ଆଦୃତ ହେଉ।

*-ସୁନୀତି*



# ଯିଏ କବିପ୍ରାଣ ସେ କବି

## ରମାକାନ୍ତ ରଥ:

ଲେଖାଟିଏ ପ୍ରକାଶିତ ହେବା ପରେ ପରେ ତାହା ଆଉ ଲେଖକର ସମ୍ପତ୍ତି ହୋଇରହେ ନାହିଁ, ହୋଇଯାଏ ପାଠକର ସମ୍ପତ୍ତି। ବିନମ୍ରତାର ସହ ଏଭଳି ମତ ରଖନ୍ତି ବିଶିଷ୍ଟ କବି ତଥା ବହୁ ଚର୍ଚ୍ଚିତ କାବ୍ୟ 'ଶ୍ରୀରାଧା'ର ସ୍ରଷ୍ଟା ରମାକାନ୍ତ ରଥ। ୧୧ ଟି କବିତା ସଂକଳନ ଓ ଗୋଟିଏ ଯୁଦ୍ରଗଳ୍ପ ସଂକଳନ ପ୍ରକାଶିତ ତାଙ୍କର। ସାହିତ୍ୟ କୃତି ପାଇଁ ତାଙ୍କୁ ମିଳିଛି କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରଠାରୁ ଆରମ୍ଭକରି ସରସ୍ୱତୀ ସମ୍ମାନ ଓ ଆହୁରି ଅନେକ ପୁରସ୍କାର। ତାଙ୍କ ସାହିତ୍ୟ ଓ ସାହିତ୍ୟିକ ଜୀବନ ସମ୍ପର୍କରେ ଆଳାପ।

ପ୍ରଶ୍ନ. ଆପଣଙ୍କ ସାହିତ୍ୟ ଜୀବନର ଆରମ୍ଭ କିପରି ?

ଉତ୍ତର. କେତେବେଳେ ଆରମ୍ଭ ହୋଇଗଲା ଜାଣିପାରିଲି ନାହିଁ। ସବୁ ବରପ୍ରାପ୍ତିର, ଅଭିଶାପର ଆରମ୍ଭ ଏପରି। ପାଇଛି ବୋଲି ବୁଝିଲା ବେଳକୁ ପାଇବାର ବେଶ୍ କିଛିଦିନ ବିତିଯାଇଥାଏ।

ପ୍ରଶ୍ନ. କବିତା ଲେଖାରେ ମନ ଦେଲେ କାହିଁକି ?

ଉତ୍ତର. ମୁଁ ପଢୁଥିବା ଲେଖକଙ୍କ ଭିତରୁ ଅଧିକାଂଶ ଥିଲେ କବି। ଭାବିଲି ସେମାନଙ୍କ ପରି କବି ହେବି। କବି ହୋଇପାରିବିନି ବୋଲି ବୁଝିଲା ବେଳକୁ କବିତା ଛାଡ଼ି ଅନ୍ୟ କିଛି ଧରିବାର ବେଳ ଗଡ଼ିଯାଇଥିଲା।

ପ୍ରଶ୍ନ. କିନ୍ତୁ ଆପଣ କେତୋଟି ଗଳ୍ପର ମଧ୍ୟ ସ୍ରଷ୍ଟା। ଗଳ୍ପ ଲେଖାରେ ଗୁରୁତ୍ୱ ଦେଲେନି ?

ଉତ୍ତର. ପ୍ରଥମେ ପ୍ରଥମେ କବିତା ସହିତ ଗଳ୍ପ ଲେଖୁଥିଲି। ପରେ ମଧ୍ୟ କେତୋଟି ଗଳ୍ପ ଲେଖିଛି। କିନ୍ତୁ ଗୋଟିକ ପାଇଁ ମୋର ସାମର୍ଥ୍ୟ ଯଥେଷ୍ଟ ନୁହେଁ ବୋଲି ଜାଣିଥିବାରୁ ଆରଟିରୁ ପ୍ରାୟ ଓହରିଗଲି।

ପ୍ରଶ୍ନ. ଆପଣଙ୍କ ମତରେ କବିତା ଭିତରୁ ସନ୍ନ୍ୟାସୀର ସ୍ୱର ଶୁଭିବା ଦରକାର, ତେବେ ବୈରାଗ୍ୟ ଓ ସୃଜନଶୀଳତାର ମୋହ ଭିତରେ ସମନ୍ୱୟ କିପରି ଅଣାଯାଇପାରିବ ?

ଉତ୍ତର. ବୈରାଗ୍ୟରେ ଯେପରି ଅନେକ କିଛିର ଆକର୍ଷଣ ଛାଡ଼ିବାକୁ ପଡ଼େ ଓ ଗୋଟିଏ ସର୍ବପ୍ରଧାନ ଆକୁଳତା ଚେତନାରେ ଅଧିଷ୍ଠିତ ହୁଏ, କବିତାରେ ବି ସେପରି ବହୁତ କିଛିଠାରୁ ଦୂରେଇ ରହିବାକୁ ପଡ଼େ,ଏକା ଏକା ଚାଲିବାର ଭାଗ୍ୟକୁ ଆଦରି ନେବାକୁ ପଡ଼େ। ସନ୍ନ୍ୟାସୀ ଯେପରି କ'ଣ ପାଇବ ଜାଣେ ନାହିଁ, ଖାଲି ଜାଣେ ଯେ ଅନେକ କିଛିକୁ ନ ଛାଡ଼ି ତା'ର ଗତି ନାହିଁ କବି ସେପରି ଜାଣେ ନାହିଁ ସେ କବିତା ପଦବାଚ୍ୟ କବିତା ଲେଖିପାରିବ କି ନାହିଁ, ତା'ର ପ୍ରାଣର ଅଧିକାଂଶ ସାମର୍ଥ୍ୟ କବିତାକୁ ଖୋଜିବାରେ ନିୟୋଜିତ ହୋଇଥାଏ।

ପ୍ରଶ୍ନ. 'ଶ୍ରୀରାଧା'କୁ ନେଇ ହୋଇଥିବା ହଟ୍ଟଗୋଳ ସମ୍ପର୍କରେ ଆପଣ କ'ଣ କହିବେ ?

ଉତ୍ତର. ଲେଖାଟିଏ ପ୍ରକାଶିତ ହେବା ପରେ ତାହା ଆଉ ଲେଖକର ସମ୍ପତ୍ତି ହୋଇ ରହେନାହିଁ। କେତେକଙ୍କୁ ଲେଖାଟି ଭଲ ଲାଗିପାରେ, ଅନ୍ୟ କେତେକ

ଭାବିପାରନ୍ତି ସେ ଲେଖାଟି ଅନ୍ୟ ପ୍ରକାରର ହୋଇଥିଲେ ବା ଆଦୌ ଲେଖା ହୋଇ ନ ଥିଲେ ଭଲ ହୋଇଥାନ୍ତା। କେତେଜଣଙ୍କୁ 'ଶ୍ରୀରାଧା'ଭଲ ଲାଗିଛି। ଏତିକିରେ ମୁଁ କୃତାର୍ଥ।

ପ୍ରଶ୍ନ. ଆପଣ କାହାକୁ କବି କହିବେ ?

ଉତ୍ତର. କବିତା ଲେଖୁଥିବା ବ୍ୟକ୍ତି କବି ନ ହୋଇପାରେ, କେବେ ବି କବିତାଟିଏ ଲେଖି ନ ଥିବା ବ୍ୟକ୍ତି କବି ହୋଇପାରେ। ଯେ କବିପ୍ରାଣ ସେ କବି।

ପ୍ରଶ୍ନ. ଲଣ୍ଠନର ଯେଉଁ ମାନସିକତା ଓ ଅଭାବବୋଧ ପ୍ରଦର୍ଶିତ ତାହା ଏକ ସୁଦୀର୍ଘ ପ୍ରବାହରେ ଭିନ୍ନ ରୂପରେ ପ୍ରକଟିତ ହୋଇଛି 'ତୁଠ', 'ଡର', 'କାଞ୍ଚନ'ଇତ୍ୟାଦି କବିତାରେ। ବିବର୍ତ୍ତନ ଓ ଉତ୍ତରଣ ନିର୍ବିଶେଷରେ ଚପଳ ତାରୁଣ୍ୟ କାହିଁକି ?

ଉତ୍ତର. ଯାହା ଲୋଡୁଚି କେବେ ବି ପାଇବି ନାହିଁ ଜାଣିବାର ଦୁଃଖ କ'ଣ କେବେ ସରେ ? କବିତା ପରେ କବିତାରେ ସେ ଦୁଃଖ ବଖାଣିଲା ବେଳେ ଲାଗେ ଯେ ନ ପାଇଲି ପଛକେ, ମୋ ଲୋଡିବା କଥା କହିପାରିଲି ତ। ଟିକେକ ପରେ ବୁଝିଯାଏ କିଛି ବି କହିହେଲା ନାହିଁ। ଆଉ ଗୋଟିଏ କବିତାରେ ହୁଏତ କହିଦେବି। ତାହା ବି ହୁଏ ନାହିଁ। ହୋଇଥିଲେ କ'ଣ ଆଜିଯାଏ ଲେଖୁଥାନ୍ତି ?

ପ୍ରଶ୍ନ. ଆପଣଙ୍କ ଶ୍ରେଷ୍ଠ ଲେଖାଟି ଲେଖିସାରିଛନ୍ତି କି ?

ଉତ୍ତର. ଲେଖକ ଜଣେ ଲେଖିଚାଲେ। ଶ୍ରେଷ୍ଠ ଲେଖାଟି ଲେଖିବ ବୋଲି ନୁହେଁ ନ ଲେଖି ସେ ରହିପାରିବନି ବୋଲି ଲେଖିଚାଲେ। ହୁଏତ ସେ ଦିନେ ଶୁଣିବ ଯେ ଅନେକ ବର୍ଷତଳେ ସେ ତା'ର ଶ୍ରେଷ୍ଠ ଲେଖାଟି ଲେଖିସାରିଛି।

ପ୍ରଶ୍ନ. ଆପଣଙ୍କ ପ୍ରତିଟି କବିତାରେ ଅବଶୋଷ, ଅଭାବବୋଧ ପରିଲକ୍ଷିତ ହୁଏ। ଏତେ ଐଶ୍ୱର୍ଯ୍ୟ ସତ୍ତ୍ୱେ ଏହି ଅଭାବ କାହିଁକି ?

ଉତ୍ତର. ମତେ ଦିଶି ନ ଥିବା ଐଶ୍ୱର୍ଯ୍ୟ ଯଦି ଦେଖିପାରିଲ, ମୋର ଅଭାବ, ଅବଶୋଷ, ଆସାର୍ଥକତା ଦେଖିପାରିଲନି କିପରି ? କବି ପାଖରେ ଯାହା ଥାଏ ତାହା ତା'ର କବିତାର ଉପାଦାନ, ମୋ ପାଖରେ ଆଉ କିଛି ଥିଲେ ସିନା ଅଲଗା ପ୍ରକାରର କବିତା ଲେଖିଥାନ୍ତି।

ପ୍ରଶ୍ନ. କବିତା ସହ ଆପଣଙ୍କ ପ୍ରେମ ଏ ସମ୍ପର୍କରେ କ'ଣ କହିବେ ?

ଉତ୍ତର. ପ୍ରେମ ଯେପରି ହଠାତ୍ ଆରମ୍ଭ ହୁଏ, ପ୍ରେମରେ ପଡ଼ିବା ଉଚିତ ହେଲା କି ନ ହେଲା ଭାବିଲା ବେଳକୁ ଯେପରି ପ୍ରେମରୁ ମୁକୁଳି ଆସିବାର ବାଟ ନ ଥାଏ, କବିତା ସହିତ ସମ୍ପର୍କ ସେପରି ଥରେ ଆରମ୍ଭହେଲେ ସେଥିରୁ ତ୍ରାହି ନାହିଁ। କଲେଜରେ ପାଦ ଦେବା ପରେ ସେ ସମ୍ପର୍କ ହଠାତ୍ ଆରମ୍ଭ ହୋଇଗଲା, ଯେତେ ଦହଗଞ୍ଜ ହେଲେ ବି ସେଥିରୁ ମୁକୁଳି ପାରୁନି।

ପ୍ରଶ୍ନ. ଆପଣଙ୍କ ମତରେ ଭଲ କବିତା କ'ଣ ?

ଉତ୍ତର. ଭଲ କବିତାରେ ଚାଲାକି ନ ଥାଏ। ଆସ୍ଫାଳନ ନ ଥାଏ, ଥାଏ ବ୍ୟାକୁଳପଣ।

ପ୍ରଶ୍ନ. ସାହିତ୍ୟ ଆଲୋଚନା ସମ୍ପର୍କରେ କ'ଣ କହିବେ ?

ଉତ୍ତର. ସେ ଦାୟିତ୍ୱ ସମ୍ପାଦକମାନଙ୍କର। ସେମାନେ କେତେଜଣ ବିଦଗ୍ଧ ସମାଲୋଚକଙ୍କୁ ଲେଖିବା ପାଇଁ ଆମନ୍ତ୍ରଣ କଲେ ପରିସ୍ଥିତି ହୁଏତ ବଦଳନ୍ତା।

ପ୍ରଶ୍ନ. ଲେଖକଙ୍କୁ ପାଠକ ପାଖରେ ପହଞ୍ଚିବା ପାଇଁ ସୁବିଧାବାଟ କେଉଁଟି ?

ଉତ୍ତର. ଲେଖକଙ୍କୁ ପାଠକ ଚିହ୍ନନ୍ତି ପତ୍ରିକାରୁ। ଜଣେ ଲେଖକର ୪/୬ଟି ଲେଖା ପତ୍ରିକାରୁ ପଢ଼ିବା ପରେ ପାଠକ ଉକ୍ତ ଲେଖକଙ୍କର ପୁସ୍ତକ କିଣେ। ଏଣୁ ପତ୍ରିକାରେ ଲେଖା ପ୍ରଥମେ ଆସିବା ଦରକାର।

ପ୍ରଶ୍ନ. ନୂଆ ପିଢ଼ିର କବି ମାନଙ୍କୁ କ'ଣ କହିବେ ?

ଉତ୍ତର. କିଛି କହିବାର ନାହିଁ, କାହାର ପରାମର୍ଶ ଅନୁଯାୟୀ କବିତା ଲେଖାଯାଏନି।





# ଆନନ୍ଦ ଅପରିସୀମ, ଅସନ୍ତୋଷ ଚିରକାଳ

## ସୀତାକାନ୍ତ ମହାପାତ୍ର:

**କ**ବି ସୀତାକାନ୍ତ । ଆଧୁନିକ ଓଡ଼ିଆ କବିତାର ଅନ୍ୟତମ ପ୍ରମୁଖ ସ୍ୱର । ତାଙ୍କ କବିତା କେବଳ ଓଡିଶାରେ ସୀମିତ ହୋଇ ରହିନାହିଁ ସବୁ ଭାରତୀୟ ଓ ତେରଟି ବିଦେଶୀ ଭାଷାରେ ଅନୁବାଦିତ ହୋଇ ତାଙ୍କୁ ବ୍ୟାପକ କରିଛି । ସାରସ୍ୱତ ସାଧନା ପାଇଁ ତାଙ୍କୁ ରାଜ୍ୟ ତଥା ଜାତୀୟ ସ୍ତରରେ ମିଳିଛି ଅନେକ ସମ୍ମାନ । ଓଡିଶା ସାହିତ୍ୟ ଏକାଡେମୀ, କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର, କବୀର ସମ୍ମାନଠାରୁ ଆରମ୍ଭ କରି ଭାରତରେ ସାହିତ୍ୟର ନୋବେଲ କୁହାଯାଉଥିବା ଜ୍ଞାନପୀଠ ପୁରସ୍କାର ପର୍ଯ୍ୟନ୍ତ । ଭାରତୀୟ ପ୍ରଶାସନିକ ସେବାରେ ଦୀର୍ଘକାଳ ଓ ୟୁନେସ୍କୋ ସହିତ ଦୁଇବର୍ଷ କାମ କରି ଅବସର ଗ୍ରହଣ କରିଥିବା ଏହି ବ୍ୟକ୍ତି ଭାରତୀୟ ଜ୍ଞାନପୀଠ ଚୟନ ବୋର୍ଡ ଚେୟାରମ୍ୟାନ୍ ଭାରତୀୟ ସାହିତ୍ୟ ଏକାଡେମୀ ଭଳି ପ୍ରମୁଖ ସାହିତ୍ୟାନୁଷ୍ଠାନରେ ରହି ଆସିଛନ୍ତି ସଭ୍ୟ ।

ପ୍ରଶ୍ନ. ସାହିତ୍ୟ ପ୍ରତି ଢ଼ଳିଲେ କେମିତି ?

ଉତ୍ତର. ମୋ ବାପା ଭଗବାନ ମହାପାତ୍ର ଗଙ୍ଗାଧର, ରାଧାନାଥଙ୍କ କାବ୍ୟ ପଢ଼ି ମୋତେ ଶୁଣାଉଥିଲେ, ତଦ୍ଦ୍ୱାରା ମୋର ସାହିତ୍ୟ ପ୍ରତି ଶ୍ରଦ୍ଧା ବଢ଼ିଲା। ଘରେ ପ୍ରତ୍ୟହ ସନ୍ଧ୍ୟାଦୀପ ଲାଗିଲାବେଳେ ଭାଗବତର ଗୋଟିଏ ଅଧ୍ୟାୟ ପଢ଼ିବା ଥିଲା ମୋର ଦାୟିତ୍ୱ। ଯେଉଁଠୁ ମୋ ଭିତରେ ପଢ଼ିବା ଆଗ୍ରହ ଜନ୍ମିଲା, ଯାହା କି ପରବର୍ତ୍ତୀ ସମୟରେ ଏହା ମୋ ଜୀବନରେ ଗୋଟିଏ ଅଭ୍ୟାସରେ ପରିଣତ ହେଲା। ଗାଁରେ ରାମାୟଣ, ମହାଭାରତ ପଢ଼ାହୁଏ, ହରିହାଟ ହୁଏ। ବାଦ୍ୟଯନ୍ତ୍ର ସହିତ ସଙ୍ଗୀତ, ଭଜନ ମନ୍ଦିରରେ ବୋଲା ହେଉଥିଲା। ପିଲାଟି ଦିନରୁ ମୋ ଜୀବନରେ ସଙ୍ଗୀତ, ସାହିତ୍ୟର କାବ୍ୟିକ ଏପରି ପରିବେଶ ମୋ ଚଉପାଶରେ ଥିଲା। ହାଇସ୍କୁଲ ଜୀବନରେ ସ୍କୁଲ ପତ୍ରିକାର ସମ୍ପାଦନା ଦାୟିତ୍ୱ ମୋ ଉପରେ ଥିଲା। ୧୯୫୪ ମସିହାରେ ଝଙ୍କାରରେ ପ୍ରଥମେ କବିତା ପ୍ରକାଶିତ ହେଲା ପରେ ଅନେକ ଲୋକଙ୍କ ପାଖରେ ତାହା ଆଦୃତ ଏବଂ ଆଲୋଚିତ ହୋଇଥିଲା। ପାଠକୀୟ ଶ୍ରଦ୍ଧା ଏବଂ ମୋ ବାପାଙ୍କ ଆଗ୍ରହ ମୋତେ କବିତା ଲେଖିବାରେ ଅନୁପ୍ରାଣିତ କଲା। ତା'ପରେ ଅଧିକରୁ ଅଧିକ କବିତା ଲେଖିଲି। ରାଧାମୋହନ ଗଡ଼ନାୟକ ଏବଂ ସଚ୍ଚି ରାଉତରାୟଙ୍କ କବିତା ମୋତେ ବହୁ ଭାବରେ ପ୍ରଭାବିତ କରିଥିଲା। କିନ୍ତୁ ଭାଗବତକାର ଜଗନ୍ନାଥ ଦାସ ଓ ଭୀମଭୋଇ ମୋର କାବ୍ୟଗୁରୁ ହୋଇ ରହିଲେ । ଗୋଟିଏ ବାକ୍ୟରେ କହିଲେ 'ସାହିତ୍ୟ ପ୍ରତି ମୁଁ ଢ଼ଳିନାହିଁ ସାହିତ୍ୟ ମୋତେ କୋଳେଇ ନେଇଛି।

ପ୍ରଶ୍ନ. କେବଳ କବିତା କାହିଁକି ?

ଉତ୍ତର. ପୂର୍ବରୁ କହିଛି ପିଲାଟି ଦିନରୁ ହିଁ ମୁଁ କାବ୍ୟିକ ପରିବେଶରେ ବଢ଼ିଆସିଛି। ସଙ୍ଗୀତ ପ୍ରତି ମୋର ବିଶେଷ ଆଗ୍ରହ ରହିଛି ଏବେ ବି ମୁଁ ଏକାନ୍ତରେ ବସି ଅନେକ ସମୟରେ ସଙ୍ଗୀତ ଶୁଣେ। ପୂର୍ବେ ଆମ କବିତାଗୁଡ଼ିକ ସଙ୍ଗୀତଧର୍ମୀ ଥିଲା ଯାହାକୁ ସହଜରେ ବୋଲାଯାଇ ପାରୁଥିଲା। ହୁଏତ ଏହିସବୁ କାରଣରୁ କବିତା ଆଡକୁ ଢ଼ଳିଗଲି। କିନ୍ତୁ କେବଳ କବିତା ଲେଖେନି ୨୧ଟି କାବ୍ୟସଂକଳନ ସହ ନଅଟି ପ୍ରବନ୍ଧ ସଂକଳନ ଓ ଚାରୋଟି ଭ୍ରମଣ କାହାଣୀ ପ୍ରକାଶିତ।

ପ୍ରଶ୍ନ. କବିତାରେ କ'ଣ ନିଜର ସବୁ ଚିନ୍ତା, ଭାବନା ପ୍ରତିଫଳିତ କରିପାରନ୍ତି ?

ଉତ୍ତର. ଯାହା କହିବା କଥା ତାହାସବୁ କବିତାରେ ସମ୍ପୂର୍ଣ୍ଣ ଭାବେ କହିପାରିନି। ଚିନ୍ତା ସହ ଲେଖିବା ଅନେକ ସମୟରେ ମେଳ ଖାଏନି। ଶବ୍ଦମାନେ ବୋଲମାନନ୍ତିନି। ଗୋଟିଏ ଅସନ୍ତୋଷ ସବୁ କାଳରେ ରହିଛି ଯେ ହୁଏତ କେବେ ବି କହିପାରିବିନି

ଯାହା ମୁଁ କହିବାକୁ ଚାହୁଁଛି ଏଣୁ ଚେଷ୍ଟା ଅବିରତ ଚାଲିଛି। ଧୀରେ ଧୀରେ ଏ ଧାରଣା ଦୃଢ଼ିଭୂତ ହେଉଛି ଯେ ମୁଁ ଆଉ ଅଧିକ କିଛି, ଗଭୀରତର ଭାବରେ, ପ୍ରଭାବଶାଳୀ ଭାବରେ, ସନ୍ତୋଷଜନକ ଭାବରେ ନିଜର ଅନ୍ତରଙ୍ଗ ଅନୁଭୂତିର ସଫଳ ପ୍ରକାଶ କରିପାରିନି, ଯାହା ମୋ ମନର ଦୁଃଖ ଓ ଅବଶୋଷ।

ପ୍ରଶ୍ନ. କବି ସୀତାକାନ୍ତ ବ୍ୟକ୍ତିଗତ ଜୀବନରେ କିପରି ?

ଉତ୍ତର. ପରିବାର ଏବଂ ବନ୍ଧୁ ସମ୍ପର୍କକୁ ବହୁତ ଗୁରୁତ୍ୱ ଦିଏ। କବିତା ଲେଖା ବ୍ୟତୀତ ପାଶ୍ଚାତ୍ୟ, ଭାରତୀୟ ଶାସ୍ତ୍ରୀୟ ସଙ୍ଗୀତ ବିଶେଷତଃ ଓଡ଼ିଶାର ଲୋକଗୀତ ଆଦିକୁ ମୁଁ ଖୁବ୍ ଆଗ୍ରହ ଓ ମନଦେଇ ଶୁଣେ। ବହି ପଢ଼ିବା ସହିତ ସଂଗୀତ ରୁଚି ମୋର ରହିଛି। ଅନ୍ତରଙ୍ଗ ବନ୍ଧୁ, ପରିବାର, ବଗିଚା କାମରେ ନିଜର ବ୍ୟକ୍ତିଗତ ଜୀବନକୁ କଟାଏ। ବିଭିନ୍ନ ଦେଶ ଭ୍ରମଣ କରିବା ଅଗ୍ରହ ମୋର ଚିରଦିନ ରହିଛି। ଭଲ ସିନେମା ଦେଖେ। ବ୍ୟକ୍ତିଗତ ଜୀବନ ଖୁବ୍ ସରଳ ଓ ସାଧାରଣ।

ପ୍ରଶ୍ନ. ଆପଣ ପ୍ରବନ୍ଧରେ ମଧ୍ୟ ଜଣେ ସିଦ୍ଧହସ୍ତ ସ୍ରଷ୍ଟା। ଆପଣଙ୍କ 'ନିଃସଙ୍ଗ ମଣିଷ' ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ। ତେବେ କବି ଏବଂ ପ୍ରାବନ୍ଧିକ କେଉଁ ପରିଚୟଟିକୁ ଅଧିକ ପସନ୍ଦ କରନ୍ତି ଆପଣ ?

ଉତ୍ତର. ଆମ ସମୟର ସାହିତ୍ୟିକ, ସାଂସ୍କୃତିକ ଏବଂ ସାମାଜିକ ସମସ୍ୟା ଉପରେ ମୋର 'ନିଃସଙ୍ଗ ମଣିଷ' ପ୍ରବନ୍ଧ-ସଂକଳନ ପର୍ଯ୍ୟବେସିତ। କବିତା ସହିତ ପ୍ରବନ୍ଧ ସମାନ୍ତରାଳ ଭାବରେ ଲେଖିଆସିଛି। କିନ୍ତୁ କବି ଭାବରେ ମୋର ପ୍ରାଥମିକ ଓ ପ୍ରିୟ ପରିଚିତି। ପ୍ରବନ୍ଧକୁ ସବୁବେଳେ ଦ୍ୱିତୀୟ ସ୍ଥାନ ଦେଇଛି।

ପ୍ରଶ୍ନ. କବିତାର ବିଷୟବସ୍ତୁ କେଉଁଠାରୁ ନେଇଥାନ୍ତି ?

ଉତ୍ତର. କବିତା ଜୀବନର କଥା କହେ। ଯେପରି ଦୁଃଖ, ବିଷାଦ, ଆନନ୍ଦ, ସମସ୍ୟା ସବୁପ୍ରକାର ବିଷୟ ମୋ କବିତାରେ ରହିଛି। ବିଶେଷତଃ ଜୀବନଧର୍ମୀ। ଆମ ସମୟର ଅନୁଭୂତି ସହିତ ପୁରାଣ ପୃଷ୍ଠାର ବିଷୟବସ୍ତୁକୁ ନେଇ ଲେଖିଥାଏ। ଯାରା-କୁବ୍‌ଜା-ଯଶୋଦାଙ୍କ ଉପରେ ରଚିତ କବିତାଗୁଡ଼ିକ ପାଠକଙ୍କ ଦ୍ୱାରା ଖୁବ୍ ଆଲୋଚିତ ଏବଂ ଆଦୃତ।

ପ୍ରଶ୍ନ. ବର୍ତ୍ତମାନ ସମୟରେ ଓଡ଼ିଆ କବିତା କ୍ଷେତ୍ରରେ ଆପଣ ଅନ୍ୟତମ ଆଦ୍ୟ ସ୍ମରଣ। କିପରି ଅନୁଭବ କରୁଛନ୍ତି ?

ଉତ୍ତର. ୬୦-୭୦ ଦଶକରୁ ଆମେ କେତେଜଣ ପ୍ରମୁଖ ସ୍ୱର ଭାବେ ରହିଛୁ। କିନ୍ତୁ କବିତାର ପ୍ରବାହ ଚିରନ୍ତନ। ଆମ ପରେ ଲେଖୁଥିବା ନୂଆ ପିଢ଼ି ବି ଆମ

ସହ ମିଶିଗଲେଣି। ଏହା ପରିବର୍ତ୍ତନଶୀଳ। ଆଜିର ଆଧ୍ୟ କାଲିର ପୁରାତନ ନିଶ୍ଚିତ। ଏବେ ନୂଆ ଲେଖୁଥିବା କିଛି ଯୁବକବି ମଧ୍ୟ ଖୁବ୍ ସୁନ୍ଦର କବିତା ଲେଖୁଛନ୍ତି। ଏହା ଗର୍ବର ବିଷୟ। ସେମାନଙ୍କ କବିତା ଦେଖିଲେ ଓଡ଼ିଆ କବିତାର ଗୋଟିଏ ଉଜ୍ଜ୍ୱଳ ଭବିଷ୍ୟତ ସମ୍ଭାବନା ଉଜ୍ଜୀବିତ।

ପ୍ରଶ୍ନ. ଓଡ଼ିଆ ସାହିତ୍ୟରେ କ'ଣ ଅଭାବ ଅଛି ଭାବୁଛନ୍ତି ?

ଉତ୍ତର. ଯେକୌଣସି ସାହିତ୍ୟର ଅଭିବୃଦ୍ଧି ପାଇଁ କେବଳ ଲେଖକ ନୁହଁନ୍ତି ପାଠକଙ୍କର ଯୋଗଦାନ ରହୁଛି। ଜଣେ ଲେଖୁଛି ସେ ଚାହେଁ ତାକୁ କିଏ ପଢୁ। ମାଲାୟାଲାମର ସାହିତ୍ୟ ପ୍ରବର୍ତ୍ତକ ସୋସାଇଟିର ମୂଲ୍ୟ ପାଞ୍ଚ ହଜାରରୁ ଉର୍ଦ୍ଧ୍ୱ। ସଦସ୍ୟମାନେ ବାର୍ଷିକ ଦେୟ ସହ ପ୍ରକାଶିତ ପୁସ୍ତକ ପାଆନ୍ତି। ପାଞ୍ଚ ହଜାରରୁ ଅଧିକ ଲେଖକମାନଙ୍କର ପୁସ୍ତକ ସଂସ୍କରଣ ଅଧିକ ସହିତ ଗୋଟିଏ ପ୍ରକାଶିତ ପୁସ୍ତକ ୧୦ ହଜାରରୁ ଅଧିକ ସଂଖ୍ୟାରେ ଛପାଯାଏ। କନ୍ନଡ ବହି କେ.ଭି.ପୁଟାପ୍ପାଙ୍କ କାବ୍ୟ ସଂଗ୍ରହ ୧୧୦୦ ପୃଷ୍ଠା ବିଶିଷ୍ଟ, ଯାହାକୁ ମାତ୍ର ୩୦ ଟଙ୍କା ମୂଲ୍ୟରେ ୨ ଲକ୍ଷ ପୁସ୍ତକ ଛପାଯାଇଥିଲା ଓ ତାହା କନ୍ନଡ ସରକାର ଛାପିଥିଲେ। ଏପରି ଆମ ସାହିତ୍ୟରେ ଆଜିଯାଏ ସମ୍ଭବ ହୋଇପାରିନାହିଁ।

ପ୍ରଶ୍ନ. ଏହି ଅଭାବ ପୂରଣ ହେବ କିପରି ?

ଉତ୍ତର. ସ୍କୁଲ ଓ ଗାଁ ପାଇଁ ଗୋଟିଏ ଲାଇବ୍ରେରୀ ହେବା ଦରକାର। ସ୍କୁଲରେ ଗୋଟିଏ ପିରିୟଡରେ ଲାଇବ୍ରେରୀରେ ପିଲା ବସି ନିଜ ପସନ୍ଦ ବହିଟିଏ ପଢ଼ିବେ। ଗାଁ ଲୋକଙ୍କ ପାଇଁ ମଧ୍ୟ ସେହି ଲାଇବ୍ରେରୀକୁ ନିର୍ଦ୍ଦିଷ୍ଟ ସମୟରେ ଖୋଲାଯିବା ଦରକାର। ସାହିତ୍ୟକୁ ଲୋକଙ୍କ ପାଖରେ ପହଞ୍ଚାଇବା ଦରକାର ତାହା ଯେକୌଣସି ମାଧ୍ୟମରେ ହେଉ। ଲେଖକ ସମବାୟ ସମିତି ଆମେ ଆରମ୍ଭ କରିଥିଲୁ ତାହା ଏଯାଏ ଚାଲିଛି। ଆଉ ଗୋଟିଏ କଥା ଲେଖକ ତା'ର ପ୍ରତ୍ୟେକ ଲେଖା ପାଇଁ ପ୍ରାପ୍ୟ ପାଇବା ଦରକାର। ପୁସ୍ତକ ପ୍ରକାଶନ ପରେ ଲେଖକ ତା'ର ରୟାଲିଟି ପାଇବା ଦ୍ୱାରା ତାକୁ ଏକପ୍ରକାର ସହଯୋଗ ଏବଂ ପ୍ରେରଣା ମିଳିଥାଏ। ସାହିତ୍ୟ ପ୍ରତି ଅନୁରାଗ ବଢ଼ାଇବାକୁ ପିଲାମାନଙ୍କୁ ପିଲାଟି ଦିନରୁ ସାହିତ୍ୟ ପ୍ରତି ଆଗ୍ରହ ଜନ୍ମାଇବା ଦରକାର। ପୁସ୍ତକ ମେଳା ଏବେ ବହୁସଂଖ୍ୟାରେ ହେବା ଏକ ଗ୍ରହଣଯୋଗ୍ୟ ପଦକ୍ଷେପ। ଏହା ସହିତ ଲାଇବ୍ରେରୀର ବୃଦ୍ଧି ଘଟିବା ଦରକାର।

ପ୍ରଶ୍ନ. ଆପଣଙ୍କ ଜୀବନର ଅବଶୋଷ ?

ଉତ୍ତର. ଜୀବନରେ ବିଶେଷ କିଛି ଅବଶୋଷ ନାହିଁ। ଯାହାକୁ ଆନନ୍ଦ କୁହାଯିବ ତାହା ତ ଅପରିସୀମ। କିନ୍ତୁ ମୋ ଜୀବନ ପରିପୂର୍ଣ୍ଣ।





# ଜୀବନ କବିତାଠାରୁ ବୃହତ୍ତର

## ରାଜେନ୍ଦ୍ର କିଶୋର ପଣ୍ଡା:

ଓଡ଼ିଆ ସାହିତ୍ୟର ଅନ୍ୟତମ ପ୍ରବୀଣ ତଥା ଧୁରୀଣ କବି ରାଜେନ୍ଦ୍ର କିଶୋର ପଣ୍ଡା। ଲେଖିଛନ୍ତି ଅନେକ କବିତା, କବିଙ୍କୁ ସାବ୍ୟସ୍ତ କରିଛନ୍ତି ପ୍ରତିଦ୍ୱନ୍ଦୀ ଈଶ୍ୱର ଭାବେ, କବିତାରେ ତାଙ୍କର ପ୍ରଚଣ୍ଡ ଅହଂକାରୀ ମଣିଷର ସ୍ୱର। ଭାଗ୍ୟ ବିରୋଧରେ ବିଦ୍ରୋହ, ଗୋଟାପଣେ ଈଶ୍ୱର ବନିଯିବାର ଆସ୍ପର୍ଦ୍ଧା। ସେହି ଜୀବନର ଅନୁଭବକୁ ନେଇ ତାଙ୍କ ସହ ହୋଇଥିବା ଆଳାପ।

ପ୍ରଶ୍ନ. ମଣିଷକୁ ସବୁବେଳେ ତା'ର ସାମ୍ପ୍ରତିକ ସମୟ ସବୁଠୁଁ ଅଧିକ ଦୁଃଖଦାୟକ, କଠିନ ଲାଗିଛି। ତେବେ ବି ବ୍ୟକ୍ତି ଏହି ଅଦ୍ଭୁତ ସଙ୍କଟ ସମୟରେ କଳା, ସୃଷ୍ଟି ବିଷୟରେ ଚିନ୍ତାକରୁଛି ଯାହାକି ଗୋଟିଏ ଆଶାବାଦର ବିଷୟ। କିନ୍ତୁ ଅନ୍ୟପକ୍ଷରେ ସାହିତ୍ୟ ନଷ୍ଟ ହୋଇଯିବାର ଆଶଙ୍କା ରହୁଛି, ଆପଣଙ୍କ ମତ କ'ଣ ?

ଉତ୍ତର. ସଂକଟ ମସୟରେ ସାହିତ୍ୟ ନଷ୍ଟ ହୋଇଯିବ କାହିଁକି ? 'ହୁତାଶନରୁ ଜଳ ବୁନ୍ଦେ' ପ୍ରକାଶ ହୁଏ ବୋଲି କବି - ବାଣୀ ଅଛି। ଦୁଃଖ ଆଉ ସୁଖ ଫେଣ୍ଟା ଫେଣ୍ଟି ହୋଇ ରହିଥାନ୍ତି ସବୁ ସମୟରେ। ବିଷାଦ ଭିତରେ ବି ଏକ ବିଷାଦାନନ୍ଦ ଥାଏ। ସର୍ଜନ ଜୀବନରେ ସାମଗ୍ରିକ ଉପଲବ୍ଧିରୁ ଆସେ। ପ୍ରତି ସଂକଟ ଗୋଟେ ଗୋଟେ ଆହ୍ୱାନ, ସର୍ଜନ-ଶିଳ୍ପୀ ତା'ର ସାମ୍ନା କରେ, ମୁକାବିଲା କରେ ସର୍ଜନଶୀଳ ଭାବରେ। କବି ମାଗେ 'ପ୍ରତିନିୟତ ଆରମ୍ଭ ଦିଅ, ଦିଗ ଦିଅ ଅସଂଖ୍ୟ।' ଅତୀତକୁ ସ୍ମରଣ କରେ, ବର୍ତ୍ତମାନକୁ ବଞ୍ଚେ ଏବଂ ପରବର୍ତ୍ତୀ ମୁହୂର୍ତ୍ତର ବିସ୍ମୟ ପାଇଁ ପ୍ରସ୍ତୁତ ରହେ। ଯାହାକିଛି ଆସନ୍ନ ମୁଁ ବର୍ତ୍ତମାନ ସେଠାରେ। ବୋମା ଫୁଟୁ ବା କଢ଼ ଫୁଟୁ, ତା' ସହିତ ଫୁଟିଯିବାକୁ ପ୍ରସ୍ତୁତ ମୁଁ। ନିଃସର୍ତ୍ତ ଭାବରେ।

ପ୍ରଶ୍ନ. ସାହିତ୍ୟ ସୃଷ୍ଟି କ୍ରିୟା ଦ୍ୱାରା ଅନେକ ପରିବର୍ତ୍ତନ ଅଣାଯାଇପାରେ। ତେବେ ଆପଣଙ୍କ କେଉଁ ସୃଷ୍ଟି ରଚନା ପରେ ସମାଜରେ କି ପରିବର୍ତ୍ତନକୁ ଆପଣ ଦେଖିଛନ୍ତି ?

ଉତ୍ତର. ଏବର ପୃଥିବୀରେ ସାହିତ୍ୟ-ସୃଷ୍ଟି ଦ୍ୱାରା ତତ୍‌କ୍ଷଣାତ୍ ସାମାଜିକ ପରିବର୍ତ୍ତନ ଆସିଯିବ ଏପରି ଆଶା କରିବା ବୃଥା। ସମାଜକୁ ବିଭିନ୍ନ ମାର୍ଗରେ ପ୍ରଭାବିତ କରିବା ପାଇଁ ବିବିଧ ମାଧ୍ୟମ ରହିଛି। ସାହିତ୍ୟ ତା' ମଧ୍ୟରୁ ଅନ୍ୟତମ। କିନ୍ତୁ ସାହିତ୍ୟର ପ୍ରଭାବ ଚେତନା ସ୍ତରରେ ହୁଏ। କ୍ରମଶଃ ହୁଏ।

ପ୍ରଶ୍ନ. ଆପଣ ଥରେ କହିଥିଲେ, 'କବି ଈଶ୍ୱର ସହ ବି ଖେଳିପାରେ, ଏଣୁ କବି ବି ପ୍ରତିଦ୍ୱନ୍ଦୀ ଈଶ୍ୱର।' ଏକଥାକୁ ଆଉ ଟିକେ ସ୍ପଷ୍ଟ କରି କହିବେ କି ?

ଉତ୍ତର. ମୁଁ ଆସ୍ତିକ ନୁହେଁ କି ନାସ୍ତିକ ନୁହେଁ, ମୁଁ ଅଜ୍ଞାନ। କିନ୍ତୁ ସର୍ଜନଶୀଳ କଳହ ପାଇଁ ମୁଁ ଈଶ୍ୱରଙ୍କୁ ଉଦ୍ଭାବନ କରେ। ସମଗ୍ର ସୃଷ୍ଟି ଏକ ଲୀଳା, କବିତା ଓ ଅନ୍ୟାନ୍ୟ ସର୍ଜନ-କଳା ବି ମଣିଷର ଖେଳାଳି- ସତ୍ତାର ପରିପ୍ରକାଶ। ଈଶ୍ୱର ସମେତ ସବୁ-କିଛିକୁ ନେଇ କବି ଖେଳାଳୀଳା କରିପାରେ - କଳ୍ପନା ଆଉ ବାସ୍ତବତାର ଫେଣ୍ଟା ଫେଣ୍ଟି ସଂଦୃଷ୍ଟି (ଭିଜନ୍) ଦ୍ୱାରା।

ପ୍ରଶ୍ନ. କୁହାଯାଏ ଅହଂକାର ମଣିଷକୁ ଧ୍ୱଂସ କରିଦିଏ, କିନ୍ତୁ ଆପଣଙ୍କ କବିତାରେ ଭାଗ୍ୟ ବିରୁଦ୍ଧରେ, ଭବିଷ୍ୟତ ବିରୁଦ୍ଧରେ ଗୋଟେ ଅହଂକାରୀ ମଣିଷର ସ୍ୱର

ଶୁଭେ। ତେବେ ବି ଆପଣଙ୍କ କବିତା ପାଠକ ପାଖରେ ପ୍ରବଳ ମାତ୍ରାରେ ହୃଦୟସ୍ପର୍ଶୀ। ଏହି ଅଦ୍ଭୁତ ସଂଯୋଗ ସମ୍ପର୍କରେ ଆପଣ କ'ଣ କହିବେ ?

ଉତ୍ତର. ମୋର ଅଧିକାଂଶ 'ମୁଁ' ଭିତରେ ତୁମେ ଅଛ, ସେ ବି ଅଛି। ମୋର ଅହଂ ସେଇଠି ପ୍ରତିଟି ମଣିଷର ସ୍ପର୍ଦ୍ଧା ଓ ଅହମିକା। ଆଉ ଗୋଟିଏ ଦୃଷ୍ଟିରୁ, ଛଦ୍ମବେଶୀ ବିନୟ ଅପେକ୍ଷା ନିରୁତା ଅହମିକା ଆମକୁ ଅଧିକ ହୃଦୟସ୍ପର୍ଶୀ ଲାଗିବା କଥା !

ପ୍ରଶ୍ନ. କବି ଯେଉଁଟିକୁ ଯେପରି ଦେଖେ ସେ ଅନ୍ୟମାନଙ୍କୁ ସେପରି ଦେଖାଇଥାଏ। କିନ୍ତୁ ଅନ୍ୟମାନେ ଠିକ୍ କବିର ଦୃଷ୍ଟିରେ ତାକୁ ଦେଖି ନ ପାରି ଅନ୍ୟ ଭାବରେ ଦେଖିନିଅନ୍ତି। ଏହି ତଫାତ୍ କବି ଏବଂ ଅନ୍ୟ ବ୍ୟକ୍ତି ମଧ୍ୟରେ ଦୂରତ୍ୱ ଆଣି ଦେଉନାହିଁ କି ?

ଉତ୍ତର. ପ୍ରତିଟି କବିତା ବା ସର୍ଜନଶୀଳ ରଚନାରେ ଲେଖକର ମୂଳ ଦୃଷ୍ଟି ଥାଏ ନିଶ୍ଚୟ। କିନ୍ତୁ ତା' ସହିତ ଅନେକ ଲେଖାର ବହୁସ୍ତରୀୟ ଅର୍ଥନ୍ୟାସର ସମ୍ଭାବନା ବି ଥାଏ। ପ୍ରତି ପାଠକ ନିଜର ଉପଲବ୍ଧି ଅନୁସାରେ ବୁଝେ, ଅର୍ଥ - ନିଧାନ କରେ, ଏପରି ବି ହୋଇପାରେ ପ୍ରତି ପଠନରେ ଏକ ନୂଆ ଅର୍ଥ ମିଳିଯାଇପାରେ। ଏହା ଦୂରତା ଆଣେନା, ବରଂ କଳା-କର୍ମର ସ୍ଥିତିସ୍ଥାପକତା ଏବଂ ବହୁମାତ୍ରିକ ଅର୍ଥଗୌରବର ମହିମା ସୂଚାଏ।

ପ୍ରଶ୍ନ. କବିତା ରାଜ୍ୟରେ ଆପଣ ଦୀର୍ଘ ବର୍ଷ ଧରି ବିଚରଣ କରିଆସୁଛନ୍ତି। ଆପଣଙ୍କ 'ଶୈଳକକ୍ଷ'ର ମୁଖବନ୍ଧରେ ଶିଖରୀୟ ଅନୁଭବ ଏବଂ ପାତାଳୀୟ ଅନୁଭବ କଥା କହିଛନ୍ତି। ତେବେ ଜୀବନର ଏଭଳି ସ୍ଥିତିରେ ଆପଣ ସାଧାରଣ ମଣିଷ ହୁଅନ୍ତି ନା ଅସାଧାରଣ କବିଟିଏ ପାଲଟି ଯାଆନ୍ତି ?

ଉତ୍ତର. ଏହି ଶିଖରୀୟ ଅନୁଭବ ଏବଂ ପାତାଳୀୟ ଅନୁଭବର ସ୍ଥିତି ଓ ଉପଲବ୍ଧି ପ୍ରତି ମଣିଷର ଜୀବନରେ ଆସେ- ସଚେତନ, ଅର୍ଦ୍ଧଚେତନ ବା ଅଚେତନ ଭାବରେ। ଲେଖକ ତାକୁ ବଖାଣିପାରେ, କାରଣ ତା'ଠି ସଂଦୃଷ୍ଟି ଥାଏ ଏବଂ ଭାଷିକ କଳାରେ ତା'ର ଦକ୍ଷତା ଥାଏ।

ପ୍ରଶ୍ନ. ମଣିଷର ଅନିବାର୍ଯ୍ୟ ଭାଗ୍ୟ ବିରୁଦ୍ଧରେ ବିଦ୍ରୋହ ଆପଣଙ୍କ କବିତାରେ ଯେତେ କୋମଳ, ଗୋଟାପଣେ ଈଶ୍ୱର ବନିଯିବାର ଅସ୍ପର୍ଦ୍ଧାରେ ପ୍ରାର୍ଥନା ସେତେ କଠୋର କିପରି ?

ଉତ୍ତର. ଏହି ଦୁଇ ଭାବ ପରସ୍ପର ବିରୋଧୀ ନୁହେଁ, ପରିପୂରକ। ଗୋଟାପଣେ ଈଶ୍ୱର ହୋଇଗଲେ ଏ ସୃଷ୍ଟିକୁ ଆହୁରି ଶିବ-ସୁନ୍ଦର ଗୁଣରେ ଗଢ଼ିହେବ ବୋଲି ଆସ୍ଥା !

ପ୍ରଶ୍ନ. ଆପଣଙ୍କ କବିତା କେତେବେଳେ ବୋମା ପରି ତ କେତେବେଳେ କଢ଼ ପରି ଫୁଟିଛି। ତେବେ ଏ କ'ଣ ଆପଣଙ୍କ ଜୀବନର ବାସ୍ତବତା ନା କେବଳ କଳ୍ପନା?

ଉତ୍ତର. ଜୀବନ ତ ବୈଚିତ୍ର୍ୟରେ ପରିପୂର୍ଣ୍ଣ, କଳ୍ପନାର ବି ସୀମା ନାହିଁ। କଢ଼ ଫୁଟିବା ଓ ବୋମା ଫୁଟିବା ଏଇ ଦୁଇଟି ମଧ୍ୟରେ ଆହୁରି କେତେ ଅନୁଭବ- ଉଲ୍ଲାସର, ବେଦନାର, ପ୍ରେମର, ବୈରାଗ୍ୟର, ଆଶ୍ୱାସର, କ୍ରୋଧର। ଉପଲବ୍ଧିର ମାତ୍ର କିଛି ଅଂଶ ହିଁ କବିତାରେ ଆସେ। ଜୀବନ କବିତାଠାରୁ ବୃହତ୍ତର।

ପ୍ରଶ୍ନ. ଆପଣଙ୍କ କବିତା ଶବ୍ଦାୟନ ଓ ଭାବାୟନରେ ଚିର ନୂତନ। ଏଥିପାଇଁ କିପରି ସାଧନା କରନ୍ତି ବା ଅଭ୍ୟାସ କରନ୍ତି?

ଉତ୍ତର. ଭାବାୟନ ପାଇଁ କିଛି ସୂତ୍ର ନାହିଁ, ତା' ପାଇଁ ନିଜକୁ ଯୋଗ୍ୟ ଓ ପ୍ରସ୍ତୁତ ରଖିବାକୁ ହୁଏ ଏକ ପ୍ରକାର ସଂଗୁପ୍ତ-ସୂକ୍ଷ୍ମ ଧ୍ୟାନରେ। ଭାବ ତା' ମର୍ଜିରେ ଆସେ। ସାହିତ୍ୟ ଏକ ଭାଷିକ କଳା, ତେଣୁ ଶବ୍ଦ ପାଇଁ ସାଧନା କବିର ଅଭ୍ୟାସଗତ ହେବା ସ୍ୱାଭାବିକ। ଶବ୍ଦ ଗଢ଼ଣର ବ୍ୟୁତ୍ପତ୍ତି ପ୍ରତି ମୋର ପିଲାଦିନୁ ଆଗ୍ରହ। ପୂର୍ବଜମାନଙ୍କର ରଚନାରୁ ଲୋକମୁଖରୁ ଶୁଣିଥିବା ବଖାଣ ଆଉ ସଂଳାପରୁ, ସର୍ଜନ-ମୁହୂର୍ତ୍ତର ଉଚ୍ଛ୍ୱାସରୁ ଶବ୍ଦ- ସ୍ମୃତି, ଶବ୍ଦାୟନ ହୁଏ। ବିଶେଷ ମୂହୂର୍ତ୍ତରେ ଗୋଟିଏ ଗୋଟିଏ ନୂଆ ଶବ୍ଦ ବି ଗଢ଼ି ହୋଇଯାଏ।

ପ୍ରଶ୍ନ. ବର୍ତ୍ତମାନ ଲେଖାଯାଉଥିବା ପୁରୁଣା ଏବଂ ନୂଆ ପିଢ଼ିର କବିଙ୍କ କବିତା ସମ୍ପର୍କରେ ଆପଣଙ୍କ ମତ କ'ଣ?

ଉତ୍ତର. ପୁରୁଣା ପିଢ଼ି ନୂଆ ପିଢ଼ିର ଫରକ ଖାଲି ବୟସ ଦୃଷ୍ଟିରୁ। ଅସଲ କଥା ହେଉଛି କବିତାର ଉତ୍କର୍ଷ। ସବୁ ପିଢ଼ିର କିଛି କବି ଉଚ୍ଚାଙ୍ଗ କବିତା ଲେଖୁଛନ୍ତି। କେତେକ କବି ସାଧାରଣ ବା ମାମୁଲି କବିତା ଲେଖୁଛନ୍ତି, ଆଉ ଅଧିକାଂଶ କବି ବାଜେ ଲେଖା ହିଁ ଲେଖୁଛନ୍ତି କବିତା ନାମରେ। ତେବେ ମୁଁ ଅଧିକ ଆଶା ରଖେ ସେଇ ତେଜସ୍ୱୀ କବିମାନଙ୍କ ପାଖରେ ଆୟୁଷ ଅଛି ଆହୁରି, ସମୟ ଅଛି। ନିଷ୍ପାପର ସାଧନା ରହିଲେ ସେମାନେ ହିଁ ଗଢ଼ିବେ ଆମ କାବ୍ୟ ପରମ୍ପରାର ନବ ନବ ସ୍ୱରୂପ।

ପ୍ରଶ୍ନ. କବିତା ଲେଖୁ ଲେଖୁ ଉପନ୍ୟାସ ଲେଖାରେ ନିମଗ୍ନ ହେଲେ କିପରି? 'ଚିଦାଭାସ' ସମ୍ପର୍କରେ କିଛି କହିବେ?

ଉତ୍ତର. କବିତା ନିଶ୍ଚୟ ମୋର ମୁଖ୍ୟ ଭୂମି। କବିତା ଭିତରେ କଥା ବି ନିହିତ ଥାଏ ଠାଏ ଠାଏ। 'ଚିଦାଭାସ' ଉପନ୍ୟାସଟି ଏକ ବିଶେଷ ଉପଲବ୍ଧିର ବଖାଣ, ଯାହା ଗତାନୁଗତିକ ଉପନ୍ୟାସ-ଧାରାଠାରୁ ଭିନ୍ନ।



# କବିତା ଓ କଥା ସାହିତ୍ୟ ପରିସ୍ପର ପରିପୂରକ

## ଶାନ୍ତନୁ କୁମାର ଆଚାର୍ଯ୍ୟ:

ବିଜ୍ଞାନ ସାହିତ୍ୟର ବିରୋଧ କରେ ନାହିଁ ବରଂ ଏହା ସାହିତ୍ୟକୁ ପରିପୁଷ୍ଟ କରିଥାଏ । ଏହି ମତ ରଖନ୍ତି ଓଡ଼ିଶାର ବିଶିଷ୍ଟ କଥାଶିଳ୍ପୀ ଶାନ୍ତନୁ କୁମାର ଆଚାର୍ଯ୍ୟ । ବିଜ୍ଞାନର ପୃଷ୍ଠଭୂମିରୁ ଆସିଥିବା ଏହି କଥାକାର ଓଡ଼ିଶା ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି ତାଙ୍କର ଅନେକ ରଚନାରେ ।

ପ୍ରଶ୍ନ. ଆପଣଙ୍କ ନିକଟରେ ସାହିତ୍ୟ ଓ ବିଜ୍ଞାନର ଅଦ୍ଭୁତ ସମନ୍ୱୟ ଘଟିଛି। ଏହା ସମ୍ଭବ କେମିତି ?

ଉତ୍ତର. ବିଜ୍ଞାନର ଛାତ୍ର ଭାବେ ମୁଁ ଦେଖିଛି ପ୍ରତ୍ୟେକ ନୂଆ ଉଦ୍‌ଭାବନ ଓ ଆବିଷ୍କାର ପଛରେ ସାହିତ୍ୟର ପ୍ରେରଣା ରହିଛି। ବିଜ୍ଞାନ ଏକ ନିରସ ବିଷୟ ନୁହେଁ। ନହେଲେ Alice in the wonderland ଲେଖକ ଜଣେ ଗଣିତଜ୍ଞ ହୋଇ ନ ଥାନ୍ତେ। ଆଇନଷ୍ଟାଇନଙ୍କ ଆପେକ୍ଷିକ ତତ୍ତ୍ୱ କେତେ ଜଟିଳ। କିନ୍ତୁ ଏହାର ପ୍ରୟୋଗ ହୋଇପାରିଲେ ଏ ଜଗତର ପ୍ରତି ମଣିଷର ଦୃଷ୍ଟିକୋଣ ସଂପୂର୍ଣ୍ଣ ବଦଳି ଯିବ। ମୋ ମତରେ ଆମ ଭାରତୀୟ ପୁରାଣ ସାହିତ୍ୟରେ ସର୍ବପ୍ରଥମେ ଆପେକ୍ଷିକ ତତ୍ତ୍ୱ ପ୍ରୟୋଗ କରିଥିଲେ ମହାକବି ବାଲ୍ମୀକି, ବ୍ୟାସ ଏବଂ ପୁରାଣକାର ଋଷିମାନେ। ଉଚ୍ଚାଙ୍ଗ ସାହିତ୍ୟ କହିଲେ ବୁଝାଏ ସାହିତ୍ୟ ସହିତ ବିଜ୍ଞାନର ସମନ୍ୱୟ। ମୁଁ ଉଭୟକୁ ପ୍ରାଧାନ୍ୟ ଦେଇ ଆସିଛି।

ପ୍ରଶ୍ନ. ବିଜ୍ଞାନ ସହ ସାହିତ୍ୟର ଢ଼େର୍ ବିରୋଧାଭାସ ରହିଛି। ଏ ସତ୍ତ୍ୱେ ବିଜ୍ଞାନର ସତ୍ୟକୁ କିପରି ଆପଣ ସାହିତ୍ୟିକ କଳ୍ପନା ଭିତରେ ପ୍ରକାଶ କରିପାରିଛନ୍ତି ?

ଉତ୍ତର. ବିଜ୍ଞାନ ସାହିତ୍ୟର ବିରୋଧ କରେ ନାହିଁ, ବରଂ ପରିପୁଷ୍ଟ କରେ। ବିଜ୍ଞାନ ଦାର୍ଶନିକ ଦିଗ ଉନ୍ମୋଚନ କରେ, ସାହିତ୍ୟ ସେଇ ଦିଗରେ ଦୃଷ୍ଟି ପକାଇ ଅଜଣା ଜଗତର ସନ୍ଧାନ କରେ। ଅଜଣାକୁ ଜଣା କରାଇବା କବି/ସାହିତ୍ୟିକର ଏକମାତ୍ର କର୍ମ। ମୁଁ ତାହା କହି କରେ ସାହିତ୍ୟ ମାଧ୍ୟମରେ।

ପ୍ରଶ୍ନ. 'ନରକିନ୍ନର' ଓ 'ଶକୁନ୍ତଳା'ରେ ସମସ୍ୟା ସିମ୍ବଲ, ରୂପକ, ଅତି ବାସ୍ତବବାଦର ପ୍ରୟୋଗ ସମାନ୍ ରହିଥିବାର ଦେଖିବାକୁ ମିଳେ। ଭାରତ ପରିପ୍ରେକ୍ଷିରେ ଶକୁନ୍ତଳାର ପ୍ରାସଙ୍ଗିକତା ଥିବା ସତ୍ତ୍ୱେ ନରକିନ୍ନର ଅଧିକ ସଫଳତା ପାଇଛି, କିପରି ?

ଉତ୍ତର. ଆପଣଙ୍କ ପ୍ରଶ୍ନ-ପାଠକ ରୋମାଣ୍ଟିକ ସାହିତ୍ୟକୁ ବେଶି ପସନ୍ଦ କରେ କାହିଁକି ? 'ନର-କିନ୍ନର'ର ରୋମାଣ୍ଟିକ ଆପିଲ୍ 'ଶକୁନ୍ତଳା' ଅପେକ୍ଷା ଅଧିକ, କାରଣ ଶକୁନ୍ତଳାରେ ସାମାଜିକ ବାସ୍ତବତାର ବନ୍ଧନ ପାଠକର ମୁକ୍ତ ଚିନ୍ତାରେ ପ୍ରତିବନ୍ଧକ ସୃଷ୍ଟି କରେ। ପାଠକର ସ୍ୱପ୍ନ ବିଭୋରତା ରୋମାଣ୍ଟିକ ଉପନ୍ୟାସରେ ସର୍ବାଧିକ। ତେଣୁ ବେଦ, ଉପନିଷଦ ଅପେକ୍ଷା ଲୋକେ ପୁରାଣ ସାହିତ୍ୟ ପଢ଼ିବାକୁ କାଳେ କାଳେ ବେଶି ଆଗ୍ରହୀ।

ପ୍ରଶ୍ନ. ଆପଣଙ୍କ ମତରେ ଆଧୁନିକ କବିତା ଓ ଗଦ୍ୟ ମଧ୍ୟରେ ପାର୍ଥକ୍ୟ କେଉଁଠି।

ଉତ୍ତର. ମୋ ମତରେ କବିତା ଓ କଥା ସାହିତ୍ୟ ପରସ୍ପର ପରିପୂରକ। ପୂର୍ବେ ଏଇ କାରଣରୁ କାବ୍ୟ ମହାକାବ୍ୟ ଲେଖା ହେଉଥିଲା। ଏବେ କାବ୍ୟର ନାମକରଣ ବଦଳି ହୋଇଛି ଉପନ୍ୟାସ। ଅଧୁନିକ କବିତା ଛନ୍ଦମୁକ୍ତ ହେଲା। କିନ୍ତୁ ଏଥିରେ ଗଳ୍ପଭାଗର ଅଭାବ ଯୋଗୁ କେବଳ ଚିନ୍ତାରେ ସୀମିତ ହୋଇଗଲା। ଏଇ କାରଣରୁ ସାଧାରଣ ପାଠକ ପାଖରେ ଆଧୁନିକ କବିତା ପହଞ୍ଚି ପାରିଲା ନାହିଁ। ଏ ଅସୁବିଧା ଗଳ୍ପ/ଉପନ୍ୟାସରେ ମଧ୍ୟ ଘଟିପାରେ। ତଥାପି ଚିନ୍ତାବିହୀନ ଅଭିବ୍ୟକ୍ତି ଗ୍ରହଣୀୟ ନୁହେଁ – ନା କବିତା ନା ଗଳ୍ପ ଉପନ୍ୟାସରେ।

ପ୍ରଶ୍ନ. ଓଡ଼ିଆ ଉପନ୍ୟାସ ଜଗତରେ ଆପଣ କିଛି ନୂତନ ସମ୍ଭାବନା ଲକ୍ଷ୍ୟ କରିଛନ୍ତି କି ?

ଉତ୍ତର. ବହୁତ ଉପନ୍ୟାସ ଓଡ଼ିଆ ଭାଷାରେ ବର୍ତ୍ତମାନ ଲେଖାଯାଉଛି। କିନ୍ତୁ ସେସବୁରେ ଖୁବ୍ କମ୍ ନୂତନ ସମ୍ଭାବନା ଦେଖାଯାଏ। ଏହାର କାରଣ ଅନେକ। ସେସବୁ ଏଠାରେ ପ୍ରକାଶ କରିହେବ ନାହିଁ। ଉଚ୍ଚକୋଟିର ଉପନ୍ୟାସ ଚିରନ୍ତନ ମାନବିକ ମୂଲ୍ୟବୋଧ ଉପରେ ପ୍ରତିଷ୍ଠିତ। ଆମେ କିନ୍ତୁ ଲେଖୁ ସ୍ଥାନୀୟ ଲୋକଙ୍କ ସମସ୍ୟା ଉପରେ ଯଥା ଦାରିଦ୍ର୍ୟ ଦୂରୀକରଣ, ଶୋଷଣ, ଗଣତନ୍ତ୍ର, ସମାଜବାଦ, ପୁଞ୍ଜିବାଦ ଇତ୍ୟାଦି ବିଷୟରେ। ଆମେ ଜାଣୁନା–ଅଜାଣତରେ ଆମେ ସମାଜ ବିଜ୍ଞାନର ଛାତ୍ର ପାଲଟି ଯାଉଛୁ। ସାହିତ୍ୟିକ ସମାଜ ବିଜ୍ଞାନୀ ନୁହେଁ। ଏହାଫଳରେ ଚିରନ୍ତନ ମୂଲ୍ୟବୋଧଠାରୁ ଲେଖକ ଦୂରେଇ ଯାଏ।

ପ୍ରଶ୍ନ. ଭଲଗପ କହିଲେ ଅମେ କାହାକୁ ବୁଝିବା ?

ଉତ୍ତର. ପଚାଶବର୍ଷ ତଳେ ଲେଖାଯାଇଥିବା ମୋ ଗପସବୁ ବର୍ତ୍ତମାନ ସଂଗୃହୀତ ହୋଇ ପ୍ରକାଶ ପାଇଛି। ଏଥିରେ ଥିବା କେତେଟା ଗପକୁ ବର୍ତ୍ତମାନ କୁହାଯାଉଛି ଶ୍ରେଷ୍ଠଗଳ୍ପ। ତେଣୁ ଭଲଗପ ବୋଲି ମୁଁ ଯାହାକୁ କହିବି ସେ ଯେ ଗୃହୀତ ହେବ ଆଜିର ପାଠକ ଦ୍ୱାରା ତାହାର ଗ୍ୟାରେଣ୍ଟି ନାହିଁ। ମୁଁ ଗପ ଲେଖି ଚାଲିଛି–ପଚାଶବର୍ଷ ଭିତରେ ମୋର ୧୯ଟି ଗଳ୍ପ ସଞ୍ଚୟନ ପ୍ରକାଶିତ ହୋଇଛି। ଏଥିରୁ ଭଲଗପ ଖୋଜିବା ପାଠକ/ସମାଲୋଚକଙ୍କ କାମ।

ପ୍ରଶ୍ନ. ଲେଖକ ଲେଖେ କାହିଁକି ? ଲେଖିବ କାହିଁକି ? ସେହି ଲେଖା ସାଧାରଣ ଲୋକ ପଢ଼ିବେ କାହିଁକି ?

ଉ. ଲେଖକ ମୂଲ୍ୟବୋଧର ଦାୟରେ ପଡ଼ିଥାଏ। ଆମ ସାହିତ୍ୟରେ ଏହାକୁ କୁହାଯାଏ ଧର୍ମସଂକଟ। ଏଇ ସଙ୍କଟବୋଧ ଯାହାର ଯେତେ ତୀବ୍ର ସେ

ତା'ର ସମାଧାନର ପନ୍ଥା ଖୋଜେ। ଏଇଥିରୁ ବାହାରେ ଚିନ୍ତା। ଚିନ୍ତାକୁ ପ୍ରକାଶ କରିବାକୁ ଯାଇ କବି/ଲେଖକ ଲେଖନ୍ତି। ପ୍ରଥମେ ଏପରି ଲେଖା ଲେଖାଯାଏ ଆତ୍ମସନ୍ତୋଷ ପାଇଁ। ପରେ ପଞ୍ଚାଏ ସମଧର୍ମୀ ଜୁଟନ୍ତି। ସେମାନେ ହେଲେ ପାଠକ। ସାଧାରଣ ଲୋକେ ପାଠକ ନୁହଁନ୍ତି। ପାଠକ ମଧ୍ୟ ଜଣେ ଅସାଧାରଣ ବ୍ୟକ୍ତି ଯେ, ଲେଖକର ଚିନ୍ତା ସ୍ତରରେ ପହଞ୍ଚିବାକୁ ସକ୍ଷମ। ଲେଖକର ଲେଖା କିଏ ପଢ଼ିଲା ନ ପଢ଼ିଲା ତା' ଉପରେ ଚିନ୍ତା କରିବା ଲେଖକର କାମ ନୁହେଁ। ସେ କିନ୍ତୁ ଜାଣେ ତା' ଲେଖା କିଛି ସମଧର୍ମୀଙ୍କ ଦ୍ୱାରା ଆଦୃତ ହେଉଛି।





# ଗଳ୍ପର ଭାବ କବିତାରେ ଅସମ୍ଭବ

## ମନୋଜ ଦାସ:

କଥାକାର ମନୋଜ ଦାସ। ଭିନ୍ନ ତାଙ୍କର କଥା ସାହିତ୍ୟ। ସାହିତ୍ୟକୁ ତିନିଭାଗରେ ବିଭକ୍ତ କରୁଥିବା ଏହି କଥାଶିଳ୍ପୀ କେବେ ବି ବ୍ୟବହାରିକ ସାହିତ୍ୟକୁ ଢ଼ଳିନାହାନ୍ତି ବୋଲି ସ୍ୱିକାର କରନ୍ତି। ପ୍ରଥମେ କବିତା ଲେଖୁଥିଲେ। ଗଳ୍ପ ଜରିଆରେ ବାସ୍ତବତା ପରିପ୍ରକାଶକୁ ସହଜ ବୋଲି ଚିନ୍ତା କରି ଦୂରେଇଗଲେ କବିତାଠାରୁ। ଗଳ୍ପ ପାଇଁ ତାଙ୍କୁ ମିଳିଛି ଅନେକ ସମ୍ମାନ ଓ ପୁରସ୍କାର। ଉଚ୍ଚାଙ୍ଗ ସାହିତ୍ୟ ସୃଷ୍ଟି କରି ସେ ଦେଶ, ବିଦେଶରେ ପାଇଛନ୍ତି ପରିଚିତି। ତାଙ୍କର ସାହିତ୍ୟ ସାଧନା ଓ ଏହାର ଫଳ ସମ୍ପର୍କରେ ତାଙ୍କ ସହ ଆଳାପର କିଛି ଅଂଶ।

ପ୍ରଶ୍ନ. ବ୍ୟକ୍ତି, ସାହିତ୍ୟ ଓ ଆପଣ ଏ ସମ୍ପର୍କରେ କ'ଣ କହିବେ ?

ଉତ୍ତର. ବ୍ୟକ୍ତିର ପରିଚିତି ତା' ପାରିପାର୍ଶ୍ୱିକ ସ୍ଥିତିରୁ। ମୋ ମାଆ ସାହିତ୍ୟକୁ ଭଲ ପାଉଥିଲେ। ମୁଁ ପିଲା ଥିଲି। ସେ ମୋତେ ଭାଗବତ, ମହାଭାରତ, ଫକୀରମୋହନଙ୍କ ଲେଖା ପଢ଼ି ଶୁଣାଉଥିଲେ। କ୍ରମେ ମୋ ଭିତରେ ଲେଖାଲେଖି କରିବା ପୂର୍ବରୁ ହିଁ ସାହିତ୍ୟ ପ୍ରତି ଅନୁରାଗ ବୃଦ୍ଧି ପାଇସାରିଥିଲା। ୧୯୪୮/୪୯ ମସିହା ବୋଧେ ଡଗର/କୁଙ୍କୁମ/ପ୍ରଜାତନ୍ତ୍ର ରବିବାସରୀୟ ମଧ୍ୟରୁ କୌଣସି ଗୋଟିଏ ପତ୍ରିକାରେ ମୋର ପ୍ରଥମ ପ୍ରକାଶିତ ସୃଷ୍ଟିକୁ ଦେଖି ମୁଁ ପୁଲକିତ ହୋଇଗଲି ସ୍ୱାଭାବିକ କ୍ରିୟାରେ। କିନ୍ତୁ ଲେଖାଲେଖିକୁ ମୁଁ କେବେ ଏକ୍ସଟ୍ରା କରିକୁଲାର ଆକ୍ଟିଭିଟି ଭାବରେ ଦେଖିନାହିଁ, ଯେମିତି କଥାବାର୍ତ୍ତା କରାହେଉଛି, ଯେମିତି ବନ୍ଧୁମାନଙ୍କ ସହ ଗପ କରାହେଉଛି, ଯେମିତି ସାହିତ୍ୟ କବିତା ଶୁଣାଯାଉଛି, ସେମିତି ସାହିତ୍ୟ କବିତା ମଧ୍ୟ ଲେଖାଯିବ।

ପ୍ରଶ୍ନ. ଆପଣ 'ବ୍ୟାଘ୍ରାରୋହଣ'ରେ ମଣିଷର ଅହଂ ମନଟାକୁ ଏତେ ସୁନ୍ଦର ଭାବେ ଫୁଟାଇଛନ୍ତି, ଯିଏ କି ଉପରିସ୍ଥ ହାକିମ ପାଖରେ ମିଛ କହୁଛି, ସିଏ ପୁଣି ବାଘ ଉପରେ ସବାର ହେବା ପାଇଁ ଚେଷ୍ଟା କରୁଛି। ଯଥା କଟୁଆଳ, ରଟୁଆଳ ବା ସେନାପତି, ମନ୍ତ୍ରୀ। ଏହା କେମିତି ?

ଉତ୍ତର. ଜଣେ ଲେଖକ ଭିତରେ ଜଣେ ସାଧାରଣ ମଣିଷ। ଲେଖକ ଭିତରେ ମୁଁ ଏଇ ଅର୍ଥରେ କହୁଛି ଜଣେ ଲେଖକ ଓ ଅନ୍ୟଜଣେ ଲେଖକ ନୁହେଁ - ଏଇଭଳି ବ୍ୟକ୍ତିଙ୍କର ପାର୍ଥକ୍ୟ ହେଉଛି, ଲେଖକ ଭିତରେ ଗୋଟାଏ ସ୍ୱତନ୍ତ୍ର ପ୍ରକାର ରିସେପ୍ଟିଭିଟି ଥାଏ। ଆମେ ଦୁଇଜଣ ଯାଉଛୁ। ମୁଁ ଆଉ ଜଣେ ମୋର ବନ୍ଧୁ ଧରନ୍ତୁ। ଗୋଟିଏ ସୁନ୍ଦର ପିଲାଟିଏ ହସିଦେଲା। ମୋର ବନ୍ଧୁ ପାଇଁ ସେ ହସଟା ଗୋଟିଏ ମୁହୂର୍ତ୍ତ କେବଳ ସ୍ମୃତି ହୋଇପାରେ। କିନ୍ତୁ ମୁଁ ଯଦି ଲେଖକ ହୋଇଥିବି, ମୋର ସ୍ୱତନ୍ତ୍ର ଫାକଲ୍ଟି ରହିଛି, ତା' ଭିତରେ ସେଇ ହସର ପ୍ରତୀକ ରୂପଟିଏ ଅଙ୍କିତ ହୋଇ ରହିଗଲା। ହଠାତ୍ ଦିନେ ଗୋଟିଏ କ୍ରିଏଟିଭ ମୋମେଣ୍ଟରେ ତା'ର ସ୍ୱତନ୍ତ୍ର ଅର୍ଥ ଫୁଟି ଉଠିବ ନିଜ ମନରେ, ଚିତ୍ତରେ। ସେ ହସ ପଛରେ ଗୋଟିଏ କାହାଣୀ, ସେଇ ହସ ପଛରେ ଗୋଟାଏ ଚରିତ୍ର, ବିଶେଷ କିଛି ନାଟକୀୟତା ଏଇଟା ପ୍ରତିଭାତ ହେବ ହଠାତ୍। ଏମିତି ବହୁତ ଜିନିଷ ଅବଚେତନ ମନ ରେକର୍ଡ କରି ରଖେ। ଆଉ ଯେତେବେଳେ ଲେଖିବାର ପ୍ରେରଣା ଆସେ ସେତେବେଳେ ସେମାନେ ଆତ୍ମପ୍ରକାଶ କରନ୍ତି। କବିତ୍ୱ ଐଶ୍ୱର୍ଯ୍ୟରୂପକ ଗନ୍ତାଘର, ସେଇଟା

ବେଳେବେଳେ ଖୋଲି ହୋଇଯାଏ। ସେମିତି ନିର୍ଦ୍ଦିଷ୍ଟ ଗଳ୍ପର ପ୍ଲଟ ପାଇଁ କୌଣସି ଏକ ବା ଏକାଧିକ ଘଟଣାରୁ ପ୍ରେରଣା ଆସିଥାଇପାରେ। ଇଙ୍ଗିତ ଆସିଥାଇପାରେ। ସେସବୁ କେନ୍ଦ୍ରିଭୂତ ହୋଇଥାଇପାରେ। ତା' ପରେ ଗୋଟିଏ ନିର୍ଦ୍ଦିଷ୍ଟ ପ୍ରକାଶ ପାଏ। ସାଧାରଣତଃ ଏମିତି ହୋଇଥାଏ।

ପ୍ରଶ୍ନ. ପଛଦିନର ଗପଗୁଡ଼ିକୁ ଏବେ ଯେତେବେଳେ ଆପଣ ଆଖି ପକାନ୍ତି, କିପରି ଅନୁଭବ ଆସେ? ଏମିତି ଲେଖିଥିଲେ ଭଲ ହୋଇଥାନ୍ତା, ପରିଣତିଟା ଏମିତି କରିଥିଲେ ଭଲ ହୋଇଥାନ୍ତା – ଏଭଳି ଭାବନା ଆସେ କି?

ଉତ୍ତର. ନା ସେମିତି ଦ୍ୱନ୍ଦ ମନ ଭିତରେ ଆସିନି। କାରଣ ମୋ ଭିତରୁ ଗଳ୍ପ ଯେତେବେଳେ ଆସେ ସମ୍ପୂର୍ଣ୍ଣ ଗଳ୍ପଟି ଆପଣାଛାଏ ଆସେ। ଅନେକ ଲେଖକ ପ୍ରଥମେ ଆରମ୍ଭ କରିଦିଅନ୍ତି, ତା' ପରେ କାହାଣୀଟି ଡେଭଲପ୍ କରେ। ମୋ କ୍ଷେତ୍ରରେ ସେମିତି ପ୍ରାୟ ହୁଏନି। ଅବଶ୍ୟ ସମଗ୍ର ଗଳ୍ପର ପ୍ଲଟ ବିଷୟରେ ମୁଁ ଯେ ମୂଳରୁ ସଚେତନ ଥାଏ, ତାହା ନୁହେଁ। କିନ୍ତୁ ମୁଁ ଫିଲ୍ କରିପାରେ ଗଳ୍ପଟା ସମ୍ପୁର୍ଣ୍ଣ ଆସିଯାଇଛି ଏବଂ ଯେଉଁଦିନ ଲେଖିବାକୁ ମୁଁ ଆରମ୍ଭ କରେ ଶେଷ କରିବାକୁ ଚେଷ୍ଟା କରେ।

ପ୍ରଶ୍ନ. ଆପଣଙ୍କ 'ପୃଥ୍ୱୀରାଜଙ୍କ ଘୋଡା' ଗଳ୍ପରେ ଗୋଟିଏ ଅପ୍ରତ୍ୟାଶିତ ଭାବକୁ ଦର୍ଶାଇବାକୁ ଯାଇ ଜଣେ ଶିକ୍ଷକଙ୍କୁ ଅସହାୟ ଭାବରେ ରୂପାୟିତ କରିଛନ୍ତି। ଯେମିତି ବୃଦ୍ଧଙ୍କ ମୁହଁରେ ଉକ୍ତି ବାଢ଼ିଛନ୍ତି– "ମୋତେ ଗୁଣ୍ଡା କରିଥିଲେ ଭଲ ହୋଇଥାନ୍ତା।" ଏତଦ୍ଦ୍ୱାରା ଆପଣ କ'ଣ ଦର୍ଶାଇବାକୁ ଚାହିଁଛନ୍ତି?

ଉତ୍ତର. ଏଠି ଶିକ୍ଷକଙ୍କୁ ଅସହାସ ନୁହେଁ, ଇଟ୍ ଇଜ୍ ଆଇରୋନିକ୍ ସିଚ୍ୟୁଏଶନ୍। ଅନେକ ସମୟରେ ଏମିତି ଘଟଣା ଘଟେ। ଗୋଟିଏ ପ୍ରକାର ଜଟିଳତା ଥାଏ। ସେଠି ମନୁଷ୍ୟର ବିଚାର, ଦୃଷ୍ଟିକୋଣ କେତେ ଭ୍ରମାତ୍ମକ ହୋଇପାରେ ସେଟା ମୁଁ ଦେଖାଇଛି। ଗୋଟିଏ ମୂହୁର୍ତ୍ତ ପାଇଁ ଶିକ୍ଷକର ଚରିତ୍ର ବଦଳି ଯାଇଛି– ଏହା ମୁଁ ଦେଖାଇଛି। ତା'ର ଅର୍ଥ ସେ ଖରାପ ଲୋକ ନୁହେଁ। ଯେଉଁ ପ୍ରକାର ସାଇକୋଲୋଜିକାଲ କମ୍ପ୍ଲେକସିଟି ଯୋଗୁ ସେ ଯାହା ଜୀବନରେ କରିବ ବୋଲି ଭାବି ପାରିନାହିଁ, ସେଇଟା ସେ କରିଛି। ତାହା ହେଉଛି ଅନ୍ୟ ପ୍ରେଡିକଟେବିଲିଟି କ୍ୟାରେକ୍ଟର। ପ୍ରତ୍ୟେକ ଚରିତ୍ର ଭିତରେ ଯେଉଁ ଅପ୍ରତ୍ୟାସିତ ଭାବଥାଏ, ତାକୁ ପ୍ରାଞ୍ଜଳ ଭାବେ ଦେଖାଇବାକୁ ମୁଁ ଚେଷ୍ଟା କରିଛି। ତେଣୁ ସେ ଅସହାୟ ନୁହେଁ। He himself must be surprise.

ପ୍ରଶ୍ନ. ସାହିତ୍ୟ ସମ୍ପର୍କରେ ଆପଣଙ୍କ ମତ କ'ଣ ?

ଉତ୍ତର. ସାହିତ୍ୟ ତିନିପ୍ରକାର। ଗୋଟିଏ ହେଉଛି ପ୍ରେରଣା ସମ୍ଭୂତ ସାହିତ୍ୟ। ଆଉ ଗୋଟିଏ ଆଦର୍ଶ ପ୍ରେରିତ ଏବଂ ତୃତୀୟଟି ବ୍ୟବହାରିକ ସାହିତ୍ୟ।

ପ୍ରଶ୍ନ. ପ୍ରେରଣା ସମ୍ଭୂତ, ଆଦର୍ଶ ପ୍ରେରିତ ଓ ବ୍ୟବହାରିକ ସାହିତ୍ୟ ସମ୍ପର୍କରେ ଆଉ ଟିକେ ପ୍ରାଞ୍ଜଳ ଭାବରେ କହିବେ କି ?

ଉତ୍ତର. ପ୍ରେରଣା ସମ୍ଭୂତ ସାହିତ୍ୟରେ ଯେମିତି ସୃଷ୍ଟିର ଗୋଟିଏ ନିର୍ଦ୍ଦିଷ୍ଟ ଧାରା ଥାଏ। ଯେମିତି ପୃଥିବୀରେ ଫୁଲଟିଏ ଫୁଟୁଛି, ତାହା ଅଭିବ୍ୟକ୍ତିର ଧାରା। ଯେମିତି ଆପଣ କଥା କହୁଛନ୍ତି, ଆପଣଙ୍କ ମନୋଭାବ ଅଭିବ୍ୟକ୍ତି ମୁଁ କହୁଛି, ସେଇଟା ମୋର ଅଭିବ୍ୟକ୍ତି। ଯେମିତି ଆପଣ ଶୁଣୁଛନ୍ତି ଶୁଣିବାଟା ଆପଣଙ୍କର ଅଭିବ୍ୟକ୍ତି। ଏଇ ଯୋଉ ଅଭିବ୍ୟକ୍ତିର ଧାରା ଚାଲିଛି, ସେଇ ଅଭିବ୍ୟକ୍ତିର ଧାରାର ଯେତେବେଳେ ସୂର୍ଯ୍ୟୋଦୟ ହୁଏ, ଯେମିତି ହିମାଳୟ ମୁଣ୍ଡ ଟେକି ଉଠେ, ଯେମିତି ବସନ୍ତ ଋତୁ ଆସେ, ଠିକ୍ ସେମିତି ବ୍ୟାସ କିମ୍ବା ବାଲ୍ମୀକି ବା କାଳିଦାସଙ୍କ ଭିତରୁ ପ୍ରେରଣା ବି ଆସେ। ତା'ର କୌଣସି ସୀମାବଦ୍ଧତା ନାହିଁ। ସେମାନେ ଯାହା ଲେଖନ୍ତି, ତାହା ପ୍ରେରଣା ସମ୍ଭୁତ ସାହିତ୍ୟ। କୌଣସି ଗୋଟିଏ ଆଦର୍ଶ ସାମ୍ନାରେ ରହିଛି। ଧରନ୍ତୁ ମୁଁ ବ୍ୟାସ, ବାଲ୍ମୀକି ଉଦାହରଣ ଦେଲି। ପଞ୍ଚତନ୍ତ୍ରର ଉଦାହରଣ ନିଅନ୍ତୁ। ବିଷ୍ଣୁ ଶର୍ମା କାହାଣୀ ସବୁ କାହିଁକି ଲେଖିଲେ। ସେ କାହାଣୀ ଲେଖିଲେ ଏମାନେ ରାଜପୁତ୍ର। କୌଣସି ପ୍ରକାରେ ତାଙ୍କୁ ଶିକ୍ଷିତ କରାଯାଇ ପାରୁନି। ପଣ୍ଡିତ ବିଷ୍ଣୁ ଶର୍ମା ସ୍ଥିର କରୁଛନ୍ତି ଯେ, କାହାଣୀ ମାଧ୍ୟମରେ ଏମାନଙ୍କୁ ଶିକ୍ଷିତ କରିହେବ, ସେତେବେଳେ ସେ ଗୋଟିଏ ଉଦ୍ଦେଶ୍ୟ ରଖି ପଞ୍ଚତନ୍ତ୍ରର କାହାଣୀ ସୃଷ୍ଟି କରୁଛନ୍ତି। ତେଣୁ ଏଇଠି ଗୋଟିଏ ନିର୍ଦ୍ଦିଷ୍ଟ ଆଦର୍ଶ ପାଇଁ ସାହିତ୍ୟ ସୃଷ୍ଟି କରାଯାଉଛି। ତୃତୀୟଟି ହେଉଛି ବ୍ୟବହାରିକ ସାହିତ୍ୟ। ଧରନ୍ତୁ ମୁଁ ଲେଖୁଛି। ଯେହେତୁ ଏଇଟା ଛପା ହେବ, ସିରିୟଲ ହେବ, ଫିଲ୍ମ ହେବ, ରେଡିଓ ଡ୍ରାମା ହେବ ପଇସା ଆସିବ। ଏଇସବୁ ଉଦ୍ଦେଶ୍ୟ ରଖି ଯେଉଁ ଲେଖା ଲେଖାଯିବ, ତାହା ବ୍ୟବାହାରିକ ସାହିତ୍ୟ। କିନ୍ତୁ ବିଜ୍ଞାପନରେ ଜଣେ ସାହିତ୍ୟିକ ଭାଷା ବ୍ୟବହାର କରୁଛି, ତାହା ମଧ୍ୟ ବ୍ୟବହାରିକ ସାହିତ୍ୟ। ସେଥିରେ ଉଚ୍ଚସ୍ତରରେ ସାହିତ୍ୟ ଲେଖାଯାଇପାରେ। କିନ୍ତୁ ଯେତେ ଟ୍ୟାଲେଣ୍ଟ ଥାଉନା କାହିଁକି ଯଦି ତା'ର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଅତ୍ୟନ୍ତ ସୀମାବଦ୍ଧ ହୋଇଥିବ ପାଠକ ଉପରେ ତା'ର ପ୍ରଭାବଟା ଲାଷ୍ଟିଙ୍ଗ ଖୁବ୍ କରିବନି, ମଉଳି ଯିବ। ଅଜିକାଲି ବ୍ୟବହାରିକ ସାହିତ୍ୟ ବେଶି।

ପ୍ରଶ୍ନ. ଆପଣଙ୍କ ଗଳ୍ପଗୁଡ଼ିକ ପ୍ରେରଣା ସମ୍ଭୁତ ଓ ଆଦର୍ଶ ପ୍ରେରିତ ମନେହୁଅନ୍ତି। କ'ଣ ବ୍ୟବହାରିକ ଗଳ୍ପରେ କେବେ କଲମ ଚଳେଇ ନାହାଁନ୍ତି ?

ଉତ୍ତର. ହଁ, ମୋ ଗଳ୍ପଗୁଡ଼ିକ ପ୍ରେରଣା ସମ୍ଭୁତ ଓ ଆଦର୍ଶ ପ୍ରେରିତ। ବ୍ୟବହାରିକ ଗଳ୍ପ ମୁଁ ଲେଖିନାହିଁ। ତେଣୁ ଦୁଇ ପର୍ଯ୍ୟାୟରେ ପ୍ରତ୍ୟେକ ଗଳ୍ପ ତା'ର ନିର୍ଦ୍ଦିଷ୍ଟ ଜୀବନ ଧର୍ମରେ ସମୃଦ୍ଧ ବୋଲି ମୁଁ ଭାବେ, ଅତ୍ୟନ୍ତ ପ୍ରାଣବନ୍ତ ବୋଲି ମନେକରେ। ତେଣୁ ତା' ଭିତରେ ଯେଉଁ ପରିପ୍ରେକ୍ଷୀରେ ଯେଉଁ ପ୍ରେରଣାରେ ଯେଉଁ ଗପଟି ଲେଖାଯାଇଛି ସେତେବେଳେ ସେ ଗପଟି ତା'ର ନିଜସ୍ୱ ସାର୍ଥକତା ରଖେ।

ପ୍ରଶ୍ନ. ଆପଣଙ୍କ ଅନେକ ଗଳ୍ପକୁ ପାଠକୀୟ ଆଦର ମିଳିଛି। କହିବେ କି କେଉଁ ଗପଟି ଆପଣଙ୍କର ଶ୍ରେଷ୍ଠ ?

ଉତ୍ତର. ସେଇଟା ଆପେକ୍ଷିକ। ମୋ ମତରେ ମୋର ଯେଉଁ ଗଳ୍ପଟା ଶ୍ରେଷ୍ଠ ଆପଣଙ୍କୁ ହୁଏତ ଭଲ ଲାଗିବ ନାହିଁ। ଅନେକ ସମୟରେ ସେଇଟା ଆପେକ୍ଷିକ। ଧରନ୍ତୁ 'ଲକ୍ଷ୍ମୀର ଅଭିସାର' ଗଳ୍ପଟି ଓଡ଼ିଶାର ଏକ ଗାଁର ଗପ। ସେଇ ଝିଅଟି ଗୋଟିଏ ଗରିବ ଘରର ଝିଅ। ଯୋଉ ମନ୍ଦିର ଚିତ୍ର ଦିଆଯାଇଛି ମୁଁ କେବେ ଭାବିନି ସେ ଗପ ଭାରତବର୍ଷ ବାହାରେ କାହା ପାଇଁ ଆବେଦନ ନୁହେଁ। ହଠାତ୍ ମୁଁ ଦିନେ ଦେଖିଲି ଆମେରିକା ଲଙ୍ଗ୍ ଲୋନି ୟୁନିଭରସିଟି ଗୋଟିଏ ବହି ବାହାର କରିଛି। ତାଙ୍କ ନିଜ ରାଜ୍ୟର ଶ୍ରେଷ୍ଠ ଗପ ଓ ପୃଥିବୀର ସମସାମୟିକ ଶ୍ରେଷ୍ଠ ଗପ, ଯାହା ପ୍ରତିନିଧି ଶ୍ରେଣୀୟ ଗପ ସେଥିରେ ସ୍ଥାନ ଦେଇଛନ୍ତି। ସମଗ୍ର ପ୍ରାଚ୍ୟରୁ ଏଇ ଗପଟି ମନୋନୀତ ହୋଇଛି।

ପ୍ରଶ୍ନ. ଗଳ୍ପ ସାହିତ୍ୟକୁ ଅଦରି ନେଲେ, ଯଦିଓ ଆରମ୍ଭରେ କବିତା ଲେଖୁଥିଲେ ?

ଉତ୍ତର. ବାଛି ନେଇଛି ଠିକ୍ ନୁହେଁ। କବିତା ମୁଁ ଲେଖୁଥିଲି ପ୍ରଥମେ। କବିତା ବିଭିନ୍ନ ପ୍ରକାର ବକ୍ତବ୍ୟ ପାଇଁ ବିଭିନ୍ନ ପ୍ରକାର ମାଧ୍ୟମ ଲୋଡ଼ା। ବିଭିନ୍ନ ପ୍ରାକାର କବିତାରେ ଯୋଉ ଭାବ ପ୍ରକାଶ କରାଯିବ, ସେଟା କବିତା ଦ୍ୱାରା ହିଁ ସମ୍ଭବ। ଗଳ୍ପରେ ଯେଉଁ ଭାବଟା ପ୍ରକାଶ କରାଯିବ, ସେହି ବକ୍ତବ୍ୟଟା କବିତା ଦ୍ୱାରା ସମ୍ଭବ ନୁହେଁ। ତେଣୁ ଯେତେବେଳେ ବିଭିନ୍ନ ପ୍ରକାର ପ୍ରେରଣା ଆସିଛି, ସେତେବେଳେ ବିଭିନ୍ନ ମାଧ୍ୟମର ଆଶ୍ରୟ ନେଇଛି। ଏକଦା ମୁଁ ବହୁତ କବିତା ଲେଖୁଥିଲି। ସେଇଟା ମନ୍ଦୀଭୂତ ହୋଇଗଲା। ତାହାର ଦୁଇପ୍ରକାର କାରଣ ଅଛି। ଗୋଟିଏ ହେଉଛି ମୁଁ ନିର୍ଦ୍ଦିଷ୍ଟ ସ୍ତରରେ ଅନୁଭବ

କଲି ଯେ ଗଳ୍ପ ଜରିଆରେ ଯେଉଁ ବାସ୍ତବତା ମୁଁ ପ୍ରକାଶ କରିପାରିବି, ସେଇଟା ବିଶେଷ ଜରୁରୀ। ଦ୍ୱିତୀୟରେ ଏଇଟା ଅତ୍ୟନ୍ତ ନେଗେଟିଭ, କାରଣ ମୋର ସମସାମୟିକ କବିମାନଙ୍କ ଭିତରେ ଏତେପ୍ରକାର ବିଚ୍ୟୁତି ମୁଁ ଲକ୍ଷ୍ୟ କଲି କବି ବନିଯିବା ମାନସରେ କବିତା ଲେଖିବା, କବିତା ଲେଖିବା ନାଁରେ ଯାହା ବାସ୍ତବିକ କବିତା ପଦବାଚ୍ୟ ନୁହେଁ, ସେଇଭଳି କଥା କିଛିଦିନ ମୋ ଭିତରେ ବିରକ୍ତି ଭାବ ଆଣିଦେଲା। ଅବଶ୍ୟ ମୋର ଉଚିତ ହୋଇନି। ତଥାପି କବିତାଠାରୁ ଦୂରେଇଆସି ଗଳ୍ପ ସାହିତ୍ୟକୁ ଆବୋରି ନେଲି। ଯେତେବେଳେ ଗଳ୍ପ ଲେଖିବାକୁ ଆରମ୍ଭ କଲି ପାଠକମାନେ ପଢ଼ିବାକୁ ଆଗ୍ରହ ପ୍ରକାଶ କଲେ, ସମ୍ପାଦକମାନେ ଲେଖା ବାରମ୍ବାର ଚାହିଁଲେ, ଫଳରେ ସେଇ ସୁଅରେ ପଡିଗଲି। ପଡିଯାଇଛି। ଚାଲିଛି...।





# ଦେଉଳ ହେଉ କି ଗଣିକା ଦ୍ୱାର, ସବୁ ମୋ ପାଇଁ ଉନ୍ମୁକ୍ତ

## ମହାପାତ୍ର ନୀଳମଣି ସାହୁ:

**ସ**ବୁବେଳେ ଭାବ ଓ ଚେତନାର ବିଭିନ୍ନ ସ୍ତରରେ ବିଚରଣ କରୁଥିବା, ବିଭିନ୍ନ ରାଗରେ ଗୀତ ଗାଉଥିବା, ସମାଜର ସବୁ ସ୍ତରରେ ଗତାଗତ ହେଉଥିବା କଥାକାର ମହାପାତ୍ର ନୀଳମଣି ସାହୁ। ଦେଉଳ ହେଉ କି ଗଣିକା ଦ୍ୱାର - ତାଙ୍କ ପାଇଁ ସବୁ ଦ୍ୱାର ଉନ୍ମୁକ୍ତ। କଥା ସାହିତ୍ୟରେ ପିରାମିଡ୍ ଗଢ଼ିଥିବା, ଗଳ୍ପ, ଉପନ୍ୟାସ, ଶିଶୁସାହିତ୍ୟ, ରମ୍ୟ ସାହିତ୍ୟ ଏପରି କି ପ୍ରବନ୍ଧ ସାହିତ୍ୟରେ ପ୍ରଚଣ୍ଡ ପ୍ରତିଭାର ପରିଚୟ ଦେଇ ଆସିଥିବା ଓଡ଼ିଶା ସାହିତ୍ୟ ଏକାଡେମୀର ପୂର୍ବତନ ସଭାପତି ଶ୍ରୀ ସାହୁଙ୍କ ସହ ଆଳାପ।

ପ୍ରଶ୍ନ: ଆପଣଙ୍କ 'ଅଭିଶପ୍ତ ଗନ୍ଧର୍ବ' କେନ୍ଦ୍ର ସାହିତ୍ୟ ଏକାଡେମୀ ଏବଂ ଶାରଳା ପୁରସ୍କୃତ। ଏଥିରେ ଥିବା ଗର୍ନ୍ଧବ ଚରିତ୍ରର ପ୍ରଚ୍ଛଦରେ ଆପଣ ନିଜକୁ ରଖିଥିବା ଅନୁଭୂତ ହୁଏ, ଏ ସମ୍ପର୍କରେ ଆପଣ କ'ଣ କହିବେ?

ଉତ୍ତର. ଅଭିଶପ୍ତ ଗନ୍ଧର୍ବ' ମୋର କିଶୋର ବୟସର ଜୀବନ-ଗାଥା। ମଣିଷ ଜୀବନରେ କିଶୋର ବୟସ ହିଁ ଗଭୀର ଉଚ୍ଛ୍ୱାସ ଓ ଅନୁଭୂତିର ସମୟ। ପ୍ରଚଣ୍ଡ ଭାବାବେଗର ଅନୁପ୍ରେରଣାରେ ଉଦ୍‌ବେଳିତ ହୃଦୟ-ମନରେ ଡେଣା ଲାଗିଯାଏ ସେତେବେଳେ। ମନେ ମନେ ଆକାଶରେ ମୁକ୍ତପକ୍ଷ ବିହଙ୍ଗ ପରି ଉଡି ବୁଲୁଥାନ୍ତି ଓ ସମୁଦ୍ରରେ ସନ୍ତରୁଥାନ୍ତି କିଶୋରକିଶୋରୀମାନେ। ଏହି ବୟସରେ କବି ଓ ଶିଳ୍ପୀମାନେ ମନେହୁଅନ୍ତି-ଗନ୍ଧର୍ବ ଲୋକରୁ ଖସି ପଡିଥିବା ଅଭିଶପ୍ତ ଗନ୍ଧର୍ବଗନ୍ଧର୍ବୀ ଭଳି। ସେ ବହିରେ ଜଣେ ବାସ୍ତବ ଅଭିଶପ୍ତ ଗନ୍ଧର୍ବର କାହାଣୀ ରହିଛି ଏବଂ କହିବାରେ ଦ୍ୱିଧା ନାହିଁ ଯେ, ସେ ବହିରେ ଥିବା ସବୁ କାହାଣୀ ମୋ ନିଜ ଜୀବନର ଗାନ୍ଧର୍ବୀୟ କାଣ୍ଡକାରଖାନା ସବୁ ରହିଛି।

ପ୍ରଶ୍ନ: ଆପଣଙ୍କ ଲେଖାରେ ପାପ-ପୁଣ୍ୟ, ପ୍ରେମ, ମୃତ୍ୟୁ, ଦୁଃଖ, ଦ୍ୱନ୍ଦ୍ୱ, ସ୍ୱ-ବିରୋଧିତା ଆଦି ମୌଳିକ ମାନବୀୟ ସମସ୍ୟାଗୁଡିକ ବେଶ୍ ନିଖୁଣ ଭାବରେ ଚିତ୍ରିତ। ପାଠକ ସାମ୍ନାରେ ସାହିତ୍ୟକୁ ଏପରି ଉପସ୍ଥାପନ କରି କ'ଣ ଦର୍ଶାଇବାକୁ ଚାହାନ୍ତି?

ଉତ୍ତର. ପ୍ରେମ, ମୃତ୍ୟୁ, ପାପ, ଅନ୍ତରାତ୍ମାର ଅଭୀପ୍ସା, ଆତ୍ମବିରୋଧ, ବ୍ୟକ୍ତିଗତ ଦୁଃଖ ଦ୍ୱନ୍ଦ, ବିଷାଦ, ଯନ୍ତ୍ରଣା ଓ ଆନନ୍ଦ ଉଲ୍ଲାସ ମଣିଷ ଜୀବନର ପ୍ରଧାନ କଥା। ସେସବୁର ଗଭୀର ଚିତ୍ରଣ ନ ଥିଲେ ସେ ଲେଖା କ'ଣ ସାହିତ୍ୟ ପଦବାଚ୍ୟ ହୋଇପାରେ।

ପ୍ରଶ୍ନ: ଆପଣ ସାହିତ୍ୟର ଭିନ୍ନ ଭିନ୍ନ ସ୍ତରର ଭାବ, କଥାବସ୍ତୁ, ଚରିତ୍ର ଆଦି ପାଇଁ ଭିନ୍ନ ଭିନ୍ନ ଆଙ୍ଗିକ ଓ ଶୈଳୀ ବ୍ୟବହାର କରନ୍ତି ଯାହାକି ଅନ୍ୟ ସାହିତ୍ୟିକଙ୍କଠାରୁ ନିଆରା। ତେବେ ଏପରି ବିବିଧତା ଭିତରେ ଲେଖନୀ ଚାଳନାର ରହସ୍ୟ କ'ଣ କହିବେ କି?

ଉତ୍ତର. ଆପଣ ଠିକ୍ ଧରିଛନ୍ତି। ମୋର ପୂର୍ବ କଥାକାର ଓ ସମସାମୟିକ କଥାକାରମାନଙ୍କ ଭିତରେ ମୋର ସ୍ୱାତନ୍ତ୍ର୍ୟ ହେଲା ମୁଁ ଚେତନାର ଗୋଟିଏ ସ୍ତରରେ ବନ୍ଧା ପଡି ନ ଥାଏ। ସମାଜର ଗୋଟିଏ ଶ୍ରେଣୀର ଲୋକଙ୍କ ସହ ମିଶି ନ ଥାଏ। ମୁଁ ମଧ୍ୟ ବାକ୍‌ଦେବୀ ବୀଣାପାଣିଙ୍କ ବୀଣାର ଗୋଟିଏ ତାରରୁ ଗୋଟିଏ ମାତ୍ର ସ୍ୱରରେ

ଗାନ ଗାଉ ନ ଥାଏ। ମୁଁ ବିଭିନ୍ନ ଶୈଳୀରେ କଥା କହେ। ବିଭିନ୍ନ ରାଗରେ ଗୀତ ଗାଏ। ମୁଁ ବେଳେବେଳେ ଭାବ ଓ ଚେତନାର ବିଭିନ୍ନ ସ୍ତରରେ ବୁଲୁଥାଏ। କେଉଁଠି ଶୃଙ୍ଗାରୋହଣ କରୁଥାଏ ତ କେଉଁଠି ପାତାଳ କି ରସାତଳର ଭିତରକୁ ଭିତରକୁ ଗଳି ଯାଉଥାଏ। ଏ ସମାଜରେ ସବୁ ସ୍ତରରେ ମୋର ଗତାଗତ ଅଛି। ମୋ ପାଇଁ ସବୁ ଦ୍ୱାର ଖୋଲା। ଦେଉଳ ଦ୍ୱାର ଓ ଗଣିକାର ଦ୍ୱାର-ଉଭୟ ମୋ ପାଇଁ ଉନ୍ମୁକ୍ତ ଥାଏ। ମୁଁ ଜଣେ ଗଣିକା, ଅପରାଧୀ ଓ ବିଧର୍ମୀ ସଙ୍ଗେ ଯେପରି ହୃଦୟ ଦେଇ ମିଶେ ସେହିପରି ଜଣେ ପୁଣ୍ୟବାନ, ସନ୍ନ୍ୟାସୀ, ସାଧୁଙ୍କ ସହିତ ବି ଗଭୀର ଭାବେ ମିଶେ। ମୋ ଭିତରେ ଥିବା ଗଣିକାଟିଏ ସାଧୁସନ୍ଥଙ୍କ ପ୍ରେମରେ ପଡ଼ିବାକୁ ସର୍ବଦା ବ୍ୟାକୁଳ ହୋଇଥାଏ ଏବଂ ମୋ ଭିତରେ ଥିବା ବୈରାଗୀ ସନ୍ଥଟିଏ ସବୁବେଳେ ଗଣିକାମାନଙ୍କ ପ୍ରେମରେ ପଡି ଛଟପଟ ହେଉଥାଏ। ମୋ ହୃଦୟ ସମସ୍ତଙ୍କ ପାଇଁ ସବୁବେଳେ ମେଲା। ମୋ ସାହିତ୍ୟରେ ତାହା ହିଁ ପ୍ରତିଫଳିତ ନ ହେବ କିପରି !

ପ୍ରଶ୍ନ: ଆପଣ ଜଣେ ସଫଳ ଗାଳ୍ପିକ, ସ୍ତମ୍ଭକାର ଏହା ସହିତ ସଫଳ କବି ବି ହୋଇପାରିଥାନ୍ତେ। କବିତା ଲେଖିଲେ ନାହିଁ କାହିଁକି ?

ଉତ୍ତର. ମୁଁ କେବଳ ଜଣେ କଥାକାର ନୁହେଁ। ଗଳ୍ପ ଅନେକ ଦିନରୁ ଛାଡିଦେଲିଣି। କିନ୍ତୁ ବହୁ ବିଷୟ ଓ ସମସ୍ୟାକୁ ନେଇ ମୁଁ ବହୁ ପ୍ରବନ୍ଧ, ଫିଚର, ରମ୍ୟରଚନା ଲେଖିଛି। କବିତା କାଁ ଭାଁ ଲେଖିଛି। ଏହା ପ୍ରକୃତରେ ମୋର ଏକ ଆତ୍ମନେପଦୀ ସୌଖୀନତା।

ପ୍ରଶ୍ନ: ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଦାୟିତ୍ୱ ତୁଲାଇବାବେଳେ ଆପଣ ନେଇଥିବା କେଉଁ ପଦକ୍ଷେପ ଆଜି ଆପଣଙ୍କୁ ସନ୍ତୁଷ୍ଟି ଦେଉଛି ? ଓଡ଼ିଆ ସାହିତ୍ୟ ପାଇଁ କିଛି କରିଛନ୍ତି ବୋଲି ଆତ୍ମତୃପ୍ତି ପାଉଛନ୍ତି ?

ଉତ୍ତର. ମୁଁ ଏକାଡେମୀ ପ୍ରେସିଡେଣ୍ଟ ଥିବାବେଳେ – ଏକାଡେମୀ ପୁରସ୍କାର ଅର୍ଥ ପରିମାଣ ବଢ଼ାଇଥିଲି। ସଂସ୍କୃତ ଭାଗବତର ଓଡ଼ିଆ ଅନୁବାଦ କରାଇଥିଲି। ଜଗନ୍ନାଥ ଦାସଙ୍କ ଭାଗବତର ଶୁଦ୍ଧ ସଂସ୍କରଣ କରାଇଥିଲି। ଏହା ଖୁବ୍ ବଡ଼କାର୍ଯ୍ୟ ଥିଲା। ସ୍ୱର୍ଗତ ପଣ୍ଡିତ ନୀଳମଣି ମିଶ୍ର ମୋତେ ଏଥିପାଇଁ ବହୁ ସାହାଯ୍ୟ କରିଥିଲେ। ମୁଁ ମଧ୍ୟ ଅଳ୍ପ ମୂଲ୍ୟରେ ବହୁ ବହି ଛପାଇ ବିକ୍ରି ବନ୍ଦୋବସ୍ତ କରାଇଥିଲି। ରାଜ୍ୟର ବିଭିନ୍ନ ଜିଲ୍ଲାରେ ସାହିତ୍ୟ ସଭା କରାଇଥିଲି। ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ମୋତେ ଏଥିରେ ସବୁ ସାହାଯ୍ୟ

କରିଥିଲେ। ମୁଁ ମୋର ଟର୍ମ ଶେଷ ହେବା ପୂର୍ବରୁ ସ୍ୱାସ୍ଥ୍ୟଗତ ଇସ୍ତଫା ଦେଇ ଅବସର ନେଇଥିଲି।

ପ୍ରଶ୍ନ: ତରୁଣ ଲେଖକ ଲେଖିକାଙ୍କଠାରେ କେଉଁ ସମ୍ଭାବନାକୁ ଦେଖୁଛନ୍ତି ?

ଉତ୍ତର. ଆଧୁନିକ କାଳରେ ବିଶ୍ୱର ସବୁ ଦେଶୀୟ ସାହିତ୍ୟରେ କ୍ଷୁଦ୍ର ଉପନ୍ୟାସ ଓ ଔପନ୍ୟାସିକାର ଆଦର ବଢ଼ିଲାଣି। ସମ୍ବାଦପତ୍ର ଓ ପତ୍ରପତ୍ରିକାମାନଙ୍କର ଲୋକପ୍ରିୟତା ମଧ୍ୟ ଏହା ଯୋଗୁ ବଢ଼ୁଛି। କିନ୍ତୁ ବୃହଦାକାୟ ଉପନ୍ୟାସର ବିସ୍ତୃତ ପରିଧି ଏଥିରେ କାହୁଁ ମିଳିବ।

ପ୍ରଶ୍ନ: ବର୍ତ୍ତମାନ ଓଡ଼ିଆ ସାହିତ୍ୟର କେଉଁ ବିଷୟକୁ ଆମ ସାହିତ୍ୟରେ ବିଶେଷ ଧ୍ୟାନ ଦେବା ଉଚିତ ବୋଲି ଭାବୁଛନ୍ତି ?

ଉତ୍ତର. ବର୍ତ୍ତମାନ ଆମ ସାହିତ୍ୟରେ ଉଚ୍ଚଧରଣର ସାହିତ୍ୟ ସମାଲୋଚନାର ଏକାନ୍ତ ଅଭାବ। ଫଳରେ ସାଧାରଣ ସାହିତ୍ୟ, ଲୋକପ୍ରିୟ ସାହିତ୍ୟ ଓ ଉଚ୍ଚାଙ୍ଗ ସାହିତ୍ୟ କାହାକୁ କୁହାଯିବ- ତାହା ଆମ ପାଠକମାନେ ବୁଝିପାରି ନାହାନ୍ତି। ଦ୍ୱିତୀୟ କଥାଟି ହେଲା-ଆମର ଲେଖିକା ଲେଖକମାନେ ଜୀବନପ୍ରତି ଖୁବ୍ ଦାୟିତ୍ୱଶୀଳ ହେବା ଉଚିତ। ବହୁତ ଅଧ୍ୟୟନ କରିବା ଉଚିତ୍। ଏବଂ ସାହିତ୍ୟ ସାଧନା ସହିତ ଜୀବନ-ସାଧନା ଉପରେ ମଧ ଖୁବ୍ ନିଷ୍ଠାପର ରହିବା ଉଚିତ।





# ଲୋକ ସ୍ୱୀକୃତି ଭାଷାର ମାନ୍ୟତା ବଢ଼ାଏ

## ଡଃ ଦେବୀପ୍ରସନ୍ନ ପଟ୍ଟନାୟକ:

**ଡଃ.** ଦେବୀପ୍ରସନ୍ନ ପଟ୍ଟନାୟକ, ଜଣେ ସୁନାମଧନ୍ୟ ଭାଷାବିତ୍। ଜଣେ ଭାଷାବିତ୍‌ଙ୍କୁ ସାହିତ୍ୟିକ ଭାବେ ପରିଗଣିତ କରାଯାଉ ନ ଥିବାରୁ ସେ କ୍ଷୋଭ ପ୍ରକାଶ କରନ୍ତି। ଭାଷା ସାହିତ୍ୟ କ୍ଷେତ୍ରରେ ଯଥେଷ୍ଟ ଅବଦାନ ରହିଛି ତାଙ୍କର। ଏଥିପାଇଁ ତାଙ୍କୁ ରାଜ୍ୟ ତଥା ରାଜ୍ୟ ବାହାରେ ମିଳିଛି ସମ୍ମାନ ଓ ସ୍ୱୀକୃତି। ୧୯୮୭ ମସିହାରେ ଭାରତ ସରକାରଙ୍କ ପକ୍ଷରୁ ପଦ୍ମଶ୍ରୀ ଉପାଧି ଲାଭ କରିଥିବା ଏହି ଭାଷାବିତ୍‌ଙ୍କ ସହ ସଂକ୍ଷିପ୍ତ ଆଳାପ।

ପ୍ରଶ୍ନ: ଓଡ଼ିଆ ସାହିତ୍ୟ ଜଗତରେ ଆପଣ କେଉଁ ଭାବେ ପରିଚିତ ବୋଲି ଭାବୁଛନ୍ତି ?

ଉତ୍ତର. ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରେ ଏଗାର ବର୍ଷ ରହିଛି, ଓଡ଼ିଆ ସାହିତ୍ୟ ବିଭାଗ ଗଢ଼ିଲି, ପାଞ୍ଚ ସାତଖଣ୍ଡ ଓଡ଼ିଆ ବହି ଲେଖିଛି, ଭାରତୀୟ ଜ୍ଞାନପୀଠରେ ପ୍ରଥମ ଓଡ଼ିଆ କମିଟିର ଚେୟାରମ୍ୟାନ ହୋଇଥିଲି, ଜ୍ଞାନପୀଠ କେନ୍ଦ୍ରରୁ ଚୟନ କମିଟିର ସଭ୍ୟ ମଧ୍ୟ ଥିଲି, ଓଡ଼ିଶା ସାହିତ୍ୟ ଏକାଡେମୀ, କେନ୍ଦ୍ରସାହିତ୍ୟ ଏକାଡେମୀର ସଭ୍ୟ ମଧ୍ୟ ହୋଇଥିଲି । ମାତ୍ର ଓଡ଼ିଆ ସାହିତ୍ୟ ଖ୍ୟାତି ଗ୍ରନ୍ଥରେ ମୋ ନାମ ଉଠିଲା ନାହିଁ । ଓଡ଼ିଶାରେ ମୋର ପରିଚୟ ସାହିତ୍ୟିକ ଭାବେ ନୁହେଁ, ଭାଷାବିତ୍ ଭାବେ ହୋଇ ରହିଗଲା ।

ପ୍ରଶ୍ନ: ଓଡ଼ିଆ ଭାଷା ସାହିତ୍ୟ ସମ୍ପର୍କରେ କ'ଣ କହିବେ ?

ଉତ୍ତର. ଭାରତରେ ସାହିତ୍ୟକୁ ନେଇ ଯେତେ ଉତ୍ସାହ ରହିଛି, ଭାଷାକୁ ନେଇ ସେହି ଉତ୍ସାହ ଦେଖିବାକୁ ମିଳେ ନାହିଁ । କେନ୍ଦ୍ର ଓ ରାଜ୍ୟସ୍ତରରେ ସାହିତ୍ୟ ପାଇଁ ପୁରସ୍କାର ଦେବାକୁ ଅନେକ ସଂସ୍ଥା ରହିଛନ୍ତି । କିନ୍ତୁ ଭାଷା ପାଇଁ ପୁରସ୍କାର ଦେଉଛି କିଏ ? ଓଡ଼ିଶା ଏହାର ବ୍ୟତିକ୍ରମ ନୁହେଁ । ଓଡ଼ିଆରେ ଅନ୍ତର୍ଜାତିୟ ଖ୍ୟାତିସମ୍ପନ୍ନ ଭାଷାବିତ୍ ବହୁତ ଅଛନ୍ତି, କିନ୍ତୁ ଜାତୀୟ ସ୍ତରରେ ସେମାନଙ୍କର ପରିଚୟ ନାହିଁ । କୁଞ୍ଜବିହାରୀ ତ୍ରିପାଠୀ ଓ ଗୋଲକବିହାରୀ ଧଳଙ୍କ ନାମ ନିଆଯାଇପାରେ । ଭାଷା ଉପରେ ଏତେ କାମ କରିଥିଲେ ସୁଦ୍ଧା ତାଙ୍କୁ କିଏ ଭାଷାବିତ୍ କହିବାର ମୁଁ ଦେଖି ନାହିଁ । ଆଜିଠୁ ୧୦ ବର୍ଷ ଆଗ ପର୍ଯ୍ୟନ୍ତ ଯେଉଁ ବହି ବାହାରିଛି ତା'ର ଗୁଣବତ୍ତା ବିଭିନ୍ନ ଶ୍ରେଣୀର । କୌଣସି ଆନ୍ତର୍ଜାତିକ ବହି ସହ ଏଗୁଡ଼ିକ ତୁଳନାଯୋଗ୍ୟ ନୁହଁନ୍ତି । ସାହିତ୍ୟ କଥା ନ କହିବା ଭଲ । ସାହିତ୍ୟର ମୂଲ୍ୟ ଯେ କମିଯାଉଛି ଏକଥା ଖୋଲାଖୋଲି ଆଲୋଚନା କରିବାର ସତ୍ସାହସ ଦେଖିବାକୁ ମିଳୁନାହିଁ । ପୁରସ୍କାରକୁ ଧରି ଗୋଷ୍ଠୀ ଗଢ଼ା ଚାଲିଛି । ସମାଲୋଚନା କହିଲେ ଗାଳିମନ୍ଦ । ଗତ ପାଞ୍ଚବର୍ଷ ଭିତରେ ବ୍ୟକ୍ତିଗତ ପ୍ରକାଶନ ବଢ଼ିଛି । ପ୍ରକାଶକମାନେ ମୁଣ୍ଡ ବାଡ଼ୋଉଛନ୍ତି । ପୁସ୍ତକମେଳା ବର୍ତ୍ତମାନ ଜିଲା ସ୍ତରରେ ହେଲାଣି । ପାଠକ ତ ନିଶ୍ଚୟ ବଢ଼ିଥିବେ । କିନ୍ତୁ ଯାହାକୁ ପଚାରିଲେ ସେଇ ଏକା କଥା । ପ୍ରକାଶନରେ କ୍ଷତି । ପ୍ରକାଶକମାନେ ଏବେ କେବଳ କେତେକ ସଂସ୍ଥା ପାଇଁ ବହି ଛାପୁଛନ୍ତି ।

ପ୍ରଶ୍ନ: ଏବେ ଓଡ଼ିଆ ଭାଷା ନିଜକୁ କେତେ ପରିମାଣରେ ଶୁଦ୍ଧ ରଖି ପାରିଛି ?

ଉତ୍ତର. ଶୁଦ୍ଧ ଓଡ଼ିଆ କହିଲେ କ'ଣ ମୁଁ ଜାଣିନି। ତେଣୁ ଓଡ଼ିଆ ଭାଷାରେ ଶୁଦ୍ଧତା ରହିଛି କି ନାହିଁ ମୁଁ କହିପାରିବିନି। କୌଣସି ଭାଷା ଅଶୁଦ୍ଧ ନୁହେଁ। ସବୁ ଭାଷାର ଆଞ୍ଚଳିକ ଭେଦ ରହିଛି, ସାମାଜିକ ଭେଦ ମଧ୍ୟ ରହିଛି। କିନ୍ତୁ ଅନେକ ଭାଷା ଏହା ସ୍ୱୀକାର କରିବାକୁ ଅରାଜି। ଆମେ ଯଦି ଓଡ଼ିଆ ଭାଷାର ବିଭିନ୍ନ ଭେଦକୁ ସ୍ୱୀକାର କରୁଥାନ୍ତେ, ତେବେ ସମ୍ବଲପୁରୀ, ବଲାଙ୍ଗିରୀ ଭାଷାକୁ ଅଶୁଦ୍ଧ ଭାଷା କହୁ ନ ଥାନ୍ତେ। ଲୋକ ସ୍ୱୀକୃତି ପାଇଲେ ଭାଷାର ମାନ୍ୟତା ବଢ଼ିଥାଏ।

ପ୍ରଶ୍ନ: ଓଡ଼ିଆ ପୁସ୍ତକର ଭାଷା ଓ ଆଞ୍ଚଳିକ ଭାଷା ଭିତରେ ସମନ୍ୱୟ ରହିଛି କି ?

ଉତ୍ତର. ଆଞ୍ଚଳିକ ଭାଷାକୁ ଯଦି ନିଜ ନିଜ ଲେଖାରେ ସ୍ଥାନିତ କରନ୍ତେ, ତେବେ ଯାଇ ଲିଖିତ ଓ କଥିତ ଭାଷା ମଧ୍ୟରେ ସମନ୍ୱୟ ରକ୍ଷା କରି ହୁଅନ୍ତା। ଅସମୀଆ ଓ ବଙ୍ଗଳା ଭାଷାଠାରୁ ଓଡ଼ିଆ ଭାଷା ପୁରୁଣା। ମାତ୍ର ଏହି ଦୁଇ ଭାଷାର କଥିତ ଓ ଲିଖିତ ଢ଼ାଞ୍ଚାରେ ଯେଉଁ ସମନ୍ୱୟ ରହିଛି, ଓଡ଼ିଆରେ ତାହା ଦେଖିବାକୁ ମିଳେ ନାହିଁ।

ପ୍ରଶ୍ନ: ଭାଷା ସାହିତ୍ୟ ସମ୍ପର୍କରେ ଅଧ୍ୟୟନ କରିବାକୁ ଆଗ୍ରହୀ ହେଲେ କିପରି ?

ଉତ୍ତର. ରାଜନୀତି କରିବା ଧାର୍ଯ୍ୟ ହୋଇଥିଲା। ରାଜନୀତିରେ ଯାହାସବୁ ଆଶଙ୍କା କରିଥିଲି ସେସବୁ ଘଟିଲା। ତା'ପରେ ଓଡ଼ିଆ ପଢ଼ିଲି। ପ୍ରଥମେ ଫରାସୀ ଭାଷା ଶିଖିଲି। ଭାଷା ବିଜ୍ଞାନ ନୂଆ କରି ଆସିଥାଏ, ମୁଁ ଭାବିଲି ଏହା ହିଁ ମୋ ପାଇଁ ଉପଯୁକ୍ତ ରାସ୍ତା। ତା'ପରେ ମୁଁ ଓଡ଼ିଆ ସହିତ ଅନ୍ୟାନ୍ୟ ଭାଷାକୁ ମଧ୍ୟ ଅଧ୍ୟୟନ କଲି। ଲିଙ୍ଗୁଇଷ୍ଟିକ୍‌ରେ ପିଏଚଡି ପରେ ମୋ ପାଇଁ ଅନେକ ବାଟ ଖୋଲିଗଲା। ଶାନ୍ତିନିକେତନର ରହଣି ମଧ୍ୟରେ ମୋ ଭିତରେ ଭାଷା ପ୍ରତି ଆଗ୍ରହ ଜାତ ହେଲା।

ପ୍ରଶ୍ନ: ଆପଣଯେ ଅନେକ ଦେଶ ବୁଲିଛନ୍ତି ତାହା ଆପଣଙ୍କ 'ଅନେକ ଜୀବନ' ପୁସ୍ତକରୁ ଜଣାଯାଏ। ସେହି ଦେଶମାନଙ୍କରେ ଓଡ଼ିଆ ଭାଷାର ସ୍ଥାନ କେଉଁଠି ?

ଉତ୍ତର. ଅଧିକାଂଶ ଦେଶରେ ଓଡ଼ିଆକୁ ଜାଣନ୍ତି ନାହିଁ। ଆମେରିକାରେ ଜାଣନ୍ତି, କାରଣ ସେଠି ଲିଙ୍ଗୁଇଷ୍ଟିକ୍‌ର ଆରମ୍ଭ। ବ୍ରିଟେନ୍ ଆମକୁ ଶାସନ କରିଥିଲେ ଏଣୁ ଜାଣନ୍ତି।

ପ୍ରଶ୍ନ: କେଉଁ ଦେଶୀୟ ଭାଷା ଆପଣଙ୍କୁ ବେଶି ଭଲ ଲାଗିଛି ?

ଉତ୍ତର. ମୁଁ ଭାଷାବିତ୍। ଏଣୁ ମୋତେ ସବୁ ଭାଷା ଭଲ ଲାଗେ।

ପ୍ରଶ୍ନ: ଆପଣଙ୍କ ଲିଖିତ 'ପିଲାଦିନ'ରେ ପରିବାରକୁ ଯେଭଳି ଦେଖିଛନ୍ତି, ଏବେ ସେହି ପରିସ୍ଥିତି ଅଛି ବୋଲି ଭାବୁଛନ୍ତି କି ?

ଉତ୍ତର. ନା, ପରିବାର ଭାଙ୍ଗିଯାଉଛି। ଆଜିକାଲି ଅନେକ ପ୍ଲେ ସ୍କୁଲ ହେଲାଣି। ବାପା ମାଆ ଉଭୟ କର୍ମବ୍ୟସ୍ତ। ଫଳରେ ପିଲାକୁ ପ୍ଲେ ସ୍କୁଲରେ ଛାଡୁଛନ୍ତି କିମ୍ବା ନିଜ ସହିତ ପିଲାକୁ ଅଧିକ ସମୟ ରଖିପାରୁନାହାନ୍ତି, ଯଦ୍ଵାରା ପରିବାରରେ ପିଲାଟି ଅଧିକ ସମୟ ରହୁ ନ ଥିବାରୁ ଏହା ଘଟୁଛି।

ପ୍ରଶ୍ନ: ଆପଣଙ୍କ ଭବିଷ୍ୟତ ଯୋଜନା କ'ଣ ?

ଉତ୍ତର. ଏବେ ଇନ୍ଦିରାଗାନ୍ଧୀ ଜାତୀୟ କଳା ପରିଷଦର ସିନିଅର କନ୍‌ସଲଟାଣ୍ଟ ଭାବେ କାର୍ଯ୍ୟ କରୁଛି। ତା'ସହ ବିଭିନ୍ନ ଅନୁଷ୍ଠାନ ସହିତ ସଂଶ୍ଳିଷ୍ଟ ଅଛି। ସେମାନଙ୍କର କାର୍ଯ୍ୟକ୍ରମ ସ୍ଥିର କରାଇବା ମୋ କାମ।





# ସମାଲୋଚନା ସାହିତ୍ୟର ଗୁଣାତ୍ମକ ଅଭିବୃଦ୍ଧି ଗୌଣ

## ଡଃ ଖଗେଶ୍ୱର ମହାପାତ୍ର:

**ଡଃ** ଖଗେଶ୍ୱର ମହାପାତ୍ର। ଜଣେ ବିଶିଷ୍ଟ ଭାଷାବିତ୍, ସମାଲୋଚକ, ପ୍ରାବନ୍ଧିକ ଭାବେ ସେ ବେଶ୍ ପରିଚିତ। ଭାଷା, ସାହିତ୍ୟ, ସଂସ୍କୃତି ସର୍ବୋପରି ଓଡ଼ିଶାର ଆଦିବାସୀମାନଙ୍କ ଉପରେ ରହିଛି ତାଙ୍କର ଗଭୀର ଅଧ୍ୟୟନ। ଏକାଧିକ ଭାଷାରେ ଧୂରୀଣ ପ୍ରଫେସର ମହାପାତ୍ର ଅଧ୍ୟାପନାରୁ ଅବସର ନେବା ପରେ ଏବେ ଭୁବନେଶ୍ୱରରେ ଅବସ୍ଥାପିତ। ଭାଷା ଓ ସାହିତ୍ୟ କ୍ଷେତ୍ରକୁ ବିଶେଷ ଅବଦାନ ପାଇଁ ତାଙ୍କୁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାରଠାରୁ ଆରମ୍ଭ କରି ସାରଳା ସ୍ମାରକୀ ପୁରସ୍କାର ଭଳି ଅନେକ ସମ୍ମାନ ମିଳିଛି। ତାଙ୍କ ମତରେ ଅଧିକ ଭାଷା ଶିଖିବା ପକେଟରେ ଆବଶ୍ୟକତାଠାରୁ ଅଧିକ ଅର୍ଥ ରଖିବା ସହ ସମାନ।

ପ୍ରଶ୍ନ: ସାହିତ୍ୟରେ ପ୍ରଥମ ପ୍ରବେଶ କେଉଁଥିରୁ ?

ଉତ୍ତର. ସାହିତ୍ୟରେ ରସିବା ଲୋକ ସାହିତ୍ୟର ବିବିଧ ବିଭାଗ ଓ ବିଭବ ପ୍ରତି ଧ୍ୟାନ ଦିଅନ୍ତି। ଏଣୁ ଏକାଧାରରେ ବିଭିନ୍ନ ଭୂମିକାରେ ଆତ୍ମପ୍ରକାଶ କରିଥାନ୍ତି। ମୁଁ ପ୍ରାବନ୍ଧିକ ଇତ୍ୟାଦି ସତ୍ତ୍ୱେ ଜଣେ କବି ରୂପରେ ପ୍ରଥମେ ଅନୁପ୍ରବେଶ କରିଥିଲି। ଆମ ଯୁବ କାଳର ଆସନ୍ତାକାଲି, ଚନ୍ଦ୍ରିକା, ପ୍ରଜାତନ୍ତ୍ର, ଡଗର ଇତ୍ୟାଦିରେ ୨୫/୩୦ କବିତା ପ୍ରକାଶ ପାଇଥିଲା। ଦୈବକ୍ରମେ ଓଡ଼ିଆ ଏମ.ଏ.ପଢ଼ା ଓ ଅଧ୍ୟାପନା ଭିତରକୁ ପଶିବା ପରେ କାରୟିତ୍ରୀ ପ୍ରତିଭା ଟିକକ ଭାବୟିତ୍ରୀ ହୋଇଗଲା।

ପ୍ରଶ୍ନ: ଆଦିବାସୀ ସଂପ୍ରଦାୟ ଭାଷା ଓ ସଂସ୍କୃତି ସମ୍ପର୍କରେ ପ୍ରବନ୍ଧମାନ ଲେଖିବାକୁ ଇଚ୍ଛା କଲେ କାହିଁକି ?

ଉତ୍ତର. ମୋର 'ମୁଖା ନ ଥିବା ମଣିଷ' (୧୯୯୫) ବହିର ଉପାରମ୍ଭରେ ଥିବା 'ସ୍ୱଭାଷ୍ୟ'ରୁ ଏଥିପାଇଁ ଉଦ୍ଧୃତି ଦେଇଛି- "୧୯୬୩ ମେ' ମାସରେ ଗୋପୀନାଥ ମହାନ୍ତିଙ୍କ 'ପରଜା' ଓ ଅମୃତର ସନ୍ତାନ'ଙ୍କ ରାଜ୍ୟରେ ମୋର ପ୍ରଥମ ପ୍ରବେଶ। ଚିକାଗୋ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ନର୍ମାନ୍ ଜାଇଡ୍ ସଶରୀରେ ମତେ ସେଠି ପହଞ୍ଚାଇଲେ ଯେଉଁଠିକି ଗୋପୀନାଥ ମୋତେ ମନୋ ଜଗତକୁ ନେଇଯାଇଥିଲେ। ଯିବାର, ରହିବାର, ଶୋଇବାର କିଛି ସୁବିଧା ନ ଥାଇ ସେହି ସୁନ୍ଦର ସଂସାର ଓ ସହଜ ମଣିଷଗୁଡିକ ମତେ ମୋହମୁଗ୍ଧ କରିଦେଲେ। ତେଣୁ ୪୫ ବର୍ଷ ହେଲାଣି ମୁଁ ଆଦିବାସୀ ସାଙ୍ଗରେ ଅଛି। ସଂସ୍ପର୍ଶ ହେତୁ ମୁଁ ବି କାଳେ ହୋଇଯାଇଛି – ଏ ମ୍ୟାନ୍ ଊିଦାଉଟ୍ ମାସ୍କ।

ପ୍ରଶ୍ନ: ଓଡ଼ିଆ ସାହିତ୍ୟର ସମାଲୋଚନା ଦିଗ ପ୍ରତି ଆପଣଙ୍କ ମତ କ'ଣ ?

ଉତ୍ତର. ଓଡ଼ିଆ ସମାଲୋଚନାର ଅଭିବୃଦ୍ଧି ଘଟିଛି ନିଶ୍ଚିତ, କିନ୍ତୁ ପରିମାଣାତ୍ମକ ତୁଳନାରେ ଗୁଣାତ୍ମକ କମ। ଆଲୋଚନାରେ ମୌଳିକ ବୃଦ୍ଧିବୃତ୍ତି କ୍ୱଚିତ୍ ପ୍ରତିଫଳିତ ହେଉଛି। ଆଗକୁ କ'ଣ କାମ ହେଇଯାଇଛି ତାକୁ ଜାଣୁନାହାନ୍ତି କିମ୍ବା ଜାଣି ଲୁଚାଉଛନ୍ତି। ମୁଁ ତ ନିଜେ ଅନୁଭବି ଯେ ମୋର କେତେ ତଥ୍ୟ, ତତ୍ତ୍ୱ ଓ ତର୍ଜମା କେତେକ ଖାଲି ଆତ୍ମସାତ୍ କରି ପାରଙ୍ଗମତା ପ୍ରଦର୍ଶନ କରୁଛନ୍ତି। ବୌଦ୍ଧିକ ସ୍ତରରେ ଦ୍ୱେଷ ସ୍ପୃହଣୀୟ। ଶୌର୍ଯ୍ୟ ଅସହନୀୟ। ପେଷାଦାର ଆଲୋଚକଙ୍କଠାରୁ ଅଣଅଧ୍ୟାପକମାନେ ବରଂ ଉତ୍କୃଷ୍ଟ ଚର୍ଚ୍ଚା କରୁଛନ୍ତି।

ପ୍ରଶ୍ନ: ଆପଣ ଉଭୟ ଗବେଷକ ଓ ସମାଲୋଚକ। ତେବେ ଏ ଦୁଇଟି ମଧ୍ୟରେ ପାର୍ଥକ୍ୟ କ’ଣ ?

ଉତ୍ତର. ରସଗ୍ରାହୀ ଓ ବୁଦ୍ଧିଗ୍ରାହ୍ୟ ସମାଲୋଚନା ଗବେଷଣା ସାପେକ୍ଷ। ଗବେଷଣା ଦ୍ୱାରା ତଥ୍ୟ ଉପଲବ୍ଧ ପୂର୍ବକ ସମାଲୋଚନାର ପ୍ରବୃତ୍ତି ହେବା ବାଞ୍ଛନୀୟ। ବାସ୍ତବରେ ଗବେଷଣା ପ୍ରାୟୋଗିକ କ୍ଷେତ୍ର ସମାଲୋଚନା। ଉଭୟ ଧାରା ପରସ୍ପରର ପରିପୂରକ। ଉଦାହରଣସ୍ୱରୂପ ନିଜର କଥା କହିବି ମୋର ପ୍ରଥମ ବହି ଚର୍ଯାଗୀତିକା (୧୯୬୫ ବର୍ତ୍ତମାନ ଦ୍ୱାଦଶ ସଂସ୍କରଣରେ ଉପନୀତ)। ଲେଖିବାବେଳକୁ ଚର୍ଯା ସମ୍ବନ୍ଧରେ ଭାରତର ଏବଂ ବାହାରେ ଯେଉଁଠି ଯାହା ଲେଖାଯାଇଛି, ସେସବୁ ପଢ଼ିବାକୁ ବର୍ଷାଧିକ ସମୟ ଲାଗିଲା। ଏବେ ବି ଆମର ବର୍ଷୀୟାନ ପ୍ରବୀଣ ପଣ୍ଡିତମାନେ ବୌଦ୍ଧଗାନ ଓ ଦୋହା ଚର୍ଯା କ’ଣ ବହିର ନାମ ଦେଇ କଥା କହନ୍ତି। ଭାବାବେଗ, ଜାତୀୟତାବୋଧ, ଅହଂକାରିତା ଇତ୍ୟାଦି ଏକ ପାଖରେ ଏବଂ ଗବେଷଣା ଓ ଆଲୋଚନା ଆରପାଖେ। ଏହା ହିଁ ଆମର ସ୍ଥିତି ସଂକଟ।

ପ୍ରଶ୍ନ: ଓଡ଼ିଆ ସାହତ୍ୟ ଚର୍ଚ୍ଚା ଦୁର୍ବଳ କି ?

ଉତ୍ତର. ହଁ, ଦୁର୍ବଳ।

ପ୍ରଶ୍ନ: ଏହାର କାରଣ କ’ଣବୋଲି ଭାବୁଛନ୍ତି ?

ଉତ୍ତର. କାରଣ ସାହିତ୍ୟ ବିଦ୍ୟା ଅନୁଶୀଳନର ଅଭାବ ତଥା ସାହିତ୍ୟ ପାଠରୁ ଦାର୍ଶନିକ ବା ଉଚ୍ଚତର ତତ୍ତ୍ୱ ଉପଲବ୍ଧିର ଅପାରଗତା। ପୂର୍ବେ ଭାରତରେ କାବ୍ୟ ଶାସ୍ତ୍ରର ଏକ ସ୍ୱତନ୍ତ୍ର ମୂଲ୍ୟ ଥିଲା। ଭାରତୀୟ ସାହିତ୍ୟଶାସ୍ତ୍ରୀମାନେ ବଡ଼ ବଡ଼ ଦାର୍ଶନିକ ରୂପେ ପ୍ରତିଭାତ ହୋଇଥିଲେ। ଏବେ ପାଶ୍ଚାତ୍ୟ ସାହିତ୍ୟରେ ଏହା ଦେଖାଯାଏ।

ପ୍ରଶ୍ନ: ଆପଣ ଜଣେ ଭାଷାବିତ୍। କିନ୍ତୁ ଏବେ ଭାଷାର ସଂସ୍କାର ଘଟୁଥିଲେ କି ଓଡିଆ କବିତାରେ କେତେକ ଅପଭାଷ୍ୟ ସୃଷ୍ଟି ହୋଇଛି। ଏ ସମ୍ପର୍କରେ ଆପଣ କ’ଣ କହିବେ ?

ଉତ୍ତର. ବହୁ ବର୍ଷ ତଳେ ଆଧୁନିକ ଓଡ଼ିଆ କବିତାରେ ଭାଷାର ପୁନର୍ବିନ୍ୟାସ ସୀମା ଓ ସମ୍ଭାବନା ବୋଲି ଏକ ପ୍ରବନ୍ଧ ଲେଖିଥିଲି। ‘କାବ୍ୟିକ ଭାଷା’ ବହି ଖଣ୍ଡିଏ ମଧ୍ୟ ଲେଖିଛି। ସେଥିରେ ମୋର ସ୍ପଷ୍ଟମତ ପ୍ରକାଶିତ। ଭାଷା ଓ ଭାଷାର ଶୈଳୀ ଦୁଇଟି ଭିନ୍ନ ପ୍ରତ୍ୟୟ। କବିତାରେ ଭାଷାର ରାଇଟରଲି ଏବଂ ରିଡରଲି ଅବରୋଧରେ ତାରତମ୍ୟ ରହିଯାଇଛି ବୋଲି ଅପଭାଷ୍ୟ ଅନୁଭବ ହୋଇଥାଇପାରେ।

ପ୍ରଶ୍ନ: ଆପଣ କହିଛନ୍ତି ଭାଷାର ବହିରଙ୍ଗ ଇତିହାସ ପରିବର୍ତ୍ତେ ଅନ୍ତରଙ୍ଗ ଇତିହାସ ପ୍ରତି ଗୁରୁତ୍ୱ ପ୍ରଦାନ କରାଯିବା ଉଚିତ। ତେବେ ଏହି ଅନ୍ତରଙ୍ଗ ଇତିହାସ କ'ଣ?

ଉତ୍ତର. ତୁ-ତୁମେ-ଆପଣ ବା ଖା-ଭୁଞ୍ଜ-ଗିଳ ମଧ୍ୟରେ ଭାଷାର ବହିରଙ୍ଗ ବନାମ ଅନ୍ତରଙ୍ଗ ରୂପ ଅନୁଭବ୍ୟ। ସସୁରେ ଲ୍ୟାଙ୍ଗ ଓ ପାରୋଲ ବୋଲି ଭାଷାର ଅପରିମେୟ ଓ ପରିମିତ ଦୁଇଟି ସ୍ତର ଦର୍ଶାଇଥିଲେ। ସବୁ ଓଡ଼ିଆ ଲୋକ ସମସ୍ତ ଓଡ଼ିଆ ଭାଷା ମୋଟେ ଜାଣି ନଥାନ୍ତି। ଭୌଗଳିକ ଓ ସାମାଜିକ ସ୍ତରରେ ସମାନ ଓଡ଼ିଆ ଭାଷାର ଭିନ୍ନ ଭିନ୍ନ ରୂପ ଆମକୁ ଦ୍ୱିଧାରେ ପକାଏ। ପ୍ରକୃତ ବା ମୂଳ ଓଡ଼ିଆଟା କ'ଣ? ଏଥିପାଇଁ ଭାଷାର ଅନ୍ତରଙ୍ଗ ଇତିହାସ ଅନୁଧ୍ୟାନ କରିବା କାମ୍ୟ।

ପ୍ରଶ୍ନ: ଆଦିବାସୀ ଭାଷା ଓ ସଂସ୍କୃତି ଏକାଡେମୀର ନିର୍ଦ୍ଦେଶକ ଭାବେ ଆପଣଙ୍କ ମତ କ'ଣ?

ଉତ୍ତର. ମୋର ଏକମାତ୍ର କାମନା, ପ୍ରଶାସକ ଓ ବୁଦ୍ଧିଜୀବୀଙ୍କ ଆକ୍ରମଣ/ସଂକ୍ରମଣ କବଳରୁ ଆଦିବାସୀଙ୍କ ସୁରକ୍ଷା ସେମାନେ ନିଜେ ସ୍ଥିର କରନ୍ତୁ। ଏବେ ବି ଆଦିବାସୀଙ୍କ ବିଷୟରେ ନୃତତ୍ତ୍ୱ ବହୁତ, ମାନବିକତାବୋଧ ସ୍ୱଳ୍ପ। ବୈଜ୍ଞାନିକ ସିଦ୍ଧାନ୍ତ ପର୍ଯ୍ୟନ୍ତ ଅନ୍ତରଙ୍ଗ ଉପଲବ୍ଧି ଅପ୍ରତୁଳ। ତାଙ୍କୁ ଜାଣିବା ପାଇଁ ଲୋଡା ସହାନୁଭୂତି, କେବଳ ସହାନୁଭୂତି ନୁହେଁ। ସରକାରୀ ନୀତି ସହିତ ନିୟତ ଦରକାର। ଏମିତି ହୋଇପାରିଲେ ମୁଁ ସୁଖୀ ହେବି, ଆଶ୍ୱସ୍ତି ଲାଭ କରିବି।

ପ୍ରଶ୍ନ: ଅନୁବାଦ ସାହିତ୍ୟ ସମ୍ପର୍କରେ କ'ଣ କହିବେ?

ଉତ୍ତର. ଏହି ବ୍ରହ୍ମାଣ୍ଡ, ଭାରତ, ଓଡ଼ିଶା ସବୁ ବହୁଭାଷିକ କ୍ଷେତ୍ର। ଅଥଚ ପରସ୍ପରକୁ ଜାଣିବାର ଆଗ୍ରହ ରହିଛି। ଏଣୁ ଅନୁବାଦ ଜରୁରୀ। ଏହାର ଲକ୍ଷ୍ୟ ଦ୍ୱିବିଧ- ବିଶ୍ୱର ବା ଅନ୍ୟର ଉତ୍କୃଷ୍ଟତା ଜାଣିବା ଏବଂ ନିଜର ଅଭାବ ପୂରଣ କରିବା।

ପ୍ରଶ୍ନ: ବର୍ତ୍ତମାନ ଓଡ଼ିଆ ସାହିତ୍ୟ ପାଇଁ କ'ଣ କିପରି ଆବଶ୍ୟକତା ରହିଛି?

ଉତ୍ତର. ଅପରାଧ ସାହିତ୍ୟର ସଂଘାତ ଅପେକ୍ଷା ନିଜସ୍ୱ ଅନୁପ୍ରେରଣା ଭଲ ଚରନା ସୃଷ୍ଟି କିରିବ। କେବଳ ପୁରସ୍କାର, ସମ୍ବର୍ଦ୍ଧନା ପ୍ରାପ୍ତି ଲକ୍ଷ୍ୟରେ ଦେଖିବା କିମ୍ବା ମୂଲ୍ୟାୟନ କରିବା ପ୍ରବୃତ୍ତି ପରିତ୍ୟଜ୍ୟ। ଓଡ଼ିଆ ସାହିତ୍ୟର ଭବିଷ୍ୟତ ଅଭିବୃଦ୍ଧି ଏହା ଫଳରେ ସମ୍ଭବ।





# ଆଜିର ପିଢ଼ି ନିଜ ମାତୃଭାଷା ପ୍ରତି ଉଦାସୀନ

## ନିତ୍ୟାନନ୍ଦ ଶତପଥୀ:

ବିଶିଷ୍ଟ ଲେଖକ ନିତ୍ୟାନନ୍ଦ ଶତପଥୀ। ଓଡ଼ିଆ ସାହିତ୍ୟର ଅଧ୍ୟାପନାକୁ ପେସା କରିଥିବା ଏହି ଲେଖକ ଜଣେ ବିଶିଷ୍ଟ ସମାଲୋଚକ ଭାବେ ପରିଚିତ। କବିତା, ଭ୍ରମଣକାହାଣୀ, ଜୀବନୀ ପୁସ୍ତକ ସମେତ କିଛି ଗଳ୍ପ ମଧ୍ୟ ରଚନା କରିଛନ୍ତି ସେ। ସମାଲୋଚନାକୁ ସାହିତ୍ୟର ଏକ ଅଂଶ ବୋଲି ସ୍ୱୀକାର କରୁ ନ ଥିବା ବ୍ୟକ୍ତିଙ୍କ ପ୍ରତି କ୍ଷୁବ୍ଧ ଶ୍ରୀ ଶତପଥୀଙ୍କର ଯୁକ୍ତି- କବିତା ଯେତେ ପରିମାଣରେ ତା'ର ମର୍ଯ୍ୟାଦା ହରାଇ ନାହିଁ ତତୋଧିକ ପରିମାଣରେ ଏହା ବିରୋଧରେ ପ୍ରଚାର ଚାଲିଛି। ବର୍ତ୍ତମାନର ସାହିତ୍ୟ ସମ୍ପର୍କରେ ତାଙ୍କ ସହ ହୋଇଥିବା ଆଳାପର କିୟଦଂଶ।

ପ୍ରଶ୍ନ: ଗଳ୍ପ, କବିତା, ଭ୍ରମଣକାହାଣୀ ସହ ସମାଲୋଚନା ଲେଖା, ସମତୁଲ ଆଣୁଛନ୍ତି କିପରି ?

ଉତ୍ତର. କଲେଜରୁ ଏକ କବିତାରୁ । ୧୯୫୫ ମସିହାରୁ ମୋର କବିତା ଲେଖା । ୧୯୬୧ ମସିହା ବିଷୁବ ମିଳନରେ କବିତା ପାଇଁ ପ୍ରଜାତନ୍ତ୍ର ବିଷୁବ ମିଳନ ପୁରସ୍କାର ପାଇଥିଲି । କିନ୍ତୁ ବିଶ୍ୱବିଦ୍ୟାଳୟ ଅଧ୍ୟାପକ ହେବା ପରେ କବିତା ପ୍ରତି ଛାତ୍ରଛାତ୍ରୀଙ୍କ ଅନାଗ୍ରହ ଦେଖି ମୁଁ ବାଧହୋଇ କବିତା ଉପରେ ତର୍ଜମା, ଭାଷ୍ୟ ଓ ବିଶ୍ଳେଷଣ ଆରମ୍ଭ କଲି । ତା'ରି ଭିତରେ କିଛି ଗଳ୍ପ ବି ଲେଖା ହୋଇ ଯାଉଥିଲା । ତେଣୁ ସାହିତ୍ୟ ଜୀବନର ଆରମ୍ଭ କେଉଁଠୁ ବୋଲି କହିବି । ଏଣୁ ପୁଣି ଆତ୍ମଜୀବନୀ ଓ ଭ୍ରମଣ କାହାଣୀ ଲେଖୁଛି । ସବୁଜରୁ ସାମ୍ପ୍ରତିକ ୫ଟି ସଂସ୍କରଣ ହେବା ପରେ ଆପଣ ଅନୁଭବ କରୁଥିବେ କବିତା ସମ୍ପର୍କୀତ ଆଲେଚନା ନିଶ୍ଚୟ ପାଠକ ଅଛନ୍ତି । ତେଣୁ ପାଠକ ଛାତ୍ରଛାତ୍ରୀ ଓ ଗବେଷକମାନଙ୍କୁ ଆଖିରେ ରଖି ବିଶ୍ୱବିଦ୍ୟାଳୟ ଅଧ୍ୟାପକଟିଏ ସମାଲୋଚନା ଲେଖିବାକୁ ବାଧ । ବିଶିଷ୍ଟ କବି ସୀତାକାନ୍ତ ମହାପାତ୍ରଙ୍କ ପରାମର୍ଶ କ୍ରମେ ଏ କେତେବର୍ଷ ମଧ୍ୟରେ ମୁଁ ଲେଖିଥିବା କବିତାଗୁଡ଼ିକର ଗୋଟିଏ ସଂକଳନ କରିବାକୁ ଯାଉଛି ।

ପ୍ରଶ୍ନ: ୧୯୬୨ରେ 'ଅଗ୍ନିଶିଖା' କବିତା ସଂକଳନ ପ୍ରକାଶର ଦୀର୍ଘ ବର୍ଷ ପରେ ଦ୍ୱିତୀୟ କବିତା ପୁସ୍ତକ ପ୍ରକାଶିତ, ଏ ଦୀର୍ଘ ନୀରବତା କାହିଁକି ?

ଉତ୍ତର. କବିତା କ'ଣ କେବଳ ସାହିତ୍ୟ ବା ସାହିତ୍ୟ କହିଲେ କ'ଣ କେବଳ କବିତା ? କେତେକ ଅକୃତଜ୍ଞ କଥାକାର ଅଛନ୍ତି ଯେଉଁମାନେ ସମାଲୋଚନାକୁ ସାହିତ୍ୟ ବୋଲି ସ୍ୱୀକାର କରନ୍ତି ନାହିଁ । ଅଥଚ ନିଜ କୃତିର ଆଲୋଚନା ଯିଏ ସମାଲୋଚକଠାରୁ ଲେଖେଇ ନେବାକୁ ଖୁବ୍ ବ୍ୟାକୁଳ ହୁଅନ୍ତି । ତେଣୁ ୧୯୬୨ରୁ ଆଜି ପର୍ଯ୍ୟନ୍ତ ମୁଁ ସାହିତ୍ୟ ହିଁ କରିଚାଲିଛି । କେତେବେଳେ କବିତା, କେତେବେଳେ ଗଳ୍ପ, ସମାଲୋଚନା । ମଝିରେ ମଝିରେ କବିତା ମଧ୍ୟ ଲେଖି ହୋଇଯାଉଛି । ଯଦିଓ ତା'ର ସଂଖ୍ୟା ଖୁବ୍ ସ୍ୱଳ୍ପ ।

ପ୍ରଶ୍ନ: କେଉଁଥିରେ ଅଧିକ ଆତ୍ମ ସନ୍ତୋଷ ପାଇଛନ୍ତି ?

ଉତ୍ତର. ସମାଲୋଚନାରୁ ଆତ୍ମସନ୍ତୁଷ୍ଟି ପାଇଛି । କିନ୍ତୁ ନିଜକୁ ପ୍ରକାଶ କରିଛି କବିତାରେ ଓ ବେଳେବେଳେ ଗଳ୍ପରେ ।

ପ୍ରଶ୍ନ: ଆପଣଙ୍କ କେଉଁ ପୁସ୍ତକଟି ଆପଣଙ୍କୁ ବେଶି ଭଲ ଲାଗିଛି ଏବଂ ସମ୍ପୂର୍ଣ୍ଣ ଲାଗିଛି ?

ଉତ୍ତର. ନିଶ୍ଚିତ ଭାବେ 'ସବୁଜରୁ ସାଂପ୍ରତିକ' ଏ କଥା ସମସ୍ତେ ମଧ୍ୟ କହୁଛନ୍ତି।

ପ୍ରଶ୍ନ: ଜଣେ ସମାଲୋଚକ ଭାବେ ଆପଣଙ୍କୁ କେଉଁ ସ୍ରଷ୍ଟାଙ୍କ ସୃଜନୀ ଭଲ ଲାଗିଛି ?

ଉତ୍ତର. ଏମିତି ଏକ ପ୍ରଶ୍ନର ଉତ୍ତର ଦେବା ସହଜ ନୁହେଁ। ମୁଁ ଅନେକ ବହି ପଢ଼ିଛି। ଏବେ ବି ପଢୁଛି। ଅନେକ ବହି ମୋତେ ଖୁବ୍ ଭଲ ଲାଗିଛି। ଯେତେବେଳେ ଯେଉଁ ପୁସ୍ତକଟି ପଢ଼ିଛି ତା' ଭିତରେ ଛନ୍ଦି ହୋଇଛି। ଏଣୁ ନିର୍ଦ୍ଦିଷ୍ଟ ପୁସ୍ତକର ନାମ କହିବା କଷ୍ଟକର। ତରୁଣ କବି ସତ୍ୟପ୍ରିୟ ସହାଳିକଙ୍କଠାରୁ ପ୍ରତିଭା ରାୟଙ୍କ 'ମାଗ୍ନମାଟି' ପର୍ଯ୍ୟନ୍ତ ବହୁ ଲେଖା ଭିତରେ ମୁଁ ଛନ୍ଦି ହୋଇଯାଇଛି। ଆମ ସାହିତ୍ୟରେ ମହାନ ଔପନ୍ୟାସିକ ଗୋପୀନାଥ ମାହାନ୍ତି ମୋତେ ଅନେକ ସମୟ ପର୍ଯ୍ୟନ୍ତ ଆଚ୍ଛନ୍ନ କରି ରଖିଥିଲେ। ସମାଲୋଚନାକୁ ସାହିତ୍ୟ ନୁହେଁ ବୋଲି ପ୍ରଚାର କରୁଥିବା ଜଣେ ଔପନ୍ୟାସିକର ସବୁ ଉପନ୍ୟାସକୁ ମୁଁ ପଢ଼ିଛି। ଛାତ୍ର ଜୀବନରେ ଫକୀର ମୋହନ, କାଳିନ୍ଦୀଚରଣ ଓ କାହ୍ନୁ ଚରଣଙ୍କୁ ଆମେ ଗୁଡେଇ ତୁଡେଇ ପଢୁଥିଲୁ। ଏବେ ମେଗା ଉପନ୍ୟାସ ପଢ଼ିବା ପାଇଁ ସମୟର ଅଭାବ। ମହାବାତ୍ୟାକୁ ମୁଁ ଗାଁରେ ଥାଇ ଭୋଗିଥିଲି। ତେଣୁ ସମୟ ନ ଥିଲେ ମଧ୍ୟ ପ୍ରତିଭା ରାୟଙ୍କ ମାଗ୍ନମାଟିକୁ ପଢ଼ି ଶେଷକଲି। ଏବେ ଏ ବହିଟି ଉପରେ ଲେଖିବାକୁ ଆରମ୍ଭ କରିଛି।

ପ୍ରଶ୍ନ: 'ସବୁଜରୁ ସାମ୍ପ୍ରତିକ' ସମ୍ପର୍କରେ କ'ଣ କହିବେ ?

ଉତ୍ତର. ଏହି ପୁସ୍ତକର ଗବେଷଣା ମୋତେ ସାତବର୍ଷ ଲାଗିଲା। ପରବର୍ତ୍ତି ପିଢ଼ି ପାଇଁ ଏହା ଗୋଟିଏ ଡକ୍ୟୁମେଣ୍ଟ।

ପ୍ରଶ୍ନ: ଆଜିର ସାହିତ୍ୟ ସାଧାରଣ ମଣିଷ ନିକଟରେ ପହଞ୍ଚି ପାରୁନି ବୋଲି ଅଭିଯୋଗ ହୁଏ, ଆପଣ କ'ଣ କହିବେ ?

ଉତ୍ତର. ସାଧାରଣ ମଣିଷ ବିଷୟ ବାସନା, ସମ୍ପତ୍ତି ବାଡି, ନିଜର ବୈଷୟିକ ଉନ୍ନତି ପଛରେ ଏତେ ଉଦ୍‌ଭ୍ରାନ୍ତ ଭାବରେ ଧାଇଁଛି ଯେ, ସାହିତ୍ୟ ମୂଲ୍ୟର ଉପକରଣ କିଣିପାରନ୍ତି କିନ୍ତୁ ପୂଜା ଅବକାଶରେ ଶହେ ଟଙ୍କାର ପତ୍ରିକା ବି କିଣନ୍ତି ନାହିଁ। ସାହିତ୍ୟ କିନ୍ତୁ ସେହିମାନଙ୍କ ଜୀବନର ସମସ୍ୟାକୁ ପ୍ରକାଶ କରି ଚାଲିଛି। ଗଳ୍ପ, ଉପନ୍ୟାସରେ ଅଧିକ ଭାବରେ ଏବଂ କବିତାରେ ପରୋକ୍ଷ ଭାବରେ ସଚେତନ ମଧ୍ୟବିତ୍ତ ପରିବାରର ଲୋକ ସାହିତ୍ୟ ପ୍ରତି ବୀତସ୍ପୃହ। ଉଦାହରଣ ଅସଂଖ୍ୟ ରହିଛି। ଉପନ୍ୟାସ ଯେତେ ବି ଲେଖା ହେଉଛି ସବୁଥିରେ ସାଧାରଣ ମଣିଷର ସ୍ୱର ହିଁ ରହିଛି। କେତେଜଣ ସାଧାରଣ ମଣିଷ ପ୍ରତିଭା ରାୟଙ୍କ

'ମାଗ୍ନମାଟି' ପଢ଼ିଛନ୍ତି ? ପୁଣି ଆଜିର ପିଢ଼ି ନିଜ ମାତୃଭାଷାର ସାହିତ୍ୟ ପ୍ରତି ବିଶେଷ ଆକୃଷ୍ଟ ନୁହଁନ୍ତି ।

ପ୍ରଶ୍ନ: ଶିକାର, ରେବତୀ ଆଦି ଗଳ୍ପମାନଙ୍କର ଚରିତ୍ର ଆଜି ବି ପାଠକ ଉପରେ ପ୍ରଭାବ ପକାଇ ପାରୁଛନ୍ତି । କିନ୍ତୁ ଅଜିର ଗଳ୍ପ ଚରିତ୍ରରେ ପ୍ରଭାବ ପକାଇବା ଭଳି ଶକ୍ତି ନାହିଁ କାହିଁକି ?

ଉତ୍ତର. ଆଜିର ଗଳ୍ପ ଅତି ନିକୃଷ୍ଟ କଳାର ନିଦର୍ଶନ ଭାବେ ଆତ୍ମପ୍ରକାଶ ପାଉଛି । ନୂଆ ପିଢ଼ିର ଗାଳ୍ପିକମାନେ ଅତି ଚମତ୍କାର ଗଳ୍ପ ରଚନା କରୁଛନ୍ତି । ସେସବୁ ଗଳ୍ପ ଶିକାର ଓ ରେବତୀକୁ ଅତିକ୍ରମ କରିଗଲାଣି । ଆଜିର ଗଳ୍ପ ପୁଣି ଚରିତ୍ର ପ୍ରଧାନ । ଶିକାର ଓ ରେବତୀର କାହାଣୀ ଓ କାରୁଣ୍ୟ ଅଧିକ ଥିବାରୁ ସେ ରବି ପଣ୍ଡାଙ୍କ 'କେମିତି ବଦଳିଯାଏ ମଣିଷ' । ଗିରିଶ ସାହୁଙ୍କ 'ନୀଳ ମାଷ୍ଟ୍ରାଣୀ', ନିତ୍ୟାନନ୍ଦ ପଟ୍ଟନାୟକଙ୍କ 'ଉଦୟପୁରର ସନ୍ଥ', ଗୌରାଙ୍ଗ ଚରଣ ଦାସଙ୍କ 'ମଲ୍ଲିକାର ଚିଠି' ଆମକୁ କମ୍ ଆଲୋଡିତ କରେ ନାହିଁ । କିନ୍ତୁ ରେବତୀ ଓ ଶିକାର ଗଳ୍ପ ଦୁଇଟି ପାଠ୍ୟକ୍ରମରେ ରହିବାକୁ ଅଧିକ ପ୍ରଚାରିତ । ନୂଆ ପିଢ଼ିର ଏହି ଗାଳ୍ପିକମାନଙ୍କ ଗଳ୍ପକୁ ପାଠ୍ୟକ୍ରମରେ ରଖିବାକୁ ଆମ ରକ୍ଷଣଶୀଳ ଅଧ୍ୟାପକ ମାନେ ବୀତସ୍ପୃହ । ତେଣୁ ଅଜିର ଚରିତ୍ରପ୍ରଧାନ ଗଳ୍ପଗୁଡିକ ଖୁବ୍ ପ୍ରଭାବଶାଳୀ ହେଲେ ବି ପାଠ୍ୟ ଖସଡାର ପୃଷ୍ଟପୋଷକତା ଅଭାବରୁ ସେସବୁ ଲୋକଲୋଚନକୁ ଆସିପାରୁନାହିଁ ।

ପ୍ରଶ୍ନ: ପୂର୍ବର କବିତାକୁ ଜଣେ ସାଧାରଣ ମଣିଷ ମୌଖିକ ଭାବରେ ବୋଲି ପାରୁଥିଲା । ଆଜିର କବିତା ଗାୟନର ସାମର୍ଥ୍ୟ ହରାଇଛି, ଏ ସମ୍ପର୍କରେ କ'ଣ କହିବେ ?

ଉତ୍ତର. ପୂର୍ବର କବିତା ଗୋଟିଏ ଆଧାରକୁ ଭିତ୍ତିକରି ଲେଖାଯାଉଥିଲା । ଆଜିର କବିତା ନିରାଧାର, ଅଧିକ ବ୍ୟକ୍ତିଗତ, ବର୍ଣ୍ଣାତ୍ମକ ନୁହେଁ । ଅଧିକ ଆନୁସଙ୍ଗଭିତ୍ତିକ । ଆଗରେ କବିତା ପଦ ଯୋଡି ଲେଖା ହେଉଥିଲା । ଅଜିର କବିତା ସମ୍ପୂର୍ଣ୍ଣ ନିରାଭରଣ । ଅତିରିକ୍ତ ବ୍ୟକ୍ତିଗତ ବୁଦ୍ଧିବାଦୀ ଓ ତାତ୍ତ୍ୱିକ ହୋଇଥିବାରୁ ଆଜିର କବିତା ବୁଝିହେଉ ନାହିଁ । ରିକ୍ସାବାଲା ଓ ନାଉରିଆ ସେମାନେ କେତେ କବିତାକୁ ବୁଝୁଥିଲେ ? ରାମାୟଣ, ମହାଭାରତ, ଭାଗବତ ଏଗୁଡିକ କାହାଣୀଧର୍ମୀ ହୋଇଥିବାରୁ ନିରକ୍ଷର ଲୋକ ମଧ୍ୟ ଶୁଣି ଶୁଣି ଉପଭୋଗ କରୁଥିଲେ । ଅଜିର କବିତାରେ ଧର୍ମ ସମ୍ପୂର୍ଣ୍ଣ ବଦଳି ଯାଉଛି ।

କବିତାକୁ ଲୋକ ଭଲ ପାଉ ନ ଥିଲେ ଏତେ କବି ସୃଷ୍ଟି ହୁଅନ୍ତେ କିପରି ? ଗଦ୍ୟଠାରୁ ପଦ୍ୟକୁ ଅତୀତରେ ଭିନ୍ନ ଭାବରେ ଚିହ୍ନେଇ ଦିଆଯାଉଥିଲା। ଏବେ ଗଦ୍ୟ ମଧ୍ୟ କବିତାଶୈଳୀ। ଆଜିର କବିତା ପଦ୍ୟ ହୋଇ ନ ଥିବାରୁ ତାକୁ ପାଠକରି ମନେ ରଖିବା ସମ୍ଭବ ନୁହେଁ। କବିତା ବୋଧଗମ୍ୟ ନ ହେବାର ନାନାଦି କାରଣ ରହିଛି। ତାକୁ ବୁଝାଇ ବସିଲେ ଦୀର୍ଘ ପ୍ରବନ୍ଧଟିଏ ହୋଇଯିବ। କବିତା ପ୍ରକୃତରେ ଯେତେ ପରିମାଣରେ ତା' ମର୍ଯ୍ୟାଦା ହରାଇ ନାହିଁ ଅଧିକ ପରିମାଣରେ ତା' ବିରୁଦ୍ଧରେ ପ୍ରଚାର ଚାଲିଛି। ସାଧାରଣ ଲୋକର କଥା କବିତାରେ ଲେଖା ହେଉ ନାହିଁ ବୋଲି କିଏ କହିଲା ? ବାମପନ୍ଥୀ କବିମାନେ ତେବେ କାହା କଥା କବିତାରେ ଲେଖୁଛନ୍ତି। କବିତା ଏକ ଉଚ୍ଚକୋଟିର କାରୁକାର୍ଯ୍ୟ ହୋଇଥିବାରୁ ତା'ର ଶିଳ୍ପକୁ ଅବବୋଧ କରିବା ପାଇଁ ସାଧାରଣ ଲୋକର ମାନସିକ ଉଚ୍ଚତା ନାହିଁ।

ପ୍ରଶ୍ନ: କ'ଣ କଲେ ସାହିତ୍ୟ ସାଧାରଣ ଲୋକଙ୍କ ପାଖରେ ପହଞ୍ଚି ପାରିବ ?

ଉତ୍ତର. ସାଧାରଣ ଲୋକଙ୍କ ପାଖରେ କବିତା ନ ପହଞ୍ଚି ପାରିଲେ କ'ଣ ହେଲା, ଗଳ୍ପ ଉପନ୍ୟାସ ଏତେ ସୁନ୍ଦର ଭାବରେ ଲେଖାଯାଉଛି ଯେ ତାହା ତ ପହଞ୍ଚିପାରୁଛି। ସେସବୁ ସାହିତ୍ୟ ନୁହେଁ କି ? କବିତା ଖାଲି କେବଳ କ'ଣ ସାହିତ୍ୟ ? କବିତା ଅଯଥା ଅଧିକ ଗୁରୁତ୍ୱ ଦେଉଛି। ସେତିକି ଗୁରୁତ୍ୱ ଗଳ୍ପ ଓ ଉପନ୍ୟାସ ଉପରେ ଦେଉଥିଲେ ସାହିତ୍ୟର ବାଗ ବଦଳିଯାଆନ୍ତା।





# ଭାଷାର ଆତ୍ମାକୁ ଚିହ୍ନିଲେ ଶୁଦ୍ଧ ଅନୁବାଦ

## ଡଃ ଶଙ୍କରଲାଲ ପୁରୋହିତ:

ଓଡ଼ିଆ ସାହିତ୍ୟକୁ ହିନ୍ଦୀ ଭାଷାରେ ଅନୁବାଦ କରି ସର୍ବଭାରତୀୟ ସ୍ତରରେ ଏକ ବିଶାଳ ପାଠକ ଗୋଷ୍ଠୀ ନିକଟରେ ପହଞ୍ଚାଇ ପାରିଥିବା ବ୍ୟକ୍ତି ହେଉଛନ୍ତି ଡ଼ଃ ଶଙ୍କରଲାଲ୍ ପୁରୋହିତ। ମୌଳିକ ରଚନା ଯଥା କବିତା, ଆଲୋଚନା, ପ୍ରବନ୍ଧ, ଜୀବନୀ ଆଦି ଲେଖୁଥିଲେ ମଧ୍ୟ ସେ ଯେପରି କେବଳ ଅନୁବାଦ ଜଗତର ପ୍ରାଣ। ଅନୁବାଦ ସାହିତ୍ୟରେ ନିଜକୁ ଅଧିକ ସହଜ ମଣନ୍ତି ବୋଲି ଦାବି କରୁଥିବା ଏହି ଲେଖକ ତାଙ୍କର ସାରସ୍ୱତ ସାଧନା ପାଇଁ ପାଇଛନ୍ତି ଅନେକ ପୁରସ୍କାର ଓ ସମ୍ମାନ।

ପ୍ରଶ୍ନ: କେବେଠାରୁ ଅନୁବାଦର ଧାରା ?

ଉତ୍ତର. ଓଡ଼ିଆ ସାହିତ୍ୟର ପ୍ରଚାର ପ୍ରସାରରେ ଲାଳସା ହିଁ ମୋ ଭିତରେ ସାହିତ୍ୟ ପ୍ରତି ଆଗ୍ରହ ଜନ୍ମାଇଲା। ଓଡ଼ିଶା ବାହାରେ ଓଡିଆ ସାହିତ୍ୟର ଅଭାବକୁ ପୂରଣ କରିବା ପାଇଁ ମୁଁ ନିଷ୍ପତ୍ତି ନେଲି ଅନୁବାଦ କରିବାକୁ। ଅନେକ ଓଡ଼ିଆ ଗଳ୍ପର ଅନୁବାଦ ହିନ୍ଦୀ ପତ୍ରିକାଗୁଡିକୁ ପଠାଇ ଫେରିବା ପରେ ବି ମୁଁ ନିରାଶ ହୋଇ ନ ଥିଲି। ୧୯୭୦ ମସିହାରେ 'ରେବତୀ' ଗଳ୍ପର ଅନୁବାଦ ହିନ୍ଦୀ ପତ୍ରିକାରେ ପ୍ରକାଶିତ ପରେ ମୋ ପାଇଁ ବାଟ ଖୋଲିଲା। ତା'ପରେ ଦାନାପାଣିର ଅନୁବାଦ ପୁସ୍ତକ ପ୍ରକାଶନ ପରେ ପ୍ରକାଶକ, ପାଠକ, ଲେଖକଙ୍କ ମୋ ଉପରେ ଏକପ୍ରକାର ବିଶ୍ୱାସ ତଥା ଭରସା ଆସିଲା ଯେ, ମୁଁ ଭଲ ଅନୁବାଦ କରିପାରେ। ତା' ପରେ ଅନୁବାଦର ଧାରା ଅବ୍ୟାହତ ରହିଛି।

ପ୍ରଶ୍ନ: ସାହିତ୍ୟର କେଉଁ ବିଭାଗ ପ୍ରତି ର୍ଦୁବଳତା ?

ଉତ୍ତର. ସାହିତ୍ୟର ମୁଁ ଜଣେ ଛାତ୍ର ଓ ଅଧ୍ୟାପକ। ମୋର ଲକ୍ଷ୍ୟ ଓଡ଼ିଆ ସାହିତ୍ୟକୁ ବାହାର ରାଜ୍ୟରେ ପ୍ରଚାର ପ୍ରସାର କରିବା। ତେଣୁ ଅନୁବାଦ ଯଥେଷ୍ଟ ନୁହେଁ। ଏଣୁ ହରିହର, ଗୋପବନ୍ଧୁ, ମହତାବଙ୍କ ଜୀବନୀ ଲେଖିଲି। ବଭିନ୍ନ ପ୍ରବନ୍ଧ, ଆଲୋଚନା ଲେଖିଲି। କିନ୍ତୁ ଅନୁବାଦକୁ ପ୍ରାଧାନ୍ୟ ଦେଲି।

ପ୍ରଶ୍ନ: ମୌଳିକ ସାହିତ୍ୟ ନ କରି ଅନୁବାଦକୁ ବାଛିଲେ କାହିଁକି ?

ଉତ୍ତର. ମୁଁ ଆନ୍ଦୋଳନକାରୀ ନୁହେଁ। ମୁଁ ଜଣେ ସାଧାରଣ କର୍ମୀ। କେବେ କୌଣସି ଆନ୍ଦୋଳନରେ ଭାଗନେବାର ସାହସ କରିନି, କିନ୍ତୁ ଓଡ଼ିଶାର ପରିଚୟ ବିଶ୍ୱ ଦରବାରରେ ନ ହେଉ ପଛେ ଅନ୍ତତଃ ଭାରତର ଗୋଟିଏ ପରିଚୟ କରାଇବାର ଲାଳସା ହିଁ ଅନୁବାଦ ପ୍ରତି ମୋତେ ଅଧିକ ଯତ୍ନଶୀଳ କଲା।

ପ୍ରଶ୍ନ: ଅନୁବାଦ କଲାବେଳେ କିଛି ସମସ୍ୟା ଆସେନି ?

ଉତ୍ତର. ଅନୁବାଦ କଲାବେଳେ ପ୍ରଥମେ ଲାଗିଲା ସମସ୍ୟାର ସମୁଦ୍ରରେ ଅଛି। ତା'ପରେ ଲେଖକମାନେ ସ୍ନେହଶ୍ରଦ୍ଧାରେ ମୋତେ ବାଟ କଢ଼ାଇଲେ। ଅନୁବାଦ ସଂକ୍ରାନ୍ତ କୌଣସି ଧାରଣା, ଶିକ୍ଷଣ ବା ଟ୍ରେନିଂ ମୋର ନଥିଲା। କିଛି ପୁସ୍ତକ ମଧ୍ୟ ଓଡ଼ିଶାରେ ନ ଥିଲା। ଭଲ ଡିକ୍ସିନାରି ବି ସେ ସମୟରେ ନ ଥିଲା। ତେଣୁ ଅନ୍ଧାରରେ ହିଁ ଆସ୍ତେ ଆସ୍ତେ ଚାଲିବାକୁ ପଡ଼ିଲା।

ପ୍ରଶ୍ନ: ପ୍ରକାଶକଙ୍କ ଚାହିଦା ମୁତାବକ ଅନୁବାଦ କରନ୍ତି ନା ନିଜେ ପୁସ୍ତକ ଚୟନ କରନ୍ତି ?

ଉତ୍ତର. ଏଯାଏ କୌଣସି ପ୍ରକାଶକ ପୁସ୍ତକ ଚୟନ କରି ଅନୁବାଦକଙ୍କୁ ଦେଇନାହାଁନ୍ତି। ଆଜି ମୋ ଦ୍ୱାରା ୫୧ଟି ଓଡ଼ିଆ ପୁସ୍ତକ ହିନ୍ଦୀରେ ଅନୁବାଦ ହୋଇଛି। ତାହା କେବଳ ସମ୍ଭବ ହୋଇଛି ମୋର ତଥା ଲେଖକଙ୍କ ଆଗ୍ରହକୁ ନେଇ। ଆଉ କେତେକ କ୍ଷେତ୍ରରେ ଏପରି ବି ହୋଇଛି ଲେଖକ ଅନୁବାଦ କରାଇନେଇ ପ୍ରକାଶକଙ୍କୁ ଦିଅନ୍ତି।

ପ୍ରଶ୍ନ: ଆପଣଙ୍କର ଅନେକ ପ୍ରଭାବଶାଳୀ କବିତା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ, କିନ୍ତୁ ଏଯାଏ ସଙ୍କଳନ ରୂପ ନେଇନାହିଁ କାହିଁକି ?

ଉତ୍ତର. ସତ କହିବାକୁ ଗଲେ ଆଜିଯାଏ ମୁଁ ମୋର ମୌଳିକତାକୁ ଢ଼ାଙ୍କି କରି ରଖିଛି। ଓଡ଼ିଆ ସାହିତ୍ୟ, ସଂସ୍କୃତି, କଳାକୁ ହିଁ ମୌଳିକତା ବୋଲି ଭାବି ସେଥିରେ ଲାଗିଛି।

ପ୍ରଶ୍ନ: ମୌଳିକ ରଚନା ଏବଂ ଅନୁବାଦ କେଉଁଥିରେ ଅଧିକ ଆତ୍ମସନ୍ତୋଷ ପାଇଥାଆନ୍ତି ?

ଉତ୍ତର. ମୌଳିକ ଲେଖା ଯେତେବେଳେ ଆସେ ଲେଖିଦିଏ, କିନ୍ତୁ ନିବିଷ୍ଟ ହୋଇ ଲେଖିବା ଅନୁବାଦରେ ସମ୍ଭବ ହୁଏ। କବିତା, ଗଳ୍ପ ପାଇଁ ବିଶେଷ ପ୍ରସ୍ତୁତି ତ ନ ଥାଏ, ତାହା ଆପେ ଲେଖି ହୋଇଯାଏ। କିନ୍ତୁ ଅନୁବାଦ ପାଇଁ ସଚେଷ୍ଟ ହୋଇ ଲେଖିବାକୁ ପଡ଼ିବ। ୪୦ ବର୍ଷ ପରେ ଯେହେତୁ ଆଜି ମଧ୍ୟ ଅନୁବାଦର ଆବଶ୍ୟକତା ଉଣା ହୋଇନାହିଁ।

ପ୍ରଶ୍ନ: ବର୍ତ୍ତମାନ ଅନୁବାଦ ସାହିତ୍ୟର ସ୍ଥିତି କ'ଣ ?

ଉତ୍ତର. ବର୍ତ୍ତମାନ ଓଡ଼ିଆରୁ ହିନ୍ଦୀ ଓ ହିନ୍ଦୀରୁ ଓଡ଼ିଆ ଅନୁବାଦ ତ୍ୱରାନ୍ୱିତ ହେବାରେ ଲାଗିଛି। କିନ୍ତୁ ଏପରି ଲୋକଙ୍କର ଅଭାବ ନାହିଁ, ଯେଉଁମାନେ କିଛି ନା କିଛି ପୁରସ୍କାରକୁ ଆଖିଆଗରେ ରଖି ଅନୁବାଦ କାର୍ଯ୍ୟରେ ନିୟୋଜିତ ହୋଇଛନ୍ତି। ଏପରି ଓଡ଼ିଶାରେ ଅନେକ ଲୋକ ଅଛନ୍ତି ଯେଉଁମାନେ ଅନୁବାଦ କରି ପୁରସ୍କୃତ ହୋଇସାରିଲେଣି। କିନ୍ତୁ ସେମାନଙ୍କ ଦ୍ୱାରା ଓଡ଼ିଆ ସାହିତ୍ୟ ସଂସ୍କୃତିରେ ବିଶେଷ କିଛି ଲାଭ (ଲାଭର ଅର୍ଥ ଓଡ଼ିଆ ସାହିତ୍ୟ ସଂସ୍କୃତିର ହିନ୍ଦୀ ଜଗତରେ ପରିଚିତି) ହୋଇନି। ଦ୍ୱୀତିୟତଃ ଅନେକ ଅନୁବାଦକ ହିନ୍ଦୀକୁ

ଅନୁବାଦ କଲାବେଳେ ଭାଷାର ଆତ୍ମା ପ୍ରତି ଦୃଷ୍ଟି ଦେଇନାହାନ୍ତି। ତେଣୁ ସେହି ଅନୁବାଦ ହିନ୍ଦୀ ପାଠକମାନଙ୍କ ଦ୍ୱାରା ବେଶି ଗ୍ରହଣୀୟ ହୋଇପାରୁନାହିଁ। ତୃତୀୟତଃ ଆମ ରାଜ୍ୟରେ ଆଜି ମଧ୍ୟ ଅନୁବାଦ ଶିକ୍ଷଣ ବିଷୟରେ ପ୍ରଶ୍ନ ଉଠିଲେ ବୋର୍ଡ କାଉନ୍‌ସେଲିଂ, ୟୁନିଭରସିଟି ସବୁଠାରେ ଘୃଣାଭାବ ଦେଖାଯାଉଛି। ଓଡ଼ିଶାରେ ଏ ପର୍ଯ୍ୟନ୍ତ ଅନୁବାଦ ଉପରେ କୌଣସି ଡିଗ୍ରୀ, ଡିପ୍ଲୋମା ଅନୁଷ୍ଠାନ ହୋଇପାରିଲା ନାହିଁ। ଏଥିପାଇଁ ଆଧୁନିକ ଯୁଗକୁ ଖାପ ଖାଇଲା ଶୈଳୀରେ ଓଡ଼ିଆ ସାହିତ୍ୟର ଅନୁବାଦ ହିନ୍ଦୀରେ ସମ୍ଭବ ହୋଇପାରୁ ନାହିଁ। ସ୍ୱଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ଅନୁବାଦ ହିନ୍ଦୀରେ ସମ୍ଭବ ହୋଇପାରୁ ନାହିଁ। ସ୍ୱାଧୀନତା ପରବର୍ତ୍ତି ସମୟରେ ଯେପରି ହିନ୍ଦୀ ପ୍ରଶିକ୍ଷଣ ଅଭାବ ଥିଲା ଆଜି ଏକବିଂଶ ଶତାବ୍ଦୀରେ ସେହିପରି ଅନୁବାଦ ସାହିତ୍ୟର ଅଭାବ ଅନୁଭବ ହେଉଛି।

ପ୍ରଶ୍ନ: ତେବେ ଏହି ଅଭାବ କ'ଣ କଲେ ଦୂର ହେବ ବୋଲି ଆପଣ ଭାବୁଛନ୍ତି ?

ଉତ୍ତର. ଏଥିପାଇଁ ବିଶ୍ୱବିଦ୍ୟାଳୟଗୁଡ଼ିକରେ ଅନୁବାଦର ଡିପ୍ଲୋମା କରାଯାଇପାରେ। ଦ୍ୱୀତିୟତଃ କେନ୍ଦ୍ରୀୟ ହିନ୍ଦୀ ସଂସ୍ଥାରେ ଅନୁବାଦ ପାଠ୍ୟକ୍ରମ ଆରମ୍ଭ କରାଯାଇପାରେ। ତୃତୀୟତଃ ଓଡ଼ିଆ ଭାଷା ସଂସ୍ଥାନ ମାଧ୍ୟମରେ ଓଡ଼ିଆ ହିନ୍ଦୀ ସମନ୍ୱିତ ଅନେକ କାର୍ଯ୍ୟକ୍ରମ କରାଯାଇପାରେ।

ପ୍ରଶ୍ନ: ଆପଣଙ୍କ ଅବଶୋଷ ?

ଉତ୍ତର. ଜୀବନରେ ସବୁ ଇଚ୍ଛା କାହାରି ପରିପୂର୍ଣ୍ଣ ହୁଏନି। ମୋ ମନରେ ଏତିକି ଆଶ୍ୱାସନା ଯେ, ମୋର ଅଧିକାଂଶ ଇଚ୍ଛା ପୂରାପୂରି ହୋଇଛି। ତେବେ ବି ଓଡିଆରେ କେତେକ ଗୁରୁତ୍ୱପୂର୍ଣ୍ଣ ବହି ଯଥା 'ନାକଟା ଚିତ୍ରକର' (ଫତୁରାନନ୍ଦ), 'ରଥ ସପ୍ତକ' (ଚନ୍ଦ୍ରଶେଖର ରଥ), 'ଓଡ଼ିଆର ଶ୍ରେଷ୍ଠ କାହାଣୀମାଳା' ତଥା 'ଓଡ଼ିଆ ସାହିତ୍ୟର ଇତିହାସ' ଏଯାଏଁ ହିନ୍ଦୀ ଅନୁବାଦ ହୋଇପାରିନି। ଏ ସବୁ ପାଇଁ ବିଭିନ୍ନ ସଂସ୍ଥା ସହିତ ଯୋଗାଯୋଗ ଚାଲିଛି।





# ଏଠି ଅନୁବାଦକ ଅଲୋଡ଼ା

## ଯୁଗଳ କିଶୋର ଦତ୍ତ:

**ଯୁ**ଗଳ କିଶୋର ଦତ୍ତ। ରାଜ୍ୟର ଅନ୍ୟତମ ଅନୁବାଦ ସାହିତ୍ୟିକ ଭାବେ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି ସେ। ମୌଳିକ ସାହିତ୍ୟ ଓ ଅନୁବାଦ ସାହିତ୍ୟ ପାଇଁ ସେ ସରକାରୀ ଓ ବେସରକାରୀ ସ୍ତରରେ ପାଇଛନ୍ତି ଅନେକ ପୁରସ୍କାର। ସ୍ମରଣୀୟ ବିଷୟ ଯେ ସେ ଗୋଟିଏ ବର୍ଷରେ କେନ୍ଦ୍ର ଏବଂ ରାଜ୍ୟ (ଓଡିଶା) ସାହିତ୍ୟ ଏକାଡେମୀ ପୁରସ୍କାର ପାଇଛନ୍ତି। ବଙ୍ଗଳା ସାହିତ୍ୟିକ ବିମଳ ମିତ୍ରଙ୍କ ପୁସ୍ତକ 'ଆସାମୀରାଜି'ର ଅନୁବାଦ ପାଇଁ ତାଙ୍କୁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ମିଳିଥିବା ବେଳେ ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର ବିମଳ ମିତ୍ରଙ୍କର 'ଜନଗଣମନ' ପାଇଁ ମିଳିଛି। ୧୯୨୮ ମସିହାରେ ଅବିଭକ୍ତ କଟକ ଜିଲ୍ଲା (ବର୍ତ୍ତମାନର ଯାଜପୁର ଜିଲ୍ଲା)ର ମହେଶ୍ୱରପୁରଠାରେ ଜନ୍ମଗ୍ରହଣ କରିଥିବା ଶ୍ରୀ ଦତ୍ତ ୧୯୪୮ରୁ ଲେଖାଲେଖି ଆରମ୍ଭ କରିଥିଲେ। ୧୯୭୦ ପରଠାରୁ ସେ ଅନୁବାଦ ସାହିତ୍ୟ ପ୍ରତି ମନନିବେଶ କରିଥିଲେ।

ପ୍ରଶ୍ନ. ଅନୁବାଦ ସାହିତ୍ୟ ବିଭିନ୍ନ ଭାଷାର ସୃଷ୍ଟି ସହ ପାଠକଙ୍କୁ ପରିଚିତ କରାଇଥାଏ। ଏଥିପାଇଁ ଅନୁବାଦ ସାହିତ୍ୟର ସ୍ୱତନ୍ତ୍ର ସ୍ଥାନ ରହିଛି। ତେବେ ଓଡ଼ିଶାରେ ଅନୁବାଦ ସାହିତ୍ୟ ସେତେ ଉଚ୍ଚକୋଟିର ହୋଇପାରୁନଥିବା ଅଭିଯୋଗ ହେଉଛି। ଏ ସମ୍ପର୍କରେ ଆପଣଙ୍କ ମତ କ'ଣ ?

ଉତ୍ତର. ବର୍ତ୍ତମାନ ଆମ ରାଜ୍ୟରେ ଅନେକ ଲେଖକ ଅନୁବାଦ ସାହିତ୍ୟ ସୃଷ୍ଟି ପାଇଁ ମନବଳାଇଲେଣି। କିନ୍ତୁ ଦୁଃଖର ବିଷୟ ହେଉଛି ଅନୁବାଦର କଳାକୌଶଳ ଅନେକେ ଜାଣୁନାହାନ୍ତି। କିଛି ଲୋକ ଅଛନ୍ତି ମୂଳ ଲେଖାର ଆକ୍ଷରିକ ଅନୁବାଦ କରିଦେଉଛନ୍ତି। ଫଳରେ ତା'ର ଭାବାର୍ଥ ବଦଳିଯାଉଛି। ଏଠାରେ ସେମାନେ ଜାଣିବା ଦରକାର ଯେ, ଅନୁସୃଜନ ଓ ଅନୁବାଦ ଏ ଦୁଇଟି ଭିତରେ ଫରକ ଅଛି। ଯେଉଁ ଭାଷା ସାହିତ୍ୟରୁ ଅନୁବାଦ କରାଯାଉଛି ଅନ୍ତତଃ ପକ୍ଷେ ଅନୁବାଦକ ସେହି ଭାଷାର ଆତ୍ମାକୁ ଜାଣିଥିବା ଦରକାର। ଓଡ଼ିଶାରେ ଅନ୍ୟ ଭାଷାରୁ ଓଡିଆ ଭାଷାକୁ ହେଉଥିବା ଅନୁବାଦ ଏବଂ ଅନୁବାଦକଙ୍କ ସମ୍ପର୍କରେ କୌଣସି ଆଲୋଚନା ହେଉନାହିଁ। ଯେଉଁ ଯୁବପିଢ଼ି ଅନୁବାଦ କ୍ଷେତ୍ରରେ ହାତ ଦେଇଛନ୍ତି ସେମାନେ ପ୍ରଥମେ ମୂଳ ଭାଷାର ଆତ୍ମାକୁ ଚିହ୍ନନ୍ତୁ। ଯାହା ଫଳରେ ଅନୁବାଦର ସାବଲୀଳତା ରହିବ। ଅନୁବାଦର ସ୍ୱତନ୍ତ୍ର ପ୍ରକ୍ରିୟା, ସ୍ୱତନ୍ତ୍ର ଶୈଳୀ ସେମାନେ ଜାଣିବା ଉଚିତ୍।

ପ୍ରଶ୍ନ. ଅନୁବାଦ ସାହିତ୍ୟ କ୍ଷେତ୍ରରେ ଆପଣ ଅନେକ ବାଟ ଅଗ୍ରସର ହେଲେଣି। ତେବେ ଅନୁବାଦ ସାହିତ୍ୟ ପାଇଁ ଆଗ୍ରହୀ ହେଲେ କିପରି ?

ଉତ୍ତର. ୧୯୪୭ ମସିହାରେ ଲେଖିବା ଆରମ୍ଭ କଲି। ଏବଂ ୧୯୪୮ ମସିହାଠାରୁ ପତ୍ରପତ୍ରିକାମାନଙ୍କରେ ଲେଖାପ୍ରକାଶ ପାଇଥିଲା। ପ୍ରଥମେ କବିତା ଏବଂ ପରେ ଗଳ୍ପ ଲେଖିଲି। ସେ ସମୟରେ ମୋର ୧୯୫୦ ଏବଂ ୧୯୫୧ ମସିହାରେ ୨ଟି କବିତା ସଂକଳନ ଓ ପରେ ୬ଟି ମୌଳିକ ଗଳ୍ପ ସଂକଳନ ପ୍ରକାଶିତ ହୋଇଥିଲା। ଏହାପରେ କେବଳ ଅନୁବାଦରେ ମନୋନିବେଶ କଲି। ଆଜିକୁ ୪୩ବର୍ଷ ହେବ ମୁଁ ଅନୁବାଦ କରୁଛି। ୧୨୫ ଖଣ୍ଡ ଅନୁବାଦ ବହି ପ୍ରକାଶିତ। ଅନୁବାଦରେ ହାତ ଦେବା ପରଠାରୁ ଆଉ ମୌଳିକ ଗଳ୍ପ ଲେଖି ପାରୁନାହିଁ। ସେଥିପାଇଁ ଖୁବ୍ ଦୁଃଖ ଲାଗେ। ବେଳେ ବେଳେ କାନ୍ଦ ବି ଲାଗେ।

ପ୍ରଶ୍ନ. ଆପଣ ମୁଖ୍ୟତଃ ବଙ୍ଗଳା ଭାଷାରୁ ଓଡ଼ିଆକୁ ଅନୁବାଦ କରୁଛନ୍ତି। ଉଭୟ ଭାଷାରେ ଆପଣଙ୍କର ଦକ୍ଷତା ରହିଛି। ତେବେ ଖୁବ୍ କମ୍ ଓଡ଼ିଆ ବହି

ଆପଣ ବଙ୍ଗଳାରେ ଅନୁବାଦ କରିଛନ୍ତି। ଆପଣ ଚାହିଁଲେ ଅଧିକ ଓଡ଼ିଆ ବହି ବଙ୍ଗଳାରେ ଅନୁବାଦ କରିପାରନ୍ତେ କିନ୍ତୁ କରୁ ନାହାନ୍ତି କାହିଁକି ?

ଉତ୍ତର. ଓଡ଼ିଆରୁ ବଙ୍ଗଳାକୁ ଅନୁବାଦ ମୁଁ ଅଳ୍ପ କରିଛି। କାରଣ କଲିକତାର ପ୍ରକାଶକମାନେ ଓଡ଼ିଆରୁ ବଙ୍ଗଳାକୁ ଅନୁବାଦ ହୋଇଥିବା ବହି ଛପାଇବା ପାଇଁ ରାଜି ନୁହନ୍ତି। ଅବଶ୍ୟ ଓଡ଼ିଆ ସାହିତ୍ୟରେ ଅନେକ ଉନ୍ନତ ସାହିତ୍ୟ କୃତି ରହିଛି ଯାହାକୁ କି ଅନୁବାଦ କରିହେବ। ଏବଂ ହେବା ଉଚିତ୍। ତେବେ ଓଡିଶାରେ ବଙ୍ଗଳାରେ ଅନୁବାଦ କରିବା ପାଇଁ ଅନୁବାଦକର ଅଭାବ ଅଛି। ତେବେ ସ୍ୱତଃପ୍ରବୃତ୍ତ ହୋଇ ଅନୁବାଦ କରିବା ଦରକାର। ଗୋଟିଏ ସାହିତ୍ୟକୁ ପଢ଼ିଲା ପରେ ମନ ଭିତରେ ଆନନ୍ଦ ଆସିବା ଦରକାର। ଆଉ ସେହି ଆନନ୍ଦରେ ହିଁ ଅନୁବାଦ କଲେ ତାହା ସଫଳ ହୁଏ।

ପ୍ରଶ୍ନ. ଓଡ଼ିଶାରେ ଅନୁବାଦ ସାହିତ୍ୟର ଚାହିଦା କେତେ ବୋଲି ଆପଣ ଭାବୁଛନ୍ତି ?

ଉତ୍ତର. ଓଡ଼ିଶାରେ ଅନୁବାଦ ସାହିତ୍ୟର ଚାହିଦା ରହିଛି। ନହେଲେ ପ୍ରକାଶକମାନେ ଏତେ ସଂଖ୍ୟାରେ ଅନୁବାଦ ବହି ଛାପନ୍ତେ ନାହିଁ। କିନ୍ତୁ ଓଡ଼ିଶାରେ ଅନୁବାଦକଙ୍କ ପ୍ରତି ସମ୍ମାନ ନାହିଁ। ସାହିତ୍ୟ ଏକାଡେମୀର ମଧ୍ୟ ଏ ଦିଗରେ ପ୍ରଚେଷ୍ଟା ନାହିଁ। ଏପରିକି ଓଡ଼ିଶା ସାହିତ୍ୟ ଏକାଡେମୀ ଏ ପର୍ଯ୍ୟନ୍ତ ଗୋଟିଏ ବି ଅନୁବାଦ କର୍ମଶାଳା କରି ନାହିଁ। ଓଡ଼ିଶାରେ ପ୍ରାୟ ପ୍ରତ୍ୟେକ ପତ୍ରିକା ଅନୁବାଦ ଛାପନ୍ତି କିନ୍ତୁ ଅନୁବାଦକଙ୍କୁ ସମ୍ମାନ ଦେଇ ନାହାନ୍ତି। ଏହା ବଡ଼ ଅଶୋଭନୀୟ ବ୍ୟାପାର। ଏଥିପ୍ରତି ସଚେତନ ହେବା ଉଚିତ।

ପ୍ରଶ୍ନ. ସାହିତ୍ୟିକ ଜୀବନରେ କିଛି ସ୍ମୃତି ?

ଉତ୍ତର. ମୋର ଥାର୍ଡ୍ ଇୟର ବେଳକୁ ମନୋଜ ଦାସ ୧୦ମ ଶ୍ରେଣୀର ଛାତ୍ର। ସେତେବେଳେ ମନୋଜ ଦାସଙ୍କ ସହିତ ମିଶି ଦିଗନ୍ତ ପତ୍ରିକା ବାହାର କରିଥିଲୁ। ଆମ ସହ ଆଉ ଚାରିଜଣ ମଧ୍ୟ ଥିଲେ। ୧୯୫୦ରେ ବାଲେଶ୍ୱରରୁ ଏହି ପତ୍ରିକା ବାହାରୁଥିଲା। ପରେ ସଚ୍ଚି ରାଉତରାୟ କଟକରେ ସେହି ପତ୍ରିକା ବାହାର କରିବା ଦାୟିତ୍ୱ ନେଲେ। ସେହି ଥାର୍ଡ ଇୟର ବେଳେ ମୋର ଦୁଇଟି ଗୀତିକାବ୍ୟ ସଂକଳନ 'ମାନସୀ' ଓ 'ଶତାବ୍ଦୀର ପ୍ରେମ' ପ୍ରକାଶ ପାଇଥିଲା।

ପ୍ରଶ୍ନ. କେଉଁ ଓଡ଼ିଆ ଲେଖକଙ୍କ ଲେଖା ଭଲ ଲାଗେ ଓ କାହିଁକି ?

ଉ. କବି ଭାବରେ ମାୟାଧର ମାନସିଂ, ବିନୋଦ ନାୟକ, ରାଧାମୋହନ ଗଡ଼ନାୟକଙ୍କ କବିତା ଭଲ ଲାଗେ। କାରଣ ଏମାନଙ୍କ କବିତା ଛନ୍ଦବଦ୍ଧ।

ସେହି ଛନ୍ଦ ହିଁ ପାଠକଙ୍କୁ ବାନ୍ଧିରଖେ, କିନ୍ତୁ ଆଜିକାଲି ଏହାର ଅଭାବ ଦେଖାଯାଉଛି। ଏହି କବିମାନଙ୍କର ଛନ୍ଦବଦ୍ଧ ଯୋଗୁଁ ହିଁ ଏମାନଙ୍କ କବିତା ମୋତେ ଖୁବ୍ ଭଲ ଲାଗେ। ଗଳ୍ପ ଉପନ୍ୟାସରେ ବହୁତ ଲେଖକ/ଲେଖିକା ମୋର ପ୍ରିୟ ପ୍ରତ୍ୟେକଙ୍କର ନାମ ଲେଖିବାରେ ଅସୁବିଧା ଅନୁଭବ କରୁଛି ।

ପ୍ରଶ୍ନ. ଯୁବପିଢ଼ି ପାଇଁ ବାର୍ତ୍ତା ?

ଉ. ଯୁବପିଢ଼ି ବହୁତ ପଢ଼ନ୍ତୁ, ଅନୁବାଦ କରନ୍ତୁ ଅନ୍ୟ ସାହିତ୍ୟ ଏବଂ ନିଜ ସାହିତ୍ୟକୁ।





# ସବୁ ସାହିତ୍ୟିକ ସମାଜ ପରିବର୍ତ୍ତନର ମାଧ୍ୟମ ହୋଇପାରନ୍ତି ନାହିଁ

## ଚିତ୍ତରଞ୍ଜନ ଦାସ:

ଚିନ୍ତାନାୟକ ଚିତ୍ତରଞ୍ଜନ ଦାସ। ଆଜୀବନ ଓଡ଼ିଆ ସାହିତ୍ୟର ସେବା କରିଆସୁଥିବା ଏହି ବ୍ୟକ୍ତି ସାରସ୍ୱତ ପରିବେଶକୁ ଦେଖନ୍ତି ନିଆରା ଢ଼ଙ୍ଗରେ। ପୁରସ୍କାର, ସମ୍ମାନ ବିମୁଖ ଏହି ସ୍ରଷ୍ଟାଙ୍କ ସହ ଆଳାପର କିୟଦଂଶ।

ପ୍ରଶ୍ନ: ଆପଣଙ୍କ ଲେଖାରେ ମାନବିକ ମୂଲ୍ୟବୋଧର ମର୍ଯ୍ୟାଦାକୁ ସର୍ବାଧିକ ଗୁରୁତ୍ୱ ଦିଆଯାଉଛି। ଫଳରେ ସାହିତ୍ୟିକ ସୌନ୍ଦର୍ଯ୍ୟବୋଧ ପ୍ରତି ବେଳେବେଳେ ଆପଣ ଉଦାସୀନ ଏହାର କାରଣ ?

ଉତ୍ତର. ସାହିତ୍ୟିକ ସୌନ୍ଦର୍ଯ୍ୟବୋଧ କ'ଣ ମାନବିକ ମୂଲ୍ୟବୋଧ ବାହାରେ ? ଏକାବେଳେ ଭିନ୍ନ ବସ୍ତୁଟିଏ କି ? ଜଣେ ମନୁଷ୍ୟ ହିଁ ତ ସକଳ ଅବକାଶରେ ସୌନ୍ଦର୍ଯ୍ୟ ଖୋଜେ ଏବଂ ଆପଣାର ଅନ୍ୱେଷଣ ଅର୍ଥାତ ଉପଲବ୍ଧି ଅନୁସାରେ ସୌନ୍ଦର୍ଯ୍ୟର ଅନୁଭବ କରିଥାଏ। ଏପରି କୌଣସି କବି, ଲେଖକ ଓ ଏପରିକି ସୃଜନଧର୍ମୀ ମଣିଷ ପୃଥିବୀଯାକର କେଉଁଠି ପ୍ରକୃତରେ ରହିଥାଆନ୍ତି। ଯେଉଁମାନେ ମାନବବୋଧ ଏବଂ ସୌନ୍ଦର୍ଯ୍ୟବୋଧ ମଧ୍ୟରେ ସଚେତନ ଆଉ କିଛିର ବିଭ୍ରାନ୍ତିରେ ପଡିଯାଇ ଗୋଟିକୁ ଆଉ ଗୋଟିକରୁ ଅଲଗା ବୋଲି ଲେଖନ୍ତି, ଅଲଗା ବୋଲି ଘ୍ରାଣ କରନ୍ତି ଓ ଅଲଗା ଅଲଗା କରି ବଞ୍ଚନ୍ତି ?

ପ୍ରଶ୍ନ: ସାହିତ୍ୟରେ ସାମାଜିକ ଅଙ୍ଗିକାରର ପ୍ରାସଙ୍ଗିକତା କ'ଣ ?

ଉତ୍ତର. ଅଙ୍ଗୀକାର ନାମରେ କେତେକ ଲେଖକ ନାନା ବାଡ ବସାଇବାରେ ଯେଉଁଠି ଖୁବ୍ ବ୍ୟସ୍ତ ହୋଇ ରହିଥାଆନ୍ତି, ପ୍ରକୃତରେ ନିଘାଟିଏ ଦେଇ ଦେଖିଲେ ଖୁବ୍ ପ୍ରତ୍ୟୟ ହୋଇଥାଏ ଯେ ସେମାନଙ୍କ ଜୀବନ ନକ୍ସା ଭିତରେ ଅଙ୍ଗୀକାର ବୋଲି ଯେପରି କିଛି ନଥାଏ, ହୁଏତ ଦୁଃସହ ପରିମାଣର ଏକ ଅହଂ ରହିଥାଏ, ସଫଳତା ଲାଭର ଗୋଟିଏ ନିଶା ରହିଥାଏ। ଯାବତୀୟ ସୁସ୍ଥ ଅଙ୍ଗୀକାରବଦ୍ଧତା ଆମ ସମସ୍ତଙ୍କୁ ଅଧିକରୁ ଅଧିକ ଉନ୍ମୋଚିତ କରି ଆଣିବାରେ ସହାୟତା ହିଁ କରନ୍ତି। ତେଣୁ ଆଗ ଗୋଟିଏ ବାଦକୁ ଜାବୁଡି ଧରି ଯେଉଁମାନେ ସାହିତ୍ୟର କର୍ଷଣ କରନ୍ତି, ସେମାନେ ନ୍ୟାୟତଃ ବାଦୀ ନୁହନ୍ତି, ବିବାଦୀ ହୋଇଥାନ୍ତି ଏବଂ ସେହି ତଥାକଥିତ ବାଦଗୁଡିକ ମାଧ୍ୟମରେ ଯେଉଁମାନେ ସାହିତ୍ୟଚର୍ଚ୍ଚାର ବାଚନିକା କରନ୍ତି, ମୁଁ ସେମାନଙ୍କର ଅସଲ ମାପକାଠିଗୁଡ଼ିକ ପ୍ରତି ସବୁବେଳେ ଭାରି ସନ୍ଦିହାନ ହୋଇ ରହିଥାଏ।

ପ୍ରଶ୍ନ: ସାହିତ୍ୟ ମାଧ୍ୟମରେ ସମାଜର ପରବର୍ତ୍ତନ ସମ୍ଭବ କି ?

ଉତ୍ତର. ସମାଜର ପରିବର୍ତ୍ତନ ନିରନ୍ତର ହେବାରେ ଲାଗିଛି। ଅଧିକ ଚତୁରମାନେ ସମାଜରେ ପ୍ରକ୍ରିୟାରେ ଯେତେ ଅନ୍ତରାୟ ସୃଷ୍ଟି କରୁଥିଲେ ମଧ ପରିବର୍ତ୍ତନ ଅବିଚ୍ଛିନ୍ନ ରହିଛି। ଯେଉଁ ତଥାକଥିତ ବୁଦ୍ଧିଜୀବୀମାନେ ନିଜକୁ ଅଧିକ ଚତୁର ବୋଲି ଧରି ନେଇଛନ୍ତି। ସେମାନେ ସେହି ପରିବର୍ତ୍ତନଗୁଡ଼ିକୁ ବଙ୍କେଇ ବଙ୍କେଇ

ଦେଉଛନ୍ତି ସିନା, ତଥାପି ପରିବର୍ତ୍ତନ ଚାଲିଛି। ସାହିତ୍ୟ ଏବଂ ଅଧିକ ନିର୍ଦ୍ଦିଷ୍ଟ ଭାବରେ କହିଲେ ଯେଉଁ ସାହିତ୍ୟିକ ସେଥିରେ ସହଯୋଗ କରୁଛି, ସାହିତ୍ୟ ମାଧ୍ୟମରେ ସମାଜର ପରିବର୍ତ୍ତନ କରିବ। ଅର୍ଥାତ, ସବୁ ସାହିତ୍ୟ ତଥା ସାହିତ୍ୟକାର କଦାପି ସମାଜ ପରିବର୍ତ୍ତନର ମାଧ୍ୟମ ହୋଇପାରନ୍ତି ନାହିଁ।

ପ୍ରଶ୍ନ: କ'ଣ କଲେ ଓଡ଼ିଆ ସାହିତ୍ୟର ଅଧିକ ପ୍ରଚାର ପ୍ରସାର ହୋଇପାରିବ?

ଉତ୍ତର. ଓଡ଼ିଶାରେ ଅଧେ ଲୋକ ନିରକ୍ଷର ହୋଇ ରହିଥିବା ହେତୁ ସାହିତ୍ୟ ସହିତ ସେମାନଙ୍କର କୌଣସି ସମ୍ପୃକ୍ତି ନାହିଁ। ଦେଶରେ ଶିଷ୍ଟ ତଥା ଶାସନାଧୀଶମାନେ ଟିକିଏ ଅଧିକ ଭଦ୍ର ହୋଇଥିଲେ ସେମାନେ ମଧ୍ୟ ଆମ ସାହିତ୍ୟରେ ଭାଗ ନେଇପାରୁଥାନ୍ତେ। ତେଣୁ ଯାବତୀୟ ବ୍ୟାବହାରିକ ଅର୍ଥରେ ସେମାନଙ୍କୁ ମଧ୍ୟ ସେମାନଙ୍କର ଅଗତ୍ୟା ନିର୍ବାସନରୁ ମୁକ୍ତି ଦିଆଯାଉ। ଓଡ଼ିଆ ଲେଖକମାନେ ସାହିତ୍ୟର ନନ୍ଦନବନରେ ପାରିଧି କଲାବେଳେ ସେହି ବଞ୍ଚିତମାନଙ୍କୁ ମଧ୍ୟ ସକଳ ଅର୍ଥରେ ସାମିଲ କରି ଦେଖିପାରନ୍ତେ ନାହିଁ? ମାତ୍ର ଏଥିଲାଗି ତ ଏକାଧିକ ବ୍ୟଞ୍ଜନାରେ ନୂଆ ଉପବୀତମାନ ଧାରଣ କରିବାକୁ ହିଁ ପଡନ୍ତା। ତେଣୁ, ଅନ୍ତତଃ ସେତିକି ମାୟାରୁ ତୁଟାଇ ପୁରା ଓଡ଼ିଶାଟାକୁ ଛୁଇଁ ପାରିଲେ ହେଲା?

ପ୍ରଶ୍ନ: ଆଜିର ତରୁଣବର୍ଗ ସାହିତ୍ୟ ଓ କଳାକୁ ଚିରାଚରିତଠାରୁ ଭିନ୍ନ ଭାବରେ ନେଉଥିବା ଦେଖିବାକୁ ମିଳୁଛି?

ଉତ୍ତର. ଆଜିର ତରୁଣବର୍ଗ ସାହିତ୍ୟ ଓ କଳାକୁ ନିଶ୍ଚିନ୍ତଭାବେ ଭିନ୍ନ ଦୃଷ୍ଟିଭଙ୍ଗୀ ଦେଉଛନ୍ତି। ଏହା ଗ୍ରହଣୀୟ ମଧ୍ୟ। କଳା ଓ ସାହିତ୍ୟ କହିଲେ ଆମେ ବୃଦ୍ଧମାନେ ଯେତିକି ଯାଏ ବୁଝୁ, ସେମାନେ ତାହାରି ପ୍ରତି ବିମୁଖ। ନାନା ଭାବପ୍ରବଣତାର ଭେଳିକି ଖେଳାଇ ଦେଇ ଯଦି ଅନ୍ତରରେ ନିହାତି ବୃଦ୍ଧମାନେ ଏତିକି ଭିତରେ ସଦା ସୀମିତ ହୋଇରହିବେ, ତେବେ ସେମାନଙ୍କ ବିଷୟରେ ସତର୍କ ହୋଇ ରହିଥିଲେ ସିନା ତରୁଣମାନେ ଆଗକୁ କିଛି ବି ରାସ୍ତା ଦେଖିପାରିବେ। ତେଣୁ ବୃଦ୍ଧମାନେ ତରୁଣମାନଙ୍କ ଉପରେ ଲଦି ହୋଇ ନ ପଡ଼ନ୍ତୁ। ସାନ୍ତନୁମାନେ ଖାଲି ବୟସରେ ବାଡ଼ିଟାକୁ ଦେଖାଇ ଭୀଷ୍ମମାନଙ୍କୁ ଜୀବନ ତମାମ ଅପରିଣିତ ହୋଇ ରହିବାକୁ ବାଧ୍ୟ ନ କରନ୍ତୁ।

ପ୍ରଶ୍ନ: ଆପଣଙ୍କଠାରେ ସାହିତ୍ୟ ଏବଂ ଶିକ୍ଷା ଉଭୟର ଗଭୀର ଅନୁଭୂତି ରହିଛି। ସାମ୍ପ୍ରତିକ ଶିକ୍ଷା ସମ୍ପର୍କରେ ଆପଣଙ୍କର ମତ କ'ଣ?

ଉତ୍ତର.	ଯାବତୀୟ ଶିକ୍ଷା ତ ପ୍ରକୃତରେ ଶିକ୍ଷକମାନଙ୍କ ହାତରେ ନ୍ୟସ୍ତ ହୋଇ ରହନ୍ତା। ଅମଲା ହାକିମମାନଙ୍କ ହାତରେ ମୋଟେ ନ ଥାନ୍ତା। ବିଚରା ଆମ ଶିକ୍ଷାଦାତାମାନଙ୍କର କୁଳଟା ମଧ ସେହି ଅମଲା ହାକିମମାନଙ୍କର ମୁରବିପଣଗୁଡ଼ାକୁ ମାନି ମାନି ଗୋଲାମ ହୋଇସାରିଲେଣି। ଦରମା ବଢ଼ୁ ବୋଲି ଗୋଳ କରିବା ବ୍ୟତିତ ଆଉ କିଛିକୁ ବି କାଢ଼ ପାଉନାହିଁ।

ପ୍ରଶ୍ନ:	ଆପଣ ସାରା ଜୀବନ ଗ୍ରନ୍ଥ ଅଧ୍ୟୟନ ଓ ଗ୍ରନ୍ଥ ରଚନାରେ ଅତିବାହିତ କରିଛନ୍ତି। ଆପଣ ଅଧ୍ୟୟନ କରିଥିବା ଗ୍ରନ୍ଥମାନଙ୍କ ମଧ୍ୟରୁ କେଉଁ ଗ୍ରନ୍ଥଟି ଆପଣଙ୍କର ପ୍ରିୟ ?

ଉତ୍ତର.	ଜଣେ ଅଧ୍ୟାପକ ପ୍ରକୃତରେ ଆଉ କ'ଣ ବା କରିଥାଆନ୍ତା। କେଉଁ ଗ୍ରନ୍ଥଟି ଖାସ୍ ପ୍ରିୟ। ସେକଥା ମଥାରୁ ବାହାର କରି କହିଲେ ନିଜ ପ୍ରତି ମୁଁ ଅନ୍ୟାୟ କରିବି। ତଥାପି, ଯେଉଁଠି ଲେଖକ ନିଜ ଭୂଇଁଟି ଉପରେ ଛିଡ଼ା ହୋଇଛନ୍ତି ଓ ସାରା ଏହି ଚଳମାନ୍ ପୃଥିବୀକୁ ଦିଗ୍‌ବଳୟ ରୂପେ ଦେଖିପାରୁଛନ୍ତି ଅଥବା, ଏକ ସ୍ୱଭାବ ସିଦ୍ଧ ଆତ୍ମୀୟତାରେ ଗୋଟା ପୃଥିବୀଯାକ ଉଡି ବୁଲି ପାରୁଛନ୍ତି ଅଥଚ ନିଜର ଗୋଡ଼ମାନଙ୍କୁ ଏହି ତଥାକଥିତ ସ୍ଥାନୀୟ ଭୂମିଟି ଉପରେ ଥାପି ରଖିପାରିଛନ୍ତି ସେହିମାନଙ୍କର କୃତୀଗୁଡ଼ିକ ମୋର ବିଶେଷ ପ୍ରିୟ। ଏହି କ୍ଷେତ୍ରରେ କବିତା, ଗଳ୍ପ, ଉପନ୍ୟାସ ଓ ପ୍ରବନ୍ଧ ମଧ୍ୟରେ କୌଣସି ବାରଣ ନାହିଁ। ମୋ ଭାଷା ଓ ଅନ୍ୟ ଭାଷା ବିଷୟରେ ମଧ୍ୟ ବାରଣ ନାହିଁ।

ପ୍ରଶ୍ନ:	ତରୁଣ ଲେଖକମାନଙ୍କୁ କ'ଣ କହିବେ ?

ଉତ୍ତର.	ସେମାନେ ଧର୍ମତଃ ଆମ ଅତରୁଣମାନଙ୍କୁ ଅତିକ୍ରମ କରିଯାଆନ୍ତୁ।

ପ୍ରଶ୍ନ:	ପୁରସ୍କାର ସାହିତ୍ୟରେ ସମୃଦ୍ଧି କରେ ନା ଅନ୍ତରାୟ ?

ଉତ୍ତର.	ଏହା ପୁରସ୍କାର ପାଉଥିବା ଜୀବନ ଉପରେ ହିଁ ମୁଖ୍ୟତଃ ନିର୍ଭର କରୁଛି। ଯିଏ କୌଣସି ପୁରସ୍କାର ପାଇବ ବୋଲି ନିଜ ଆଡ଼ୁ ଆପେ ଯୋଗାଡ଼ ହୋଇ ଧାଇଁଛି, ବିଚରା ସେ କିଛି ପୁରସ୍କାର ହାସଲ କରୁଥିଲେ ମଧ ନିଜ ଭିତରେ ଧୋକ୍କା ହିଁ ଖାଉଛି। ନିଜର ସାହିତ୍ୟାନୁଗତ୍ୟ ପାଖରେ ଦୋଚାରୁଣୀ ହୋଇ ରହିଯାଉଛି।





# ପ୍ରତିଯୋଗିତାମୂଳକ ନାଟକ ମଞ୍ଚରେ ସଫଳ ହୋଇପାରୁନି

## ବିଜୟ ମିଶ୍ର:

**ଓ**ଡ଼ିଶାର ଅନ୍ୟତମ ବିଶିଷ୍ଟ ନାଟ୍ୟକାର ବିଜୟ ମିଶ୍ର। ନାଟକକୁ ନେଇ ସେ କରିଛନ୍ତି ଅନେକ ପରୀକ୍ଷା ନିରୀକ୍ଷା। ସେ 'ତଟନିରଞ୍ଜନା' ହେଉ କିମ୍ବା 'ଶବବାହକମାନେ' ସବୁଠି ତାଙ୍କର ପ୍ରତିଯୋଗିତାମୂଳକ ନାଟକ ଦର୍ଶକଙ୍କ ଦ୍ୱାରା ଖୁବ୍ ଆଦୃତ ହୋଇପାରିଛି। ଖାଲି ଯେ ଦର୍ଶକଙ୍କୁ ସ୍ତମ୍ଭୀଭୂତ କରେ ତା ନୁହେଁ ପାଠକର ହୃଦୟକୁ ଛୁଇଁବା ଭଳି ସମ୍ମୋହନ ଶକ୍ତି ମଧ୍ୟ ରହିଥାଏ । ଆଜିକାଲି ଅନେକ ନାଟକ ଲେଖାଯାଉଛି ସତ, ମାତ୍ର ଏ ସବୁ ସଫଳ ମଞ୍ଚସ୍ତ ନାଟକ ହୋଇପାରୁନି। ଶ୍ରୀ ମିଶ୍ରଙ୍କ ସହ ସଂକ୍ଷିପ୍ତ ଆଳାପ।

ପ୍ରଶ୍ନ: ଆଜିକୁ କେତୋଟି ନାଟକ ଏବଂ ଚଳଚ୍ଚିତ୍ର ଲେଖିସାରିଲେଣି ?

ଉତ୍ତର. ପଚାଶରୁ ଅଧିକ ନାଟକ ଏବଂ ପ୍ରାୟ ସତୁରି ଚଳଚ୍ଚିତ୍ର ସ୍କ୍ରିପ୍ଟ ଲେଖିସାରିଛି।

ପ୍ରଶ୍ନ: ଆପଣଙ୍କ କେତୋଟି ନାଟକ ପରବର୍ତ୍ତୀ ସମୟରେ ଚଳଚ୍ଚିତ୍ରର ରୂପ ନେଇଛି ଏବଂ ଉଭୟ କ୍ଷେତ୍ରରେ ସଫଳତା ପାଇଛି ?

ଉତ୍ତର. ହଁ ମୋର ତିନୋଟି ନାଟକ-ଯାଯାବର, ଅଶାନ୍ତ ଗ୍ରହ, ଜନନୀ ପ୍ରଥମେ ନାଟକ, ପରେ ଚଳଚ୍ଚିତ୍ର ହୋଇଛି।

ପ୍ରଶ୍ନ: 'ଯାଯାବର' ଚଳଚ୍ଚିତ୍ରର ସଫଳତା ପରେ ଆପଣ ନାଟକଲେଖା ମନ୍ଥର କରିଦେଲେ ?

ଉତ୍ତର. ନା, ମୁଁ ଚଳଚ୍ଚିତ୍ରକୁ ଆସୁ ନ ଥିଲି। ୧୯୭୨ର କଥା। ସେତେବେଳେ ଗୋପାଳ ଛୋଟରାୟ ବହୁତ ଚଳଚ୍ଚିତ୍ର ସ୍କ୍ରିପ୍ଟ ଲେଖୁଥାନ୍ତି। ମୁଁ ଦେଖିଲି ଥିଏଟର ରୁଗ୍ଣ ହେବାକୁ ବସିଲାଣି। ମୋତେ ଅଲ୍‌ଟରନେଟିଭ ଚିନ୍ତା କରିବାକୁ ପଡିବ।

ପ୍ରଶ୍ନ: ନାଟକ କିମ୍ବା ଚଳଚ୍ଚିତ୍ର ସ୍କ୍ରିପ୍ଟ ଲେଖିଲାବେଳେ ନିର୍ଦ୍ଦିଷ୍ଟ କିଛି ଉପାଦାନର ଆବଶ୍ୟକତା ଥାଏ କି ?

ଉତ୍ତର. ପ୍ରଥମେ ଇମୋଶନାଲ ଆସିବ। କିନ୍ତୁ ଲେଖିଲାବେଳେ ଇମୋଶନାଲ ହେବା ଉଚିତ ନୁହେଁ। ନଚେତ୍ କୌଣସି ଚରିତ୍ର ପ୍ରତି ଅଧିକ ଦୁର୍ବଳତା ଆସିପାରେ କିମ୍ବା କୌଣସି ଚରିତ୍ର ପ୍ରତି ନିରପେକ୍ଷତା ରକ୍ଷା କରାଯାଇପାରିବ ନାହିଁ। ଗୋଟିଏ ଥିମ୍ ଭାବିନିଏ ତା'ପରେ ଲେଖେ।

ପ୍ରଶ୍ନ: ଆପଣଙ୍କ ନାଟକରେ ଇଂଲିଶ ସାହିତ୍ୟର ପ୍ରଭାବ ଏବଂ ଚଳଚ୍ଚିତ୍ରରେ ଡାଇଲଗ୍, ଶବ୍ଦ ସଂଯୋଜନାରେ ବଙ୍ଗଳାର ପ୍ରଭାବ ଥିବା ଅନୁମିତ ହୁଏ।

ଉତ୍ତର. ହଁ, ଏଇଟା ସତକଥା। ଗୋପବନ୍ଧୁ ପାର୍କ ପାଖରେ ଅକ୍ଷୟ ମହାନ୍ତି, କୈଳାସ ଲେଙ୍କା, ଓକିଲ ଗୁରୁ ମହାନ୍ତି, ଜୀବନାନନ୍ଦ ମହାନ୍ତି ଆଉ ମୁଁ ଆମେ ସମସ୍ତେ ବସି ଖଟି କରୁଥିଲୁ ପ୍ରତିଦିନ ସନ୍ଧ୍ୟାରେ। ଥରେ ଜଣେ ଅଧ୍ୟାପକ ଆସି କହିଲେ, ତମେ ସବୁ ଏମିତି ଖାଲି ଗପ କରୁଛ ଟିକେ ପଢ଼ାପଢ଼ି ହେଲେ କରନ୍ତ। ଆମେ ସବୁ ତାଙ୍କ କଥା ଶୁଣି ତାଙ୍କୁ ଚାହିଁଲୁ। ଚାକିରି ବାକିରି କଲୁଣି ପୁଣି ପାଠପଢ଼ା କ'ଣ। ତା'ପରେ ସେ ଆମକୁ ଟଲଷ୍ଟୟ, ଦସ୍ତୋଭସ୍କି,

ଜେମସ ଜଏସ, ଆଦ୍ରେଜିତ୍, ଡିଲଙ୍ଗ ଟମରର୍ସଙ୍କ ବହିସବୁ ପଢ଼ିବାକୁ କହିଲେ। କିଛିଦିନ ପଢ଼ାପଢ଼ି କଲାପରେ ଅକ୍ଷୟ କହିଲା ଯା' ଏ ସବୁ ପଢ଼ିଲେ ମୋ ପ୍ରୋଗ୍ରାମ ମାଡ ହେଉଛି, ବିଜୟ ତୁ ପଢ଼ି ମୋତେ କହିଦେବୁ। ମୁଁ କିନ୍ତୁ ପଢ଼ିବା ନିଶାରେ ବିଭୋର ହୋଇସାରିଥିଲି। ଇଂରାଜୀ ପରେ ଧୀରେ ଧୀରେ ବଙ୍ଗଳା ନାଟକମାନଙ୍କ ଭିତରେ ମଜ୍ଜିଲି। ବଙ୍ଗଳା ନାଟକରେ ଡାଇଲଗର ଧାରାକୁ ଧରିଲି, କିନ୍ତୁ ଓଡ଼ିଆ ନାଟକ ଆନ୍ଦୋଳନରେ ବଙ୍ଗଳାର ଭୂମିକା ବିଶେଷ ନାହିଁ। କାରଣ ବଙ୍ଗଳା ନାଟ୍ୟକାର ଯେଉଁଳି ଚିନ୍ତା କଲେ ଆମେ ଓଡ଼ିଆ ମଧ୍ୟ ସମସାମୟିକ ଚିନ୍ତାକଲୁ ଏବଂ ନାଟକ ଲେଖିଲୁ।

ପ୍ରଶ୍ନ: ଦେଶୀୟ କଥା କାହାଣୀ ଯେମିତି ରାମାୟଣ, ମହାଭାରତ ଆଦି ଆପଣଙ୍କୁ ନ ଧରି ବିଦେଶୀ ଫିଲୋସଫି ଧରିଲା କେମିତି ?

ଉତ୍ତର. ମୁଁ ନିଜେ ଦେଶର ଇତିହାସ, ପୁରାଣ ଅଦିକୁ ଜାଣି ନ ଥିଲି, ଯେତେବେଳେ ଜାଣିବା ସୁଯୋଗ ପାଇଲି ବିଦେଶୀ କଥାକାହାଣୀ, ମୋ ସାମ୍ନାରେ ଧୀରେ ଧୀରେ ଓ୍ୱେଷ୍ଟର୍ଣ୍ଣଟା ମେଟେରିଆଲିଷ୍ଟିକ୍ ଲାଗିଲା।

ପ୍ରଶ୍ନ: 'ତଟନିରଞ୍ଜନା' ଆପଣଙ୍କ ବହୁଚର୍ଚ୍ଚିତ ଏବଂ ଭାରତର ସବୁ ଭାଷାରେ ବେତାର ପ୍ରଚାରିତ ନାଟକ। ଏ ସମ୍ପର୍କରେ କିଛି କହିବେ ?

ଉତ୍ତର. 'ତଟନିରଞ୍ଜନା' ଗୋଟିଏ ଫ୍ଲାସରେ ଲେଖିଲି। ଆବେଗ ତାଡିତ ଲେଖାଟିଏ। ରତି ମିଶ୍ର, କୁଞ୍ଜ ରାୟ ପ୍ରତି ରବିବାର ଦିନ ମୋ ଘରକୁ ନିଶ୍ଚୟ ଆସିବେ। ଆମ ଘରେ ଗୋଟିଏ ମାହୋଲ ଜମେ। ଥରେ ମୋ ଝିଅ ଇତିହାସ ଘୋଷୁଥିଲା 'ଗୌତମ ବୁଦ୍ଧ ଶୂକର ମାଂସ ଭକ୍ଷଣ କରି ଅମାଶୟ ରୋଗରେ ପୀଡିତ ହେଲେ।' ଏତେବେଳକୁ ମୋତେ ଲିଙ୍କ୍ ଲାଗିଲା। ତା'ପରେ ମୁଁ ବୁଦ୍ଧଙ୍କ ତତ୍ତ୍ୱ ଦର୍ଶନକୁ ଜାଣିବାକୁ ଚେଷ୍ଟାକଲି। ପ୍ରାୟ ଛଅମାସର ପରିଶ୍ରମ ପରେ ମୁଁ ଏହି ନାଟକ ଲେଖିଲି। ୧୯୭୮ରେ ରବିନ୍ଦ୍ରମଣ୍ଡପରେ ମଞ୍ଚସ୍ଥ ହେଲା। ୧୯୭୯ରେ ଆୱାର୍ଡ ପାଇଲା।

ପ୍ରଶ୍ନ: ଆଉ 'ଶବବାହକ' ?

ଉତ୍ତର. ଗୌରୀ କୁମାର ଥିଲେ ସଙ୍ଗୀତ, ନାଟକ, ସାହିତ୍ୟ, ଲଳିତ କଳା ଏକାଡେମୀର ସେକ୍ରେଟାରୀ। ନାଟକ ସବ୍‌ମିଟ୍‌ର ଶେଷ ତାରିଖ ଥିଲା ଡିସେମ୍ବର ୧୬। ମୁଁ ଶେଷଦିନ ପୂର୍ବ ପର୍ଯ୍ୟନ୍ତ ନାଟକ ଲେଖିନାହିଁ। ସତ୍ୟ ମହାପାତ୍ରଙ୍କ ଘରେ ବସି ଆଡ୍ଡା ମାରୁଛି। ସେଦିନ ତିନିଥର ଟିମ୍ ମୋତେ

ଖୋଜି ଫେରିଛନ୍ତି। ମାଧବାନନ୍ଦ ମୋ ଘରେ ବସିଥିଲେ। ଏହି ଟିମ୍‌ର ବାରମ୍ବାର ଆସିବା ଦେଖି ଫ୍ରେଣ୍ଡ୍‌ସ ୟୁନିୟନକୁ ତିନିମାସ ହେଲା ବୁଲାଉଛୁ ତୋତେ ଧମକ ଦେଇ ଯାଇଛନ୍ତି ତୋତେ କଟକ ବାହାରକୁ ଯିବାକୁ ଦେବେନି ଦେଖିଦେବେ। ସେତେବେଳେ ଡିସେମ୍ବର ମାସର ଶୀତ। ଫିଲ୍ମ ଟିକଟ ବୁକିଙ୍ଗ କାଉଣ୍ଟରରେ ଭର୍ତ୍ତି କରିଦେଲେ ଆଉ ଗୋଟିଏ ଫ୍ଲାସ୍‌ରେ ଚା, ଗୋଛେ ପାନ, ଖାତା, କଲମ ଆଣି ଥୋଇଦେଇ ବାହାରପଟୁ ତାଲାଦେଇ ଚାଲିଗଲେ। ସକାଳ ପାଇଲେ ନାଟକଟି ସବ୍‌ମିଟ ହେବ ମୁଁ କ'ଣ କରିବି ଶୀତରେ ଥରୁଥିଲି। କୁଆଡେ ପଳାଇବାର ବାଟ ନ ଥିଲା। ସେତିକିବେଳେ ମୋତେ – କେତୋଟି ଚରିତ୍ର ଘର ଭିତରେ ଭର୍ତ୍ତି ହୋଇଛନ୍ତି, ବାହାରେ ବର୍ଷା, ଘର ଭିତରେ ଶବଟିଏ ପଡିଛି ଏଭଳି ଗୋଟିଏ ଥଟ୍ ଆସିଲା। ରାତି ୯ଟାରୁ ସକାଳ ୯ଟା ପର୍ଯ୍ୟନ୍ତ ମୁଁ ଅବାରିତ ଲେଖିଲି। ତା'ପରଦିନ ନାଟକଟିକୁ ଦେଖା ନାହିଁ, ପଢ଼ା ନାହିଁ ସେହି ହାତଲେଖାକୁ ସବ୍‌ମିଟ୍ କରାଗଲା। ମାସେ ପରେ ଆୱାର୍ଡ ପାଇଲା।

ପ୍ରଶ୍ନ: ଆପଣ 'ଇତିହାସର ଯନ୍ତ୍ରଣା' ଯାତ୍ରାଟିଏ ବି ଲେଖିଛନ୍ତି। ତାହା ସଫଳ ମଧ୍ୟ ହୋଇଥିଲା, କିନ୍ତୁ ଯାତ୍ରା ଆଉ ଲେଖିନାହାନ୍ତି ?

ଉ. ଯାତ୍ରାଲେଖା ଫରମେଟ୍ ମୋତେ ପୋଷାଇଲା ନାହିଁ ଏଣୁ ଯାତ୍ରା ଲେଖିଲି ନାହିଁ।

ପ୍ରଶ୍ନ: ଆପଣ ଇଂରାଜୀ ଲିଟରେଚରର ବହୁ କ୍ଲାସିକ ପଢ଼ିଛନ୍ତି। ଉପନ୍ୟାସ ଆଡକୁ ନ ଯାଇ ନାଟକ ଆଡକୁ କାହିଁକି ଗଲେ ?

ଉତ୍ତର. ପ୍ରଥମେ କବିତା ଲେଖିଲି, ତା'ପରେ ଷ୍ଟୋରୀ, ତା'ପରେ ଗୋଟିଏ ଉପନ୍ୟାସ 'ନିର୍ମମଫଗୁଣ'। ଆମ ଘରେ ରୀତିମତ ଆଖଡା ଚାଲୁଥିଲା। ଘରର ନାଟକୀୟ ପରିବେଶ, ପ୍ରତିଦିନ ନାଟକ ରିହର୍ସାଲ ହେବା, ମୁଁ ପାଠପଢା ଛାଡି ଏସବୁ ଦେଖିଛି ବୋଲି। ପିଲାଦିନରୁ ନାଟକ ପ୍ରତି ମୋର ଶ୍ରଦ୍ଧା ଆଉ ଆକର୍ଷଣ ହିଁ ମୋତେ ନାଟକ ଭିତରେ ବାନ୍ଧି ରଖିଦେଲା।

ପ୍ରଶ୍ନ: ଏବେ ନାଟକ ଉଧଉ ନାହିଁ କାହିଁକି ?

ଉତ୍ତର.. ଗୋଟିଏ ଖନ୍ଦା ଅଛି, ସେହି ଖନ୍ଦା ଭିତରେ ନେଇ ପକାଇବା ଅଭ୍ୟାସରେ ସବୁ ପଡିଛନ୍ତି। ଆଉ ଗୋଟିଏ କଥା ହେଲା ପ୍ରତିଯୋଗିତାମୂଳକ ନାଟକ ଲେଖା ହେଉଛି। ଏହା ଗୋଟିଏ ସଫଳ ମଞ୍ଚସ୍ଥ ନାଟକ ହୋଇପାରୁନାହିଁ।



# ଛୁଆଟିଏ ବଡ଼ କରିବା ଯାହା, ନାଟକଟିଏ ଗଢ଼ିବା ତାହା

## ଡଃ ରମେଶ ପାଣିଗ୍ରାହୀ:

**କ**ବିତା, ଗୀତିକବିତା, ଗଳ୍ପ ଲେଖୁ ଲେଖୁ ହଠାତ୍ ନାଟକ ପ୍ରତି ଆଗ୍ରହୀ ହେଲେ ନାଟ୍ୟକାର ରମେଶ ପ୍ରସାଦ ପାଣିଗ୍ରାହୀ। ନାଟକ ଭିତରେ ସେ ଖୋଜିଛନ୍ତି ସାହିତ୍ୟର ସମସ୍ତ ପ୍ରକାର ବିଭବ। ନାଟକରେ ହୋଇଛି ତାଙ୍କର ଗଭୀର ଜୀବନବୋଧର ଅନୁଭବ। ତେଣୁ ସେ ଅଦ୍ୟାବଧି ଲେଖିଚାଲିଛନ୍ତି ନାଟକ । ଯାତ୍ରା ଜଗତରେ ମଧ୍ୟ ତାଙ୍କ ରଚିତ ସଂଳାପ ଦର୍ଶକଙ୍କୁ ସ୍ତମ୍ଭୀଭୂତ କରିଛି । ତାଙ୍କ ସହ ସଂକ୍ଷିପ୍ତ ଆଳାପ।

ପ୍ରଶ୍ନ: ଆପଣ କ'ଣ ନାଟକରୁ ଆରମ୍ଭ କରିଥିଲେ ଲେଖାଲେଖି ?

ଉତ୍ତର. ନା, ପ୍ରଥମେ ମୁଁ ନାଟକ ଲେଖିନି। ଆରମ୍ଭ କବିତା ଓ ଗୀତିକବିତା। ୬୫ ମସିହାରୁ ମୁଁ ଆକାଶବାଣୀ ସ୍ୱୀକୃତିପ୍ରାପ୍ତ ଗୀତିକାର। ଚଳଚ୍ଚିତ୍ର ପାଇଁ ମଧ୍ୟ ଲେଖିଛି। ତା' ପରେ ଲେଖିଥିଲି ଗଳ୍ପ। ଅନେକ ଗଳ୍ପ ପ୍ରକାଶିତ। ଏବେ କଲେ ସଂକଳନଟିଏ ହୋଇପାରିବ। ସେଥିରୁ କେତୋଟି ହଜିଗଲାଣି। ଗୋଟିଏ ପ୍ରକାଶିତ ଉପନ୍ୟାସ। ନାଟକକୁ ଆସିଲାବେଳକୁ ୧୯୬୩ ମସିହା। ପୁରୀରେ ପ୍ରତି ସନ୍ଧ୍ୟାରେ ଅନ୍ନପୂର୍ଣ୍ଣା ନାଟକ ଦେଖୁଥିଲି। ସ୍ୱର୍ଗତ ଭୁବନେଶ୍ୱର ମହାପାତ୍ରଙ୍କୁ ମୁଁ ମାମୁଁ ବୋଲି ଡାକେ। ଓଡ଼ିଶାର ସବୁଠୁ ବରିଷ୍ଠ କଳାକାର ଦୁର୍ଲଭ ସିଂହ ମୋର ଅତି ଘନିଷ୍ଠ। ମୋର ପ୍ରଥମ ନାଟକକୁ ସଂଶୋଧନ କରିଛନ୍ତି ସ୍ୱର୍ଗତ ବ୍ୟୋମକେଶ ତ୍ରିପାଠି। ତେବେ ନାଟକ ମୋର ଆରମ୍ଭ ହୋଇଛି ବ୍ୟବସାୟିକ ମଞ୍ଚ ସହ ସିଧାସଳଖ ଭାବରେ। ତା'ପରେ ଅନବରତ ନାଟକ ଲେଖା ଚାଲିଛି।

ପ୍ରଶ୍ନ: କେବଳ ନାଟକରେ ମନସ୍ଥିର କଲେ କାହିଁକି ?

ଉତ୍ତର. ନାଟକଟିଏ ଲେଖିଦେଲେ ତା' ଭିତରେ ମୋର ଗଳ୍ପ ଓ କବିତା ଲେଖା ହୋଇଯାଇଛି। ତେଣୁ ନାଟକ ଭିତରେ ମୁଁ ସାହିତ୍ୟର ସମସ୍ତ ପ୍ରକାର ପ୍ରକାଶଭଙ୍ଗୀ ମଧ୍ୟରେ କାମ କରିବା ପାଇଁ ସୁଯୋଗ ପାଉଛି। ତେବେ ପ୍ରଭେଦ ଏତିକି ଯେ, କବିତା ଭିତରର ଅନୁଭୂତିମାନେ ଶବ୍ଦ ସବୁକୁ ସାଉଁଟି ଆଣନ୍ତି। ନାଟକର ଭିତର ଅନୁଭୂତି ଅପେକ୍ଷା ବାହାରର ଅନୁଭୂତି ବେଶି ପ୍ରାଧାନ୍ୟ ପାଏ। ନାଟକଟା ଗୋଟିଏ ପ୍ରାୟୋଗିକ କାର୍ଯ୍ୟ। ଛୁଆଟିଏ ବଡ଼ କରିବା ଯାହା, ଜୀବନଟେ ଗଢ଼ିବା ଯାହା ନାଟକଟିଏ ଗଢ଼ିବା ତାହା।

ପ୍ରଶ୍ନ: ଭାରତୀୟ ନାଟକ ବାସ୍ତବ ଜୀବନରୁ ଦୂରରେ-ଆପଣ ଏକମତ କି ?

ଉତ୍ତର. ଭାରତୀୟ ନାଟକ କେତେବେଳେ ପୁରାଣ ଏବଂ ଇତିହାସ ସହିତ ଜଡ଼ିତ କେତେବେଳେ ସମାଜ ଓ ଜୀବନ ସହିତ। ବିଜୟ ତେନ୍ଦୁଲକର, ବାଦଲ ସରକାର ଏବଂ ମୋହନ ରାକେଶଙ୍କ ପରି ବହୁ ନାଟ୍ୟକାର ବାସ୍ତବ ଜୀବନରୁ ହିଁ ତାଙ୍କର ନାଟ୍ୟ ଉପାଦାନ ସଂଗ୍ରହ କରିଛନ୍ତି। ସର୍ବକନିଷ୍ଠ ନାଟ୍ୟକାର ମହେଶ ଦତ୍ତାନି କେବଳ ବାସ୍ତବବାଦୀ ନାଟକ ହିଁ ଲେଖନ୍ତି। ତା'ଛଡା ଅଗ୍ନିବର୍ଷା, ତୁଡ୍‌ଲକ୍, ଯଯାତି ଇତ୍ୟାଦି ନାଟକଗୁଡିକ ପୌରାଣିକ ମନେହେଲେ ସୁଦ୍ଧା ଏଗୁଡିକରେ ଆଧୁନିକ ଜୀବନ ହିଁ ପ୍ରତିଫଳିତ।

ପ୍ରଶ୍ନ: ନାଟ୍ୟମଞ୍ଚରେ ବ୍ୟବହୃତ ଭାଷା କଥିତ ଭାଷା ପରି ହେଲେ କିପରି ହୁଅନ୍ତା ?

ଉତ୍ତର. ଆଗରୁ ନାଟକରେ ବ୍ୟବହୃତ ଭାଷା ଖୁବ୍ ଗମ୍ଭୀର ଥିଲା, ଅବଶ୍ୟ ଆଜିକାଲି ନାଟକରେ କେବଳ କଥିତ ଭାଷା ହିଁ ବ୍ୟବହାର କରାଯାଉଛି। ଏଣୁ କଥିତ ଭାଷାର ବିଭିନ୍ନ ଛନ୍ଦ ଏବଂ ବିଭିନ୍ନ ଆବେଗର ଛନ୍ଦକୁ ପ୍ରକାଶ କରିବାର ପ୍ରାୟୋଗିକ ଶୈଳୀ ନାଟକ। ଯଦି କଥିତ ଭାଷାଟି ସାହିତ୍ୟିକ ଭାଷା ହୋଇଯିବ ନାଟକଟି ପଠନଯୋଗ୍ୟ ହେବ। କେବେ ହେଲେ ମଞ୍ଚ ଉପଯୋଗୀ ହେବ ନାହିଁ ଏବଂ ମଞ୍ଚସ୍ଥ ନ ହେଲେ ତାହା ନାଟକ ପଦବାଚ୍ୟ ହେବନାହିଁ।

ପ୍ରଶ୍ନ: ଉତ୍ତମ ନାଟକ କାହାକୁ କହିବା ?

ଉତ୍ତର. ଉତ୍ତମ ନାଟକ କ'ଣ ତାହାର ଏକ ନିର୍ଦ୍ଧିଷ୍ଟ ସଂଜ୍ଞା ନାହିଁ। ଉଦାହରଣ ସ୍ୱରୂପ ଉତ୍ତମ ନାୟକଙ୍କର 'ମାଟିପୂଜା' ଗଳ୍ପଟି ଭଲ କି ? ପାରମିତା ଶତପଥୀଙ୍କର 'କାର୍ଗିଲର ମା' ଗଳ୍ପଟି ଭଲ ମୁଁ କହିପାରିବି ନାହିଁ। ସେହିପରି ସୁଜିତ କୁମାର ପଣ୍ଡା ଏବଂ ରାମଚନ୍ଦ୍ର ବେହେରାଙ୍କ ଗଳ୍ପଗୁଡ଼ିକୁ ତୁଳନା କରାଯାଇ ପାରିବ ନାହିଁ। ସମସ୍ତେ ନିଜ ନିଜ ବାଟରେ ଅନନ୍ୟ। ଗୋଟିଏ ନାଟକ ଭୁବନେଶ୍ୱରରେ ଉତ୍ତମ ମନେ ହୋଇପାରେ, କିନ୍ତୁ ରାଉରକେଲାରେ ତାହା ଭଲ ନ ହୋଇପାରେ। ଭବାନୀପାଟଣାର ନାଟକ ପ୍ରତିଯୋଗିତାରେ ବିଚାରକ ଭାବରେ ମତେ 'କୁମାରୀ' ନାଟକଟି ସବୁଠାରୁ ଭଲ ଲାଗିଥିଲା। କିନ୍ତୁ ଅନ୍ୟ ବିଚାରକମାନଙ୍କୁ ତାହା ଭଲ ନ ଲାଗିବାରୁ ଅନ୍ୟ ନାଟକଟି ଉତ୍ତମ ବୋଲି ବିବେଚିତ ହେଲା। ତେଣୁ ଉତ୍ତମ ନାଟକଟିଏ ପାଇଁ ଆମେ ନିର୍ଦ୍ଧିଷ୍ଟ ସଂଜ୍ଞାଟିଏ ନିରୂପଣ କରିପାରିବା ନାହିଁ।

ପ୍ରଶ୍ନ: ନାଟକ ଲେଖିବାବେଳେ ମୁଖ୍ୟତଃ କେଉଁ ଦିଗଗୁଡ଼ିକ ପ୍ରତି ସଚେତନ କରି ଲେଖନ୍ତି ?

ଉତ୍ତର. ଗଳ୍ପରେ ଯେଉଁଟା ଦ୍ୱାରା କହିବା ସମ୍ଭବ ହେବ ନାଟକରେ ସେଥିପାଇଁ ଘଟଣାଟିଏ ତିଆରି କରିବାକୁ ହେବ। ଗଳ୍ପରେ ଯାହା କଥାରେ କହିହେବ ନାଟକରେ ତାକୁ ଦ୍ୱନ୍ଦ୍ୱ ଭିତରେ ହିଁ କହିହେବ। ନାଟକର ପ୍ରାଣ ହେଉଛି ଦ୍ୱନ୍ଦ୍ୱ। ଦୁଇଟି ବିପରୀତଧର୍ମୀ ଚରିତ୍ରର ସଂଘର୍ଷ ନ ଘଟିଲେ ନାଟକର ଦ୍ୱନ୍ଦ୍ୱ ନିର୍ମିତ ହୋଇପାରିବ ନାହିଁ। ମାନସିକ ଦ୍ୱନ୍ଦ୍ୱ ପାଇଁ ନିଜ ଭିତରେ ଥିବା ବିପରୀତ ଦ୍ୱନ୍ଦ୍ୱ ଓ ଧର୍ମମାନରୁ ମଞ୍ଚ ଉପରକୁ ଅଣାଯାଇପାରେ। ଆଉ ଏକ ଆବଶ୍ୟକତା ହେଲା ରସର ପରିବେଷଣ। କେଉଁ ଦୃଶ୍ୟର କେଉଁ ରସ ପରେ ଅନ୍ୟ କେଉଁ ରସର

ଦୃଶ୍ୟ ଅଣାଯାଇପାରିବ ତାହା ନାଟ୍ୟକାର ଜାଣିବା ଉଚିତ। ଏତଦ୍‌ବ୍ୟତୀତ ନାଟକର ପ୍ରାୟୋଜିତ ଭିତ୍ତିଭୂମି ହେଲା ଛନ୍ଦ। ସଂଳାପର ଛନ୍ଦ। ଚରିତ୍ରର ଛନ୍ଦ, ଘଟଣା ଉପସ୍ଥାପନାର ଛନ୍ଦ ଏବଂ ଗୀତର ଛନ୍ଦ ସମନ୍ୱିତ ଭାବେ ଉପସ୍ଥାପନା କରାଯାଇ ନ ପାରିଲେ ନାଟକ ବିଫଳ ହେବ।

ପ୍ରଶ୍ନ: ଆପଣଙ୍କ ରଚିତ 'ଆନନ୍ଦନଗରକୁ ଯାତ୍ରା' ନାଟକରେ ପେଟରେ ମୂଷା ପଶିଯିବା କିପରି ଗୋଟିଏ ଉଦ୍ଭଟ ଲାଗୁଛି ସେ ସମ୍ପର୍କରେ କିଛି କହିବେ?

ଉତ୍ତର. ଆନନ୍ଦନଗରକୁ ଯାତ୍ରା ଏକ ଅନ୍ତଃଯାତ୍ରା। ତେଣୁ ଘଟଣାଗୁଡ଼ିକ ମଧ୍ୟ ଚେତନାର ଅଭ୍ୟନ୍ତର ଘଟଣା। ଏଥିରେ ଏକ ଅଭ୍ୟନ୍ତରୀଣ ଛନ୍ଦ ଅଛି। ଯେଉଁ ଚରିତ୍ରଟିର ପେଟରେ ମୂଷା ପଶିଯିବା କଥା କୁହାଯାଇଛି ସେ ଏହି ଅନ୍ତଃଯାତ୍ରାର ଜଗୁଆଳି ସଦୃଶ। ତାକୁ ଉପସ୍ଥାପିତ କରାଯାଇଛି କୌଣସି ଏକ ରହସ୍ୟ ରୋମାଞ୍ଚକ ନାଟକର ରହସ୍ୟମୟ ଚରିତ୍ର କରି। ଯେତେବେଳେ ସାମ୍ନାରେ ଥିବା ଚରିତ୍ରମାନଙ୍କର ଆନନ୍ଦ ଅନ୍ୱେଷା ମାର୍ଗଚ୍ୟୁତ ହେଲାପରି ଲାଗେ ତା' ପେଟରେ ଯନ୍ତ୍ରଣା ଆସେ ଏବଂ ପେଟରେ ମୂଷା ପଶିଲା ପରି ଲାଗେ। ଯଥା ପେଟରେ ମୂଷା ଦୌଡ଼ିବା କ୍ଷୁଧାର ସରଳ ଅଭିବ୍ୟକ୍ତିଦ୍ୱିଟିଏ। କିନ୍ତୁ ନାଟକରେ ସେହି ଲୋକଟି ଯେତେବେଳେ ପେଟରେ ମୂଷା ପଶିଗଲାବୋଲି ଯନ୍ତ୍ରଣାରେ ରହିଛି ସେଥିରେ ଏକ ରୂପକାତ୍ମକ ଅର୍ଥ ଅଛି।

ପ୍ରଶ୍ନ: ମଞ୍ଚ ନାଟକ ଓ ଟେଲିଭିଜନ ଧାରାବହିକ ପାଇଁ ସ୍କ୍ରିପ୍ଟ ଲେଖିବାରେ ତଫାତ୍ କ'ଣ?

ଉତ୍ତର. ବିଭିନ୍ନ ମାଧ୍ୟମ ପାଇଁ ଲେଖିଲାବେଳେ ନାଟ୍ୟ ରଚନାର ଶୈଳୀ ଅଲଗା ହେବା ପାଇଁ ବାଧ୍ୟ। ଟେଲିଭିଜନ ନାଟକରେ ଦର୍ଶକମାନଙ୍କ ଦୃଷ୍ଟିରୁ ଗୋଟିଏ ଅଧିକ ସୁବିଧା ଉପଲବ୍ଧ ହୁଏ। କ୍ୟାମେରାରେ କ୍ଲୋଜ୍ ଅପ୍ ସୁବିଧା ଥିବାରୁ ମୁହଁ, ନାକ ଆଖି, ଓଠ ଇତ୍ୟାଦିର ଚାଳନା ଦ୍ୱାରା ଅତି ସୂକ୍ଷ୍ମ ମାନସିକ ପ୍ରତିକ୍ରିୟାଗୁଡ଼ିକୁ ପ୍ରକାଶ କରିବାରେ ସୁବିଧା ମିଳେ ଏଣୁ ଟେଲିଭିଜନ ସ୍କ୍ରିପ୍ଟରେ ସୂକ୍ଷ୍ମ ମାନସିକ ପ୍ରତିକ୍ରିୟାଗୁଡ଼ିକ ଅନୁଭବ କରିହୁଏ। ଏଣୁ ମଞ୍ଚ ନାଟକ ଲେଖିଲାବେଳେ ଅନେକ ଆଭ୍ୟନ୍ତରୀଣ ପ୍ରସଙ୍ଗ ନାଟ୍ୟାୟିତ ହୋଇପାରେ ନାହିଁ।

ପ୍ରଶ୍ନ: ସୌଖୀନ ମଞ୍ଚ ପାଇଁ ନାଟକ ଓ ଯାତ୍ରା ପାଇଁ ନାଟକ ରଚନା ମଧ୍ୟରେ ତଫାତ୍ କ'ଣ?

ଉତ୍ତର.	ନାଟ୍ୟ ରଚନା ସବୁବେଳେ ଦର୍ଶକ ଅଭିମୁଖୀ। କେଉଁ ଶ୍ରେଣୀର ଦର୍ଶକ ପାଇଁ ନାଟକଟେ ଲେଖାଯାଉଛି ତାହା ନ ଜାଣିଲେ ନାଟକ ଫେଲ୍ କରିବ। ରବୀନ୍ଦ୍ର ମଣ୍ଡପରେ ନାଟକଟିଏ ମଞ୍ଚସ୍ଥ କଲେ ସର୍ବଶେଷ ଦର୍ଶକଟି ୬୦/୭୦ ଫୁଟ ଦୂରରେ ଥିବ। କିନ୍ତୁ ଯାତ୍ରା ନାଟକର ଶେଷ ଧାଡିର ଦର୍ଶକଟି ୨୦୦ଫୁଟ ଦୂରରେ ଥାଇପାରେ। ଯାତ୍ରାଟି ଅଧାରାତିରେ ଆରମ୍ଭ ହୋଇ ସକାଳୁ ସରେ। ଏଣୁ ଯାତ୍ରା ନାଟକଟି ଦର୍ଶକଙ୍କୁ ଗୋଟିଏ ବିନିଦ୍ର ରଜନୀ ଉତ୍କଣ୍ଠାର ସହିତ ବିତେଇବା ପାଇଁ ବାଧ କରିପାରୁଥିବା ଦରକାର। ଏଣୁ ଦେଢ଼ ଘଣ୍ଟା ବା ଦୁଇ ଘଣ୍ଟାରେ ସରିଯାଉଥିବା ଏବଂ ସନ୍ଧ୍ୟା ୭ଟାରୁ ସାଢ଼େ ନ'ଟା ଭିତରେ ସମୟ ଦେଇପାରୁଥିବା ଦର୍ଶକମାନଙ୍କର ଚାହିଦାଠାରୁ ଯାତ୍ରା ନାଟକର ଚାହିଦା ଅଧିକ। ଯାତ୍ରା ନାଟକରେ କଳାବୋଧଠାରୁ ଜୀବନବୋଧ ଅଧିକ। ସେଠାରେ ବେଶି ଟିକେଟ ବିକ୍ରି ହେଉଥିବା ନାଟକକୁ ଉତ୍ତମ ନାଟକ କୁହାଯାଏ।

ପ୍ରଶ୍ନ:	ଯାତ୍ରାରେ ଅଧିକରୁ ଅଧିକ ଅଶ୍ଳୀଳ ଶବ୍ଦ ବ୍ୟବହାର ହୁଏ। ଏହା କ'ଣ ଜରୁରୀ ?

ଉତ୍ତର.	ଶ୍ଳୀଳତା ଓ ଅଶ୍ଳୀଳତା ଆପେକ୍ଷିକ ବ୍ୟାପାର। ଅଭିନେତା ନାଟ୍ୟକାରର ଶବ୍ଦଗୁଡିକୁ ମଞ୍ଚରେ ପ୍ରୟୋଗ କଲାବେଳେ ନିଜର ସୁବିଧା ଅନୁଯାୟୀ ପରିବର୍ତ୍ତନ ମଧ୍ୟ କରେ। ୨/୩ ହଜାର ସାଧାରଣ ଦର୍ଶକଙ୍କ ସହିତ ସିଧାସଳଖ ସଂଯୋଗ ସ୍ଥାପନ କଲାବେଳେ ସେଥିପାଇଁ ଶ୍ଳୀଳତା ଓ ଅଶ୍ଳୀଳତା ମଧ୍ୟରେ ଥିବା ପାଚେରୀଗୁଡ଼ିକ ଆପେ ଆପେ ଭାଙ୍ଗିଯାଏ।

ପ୍ରଶ୍ନ:	ବର୍ତ୍ତମାନ ସମୟରେ ନାଟକର ପ୍ରାଧାନ୍ୟ କେତେ ?

ଉତ୍ତର.	ନାଟକର ପ୍ରଥମ ଦୁଃଖ ହେଲା ଓଡ଼ିଶାରେ ନାଟ୍ୟକାର ନାହାନ୍ତି। ଯେତେଜଣ ସାହିତ୍ୟିକ ଗଳ୍ପ ଏବଂ କବିତା ଲେଖୁଛନ୍ତି ତା'ର ଦଶ ଭାଗରୁ ଭାଗେ ସାହିତ୍ୟିକ ନାଟକ ଭଳି ଏକ ପ୍ରାୟୋଗିକ ସାହିତ୍ୟ ଲେଖିବା ପାଇଁ ଆଗ୍ରହ ପ୍ରକାଶ କରନ୍ତି। ନାଟକଟିଏ ମଞ୍ଚସ୍ଥ ହେବା ପୂର୍ବରୁ ତିନି/ଚାରି ଥର ଲେଖା ହୁଏ। ଏପରି ପରିଶ୍ରମ କରିବା ପାଇଁ ସାହିତ୍ୟ କର୍ମୀମାନେ ଆଗ୍ରହ ପ୍ରକାଶ କରୁନାହାନ୍ତି।





# ନାଟକରେ ମୋର ସିଦ୍ଧି

## ନୀଳାଦ୍ରିଭୂଷଣ ହରିଚନ୍ଦନ:

**ବ୍ୟ**କ୍ତିକୁ ତା'ର ଦୁଃସ୍ଥିତି ସମ୍ପର୍କରେ ସଚେତନ କରି ଉପରକୁ ଉଠିବା ପାଇଁ ମନରେ ଆଶା ସଞ୍ଚାର କରାଇବା ତାଙ୍କ ସାରସ୍ୱତ କୃତିଗୁଡ଼ିକର ମୂଳ ଉପାଦାନ। ଏହି ଉଦ୍ଦେଶ୍ୟ ରଖି ଦୀର୍ଘ ଦିନ ଧରି ଲେଖନୀ ଚଳାଇ ଆସିଛନ୍ତି ନୀଳାଦ୍ରିଭୂଷଣ ହରିଚନ୍ଦନ। ୧୯୩୪ ମସିହାରୁ ଶାନ୍ତି ନିକେତନ ଓଡ଼ିଆ ବିଭାଗରେ ଅଧ୍ୟାପନାରତ ଏହି ବ୍ୟକ୍ତିତ୍ୱ କବିତା, ନାଟକ, ସମାଲୋଚନା, ଅନୁବାଦ ରଚନାରେ ସିଦ୍ଧହସ୍ତ। ଏଯାବତ୍ ତାଙ୍କର ପ୍ରକାଶ ପାଇଛି ୬ଟି କବିତା ପୁସ୍ତକ, ୧୨ଟି ନାଟକ, ୫ଟି ଅନୁବାଦ ପୁସ୍ତକ ଓ ଅନେକ ସମାଲୋଚନା ପୁସ୍ତକ। ତାଙ୍କ ମତରେ କବିତା ହେଉ କି ଗଳ୍ପ, ଉପନ୍ୟାସ ଅବା ନାଟକ ସବୁଥିରେ ମାନବୀୟ ଜୀବନଗାଥା ଶାଣିତ ହେବା ବିଧେୟ।

ପ୍ରଶ୍ନ: କାହିଁକି ଲେଖନ୍ତି ?

ଉତ୍ତର. ଲେଖେ ନିଜକୁ ପ୍ରକାଶ କରିବା ପାଇଁ। ଯେତେବେଳେ ନୂଆ କିଛି ସମାଜକୁ କହିବାର ଅଛି ବୋଲି ଅନୁଭବ ହୁଏ ସେତେବେଳେ ଲେଖେ।

ପ୍ରଶ୍ନ: କ'ଣ ପାଆନ୍ତି ନାଟକରେ ?

ଉତ୍ତର. ମୋର ତିନୋଟି ବିଭାଗରେ କିଛିସ୍ୱତନ୍ତ୍ର୍ୟ ରହିଛି। କିନ୍ତୁ ମୁଁ ମନେ କରେ ନାଟକ ରଚନାରେ ହିଁ ମୋର ସିଦ୍ଧି ଅଧିକ। ଅନେକ ଲେଖକ ମଧ୍ୟ ଅନୁରୂପ ମତ ଦିଅନ୍ତି। ନାଟକରେ ମୁଁ ନୂତନ କଥା ନୂତନ ରୀତିରେ ହିଁ ପ୍ରକାଶ କରିଛି। ଯାହା ଅନ୍ୟ ସବୁ ନାଟ୍ୟକାରଙ୍କଠାରୁ ସ୍ୱତନ୍ତ୍ର। ମୁଁ ମୋ ନାଟକରେ ଅନ୍ତର୍ଜାତିକ ସମସ୍ୟା, ଜାତୀୟ ସମସ୍ୟା, ବିଶେଷତଃ ଓଡ଼ିଶାର ସମସ୍ୟାକୁ ଆଣିଛି। ବିଶ୍ୱଶାନ୍ତିର ମିଥ୍ୟା ପ୍ରତାରଣାକୁ ନେଇ ମୋର 'ସ୍ୱର୍ଗାରୋହଣ' ନାଟକ। ମହାଭାରତ ମିଥ୍‌ର ପୃଷ୍ଠଭୂମିରେ ମୋର 'ମଧ୍ୟପାତ୍ର', 'ନିରାପଦ ଭବିଷ୍ୟତ', 'ନିରୁତ୍ତାପ', 'ବିଷ୍ଣୁକଳା' ପ୍ରଭୃତି ନାଟକ ଲିଖିତ। ରାମାୟଣ ମିଥ୍‌କୁ ଆଶ୍ରୟ କରି 'ପୁଣ୍ୟଭୂମି ଭାରତ' ନାଟକ ରଚିତ। ମୋର 'ମୁଣ୍ଡ ଉପରେ ଛାତର' ପରିବେଶ ସମସ୍ୟା ରୂପ ପାଇଛି ଏକ ବିସ୍ତୃତ ପ୍ରେକ୍ଷାପଟରେ ଅର୍ଥାତ୍ କାସ୍ପିୟାନ ହ୍ରଦକୂଳରୁ ଆର୍ଯ୍ୟମାନଙ୍କର ଭାରତକୁ ଆଗମନରେ ଉଦ୍ଭଟ ସମସ୍ୟା ଆରମ୍ଭ କରି ବର୍ତ୍ତମାନ ଗଢ଼ି ଉଠୁଥିବା ସହର ଓ କଳକାରଖାନା ଯୋଗୁ ସୃଷ୍ଟ ସମସ୍ୟା ପର୍ଯ୍ୟନ୍ତ। ସବୁ ଧାନ ଜମି ପୋତି ହୋଇ ସହର ବିସ୍ତୃତ ହେଉଛି। ଜଙ୍ଗଲ କଟାହୋଇ କଳକାରଖାନା ହେଉଛି। ଗ୍ରାମବାସୀ ଓ ଆଦିବାସୀମାନେ ବାସହରା ହୋଇପଡୁଛନ୍ତି। ଗୋଟିଏ ଆତ୍ମଘାତୀ ଶୋଭାଯାତ୍ରା ଯେମିତି ଚାଲିଛି ଚତୁର୍ଦ୍ଦିଗରେ। ଏହାର ପରିବେଷଣ ଶୈଳୀରେ ଲୋକ ନୃତ୍ୟଗୀତ ଏବଂ ଦୃଶ୍ୟରଚନା କରି ଶାରୀରିକ ସ୍ଥାପତ୍ୟ ପ୍ରୟୋଗ କରାଯାଇଛି। ମୋର 'ରାସ୍ତା ନାହିଁ' ନାଟକରେ ଚାଷୀମାନଙ୍କର କରୁଣ କାହାଣୀ ରୂପାୟିତ। ସବୁ ନାଟକ କଥା ତ କହିହେବନି। ତେବେ ସବୁଥିରେ ଅନେକ ଅନାଲୋଚିତ ସମସ୍ୟା ଉପସ୍ଥାପିତ ହୋଇଥାଏ।

ପ୍ରଶ୍ନ: ଆପଣଙ୍କ କବିତାରେ ମାନବୀୟ ଜୀବନଗାଥା ପ୍ରତିପାଦିତ ହୁଏ ।

ଉତ୍ତର. କେତେକ କବିତା ସ୍ୱତଃସ୍ଫୂର୍ତ୍ତ ଭାବେ ସୃଷ୍ଟି ହୋଇଯାଏ, ଯେତେବେଳେ ଭାବ ସହିତ ଚିତ୍ରଟିଏ ମନ ଭିତରକୁ ଆସିଯାଏ। ଆଉ କେତେକ ଭାବ ବହୁଦିନ ଧରି ମନ ଭିତରେ ଆନ୍ଦୋଳିତ ହେଉଥାଏ, କେତେବେଳେ ଏକ ଅମୃତ ଲଗ୍ନରେ ଜନ୍ମଲାଭ କରେ। ତେବେ କବିତାରେ ମୁଁ ମାନବୀୟ ଜୀବନଗାଥାକୁ ପ୍ରାଧାନ୍ୟ

ଦେଇଛି। ମୋର ଅନେକ କବିତାରେ ନିର୍ମଳ କବିତ୍ୱ ଭିତର ଦେଇ ପାଠକକୁ ଚେତନାଶୀଳ କରାଇବାରେ ପ୍ରୟାସ କରିଛି। ସବୁ ଲେଖକଙ୍କ ଏହି ଉଦ୍ଦେଶ୍ୟ ରହିବା ଉଚିତ। କାରଣ ଗୋଟିଏ କବିତା ବା ଲେଖାକୁ ପଢ଼ି ପାଠକ ଯଦି ଚେତନାଶୀଳ ନ ହୁଏ ତେବେ ତା'ର ଗୁରୁତ୍ୱ କିଛି ନାହିଁ ବୋଲି ମୁଁ ଭାବେ।

ପ୍ରଶ୍ନ: କବିତାରେ କ'ଣ ସବୁ କହି ହୁଏନି ?

ଉତ୍ତର. କବିତାରେ ମୁଁ ସବୁ କଥା କହିପାରେନି ବୋଲି ଯେତେବେଳେ ଅନୁଭବ କଲି ସେତେବେଳେ ନାଟକ ଲେଖିବା ଆରମ୍ଭ କଲି। ଭାବଜଗତରେ ଅନେକ ସମସ୍ୟା ଆଲୋଡନ ସୃଷ୍ଟି କରେ। ସେଗୁଡ଼ିକୁ ନାଟକୀୟ ଢ଼ଙ୍ଗରେ ଉପସ୍ଥାପନ କଲେ ଅଧିକ ଗ୍ରହଣୀୟ ହେବ ବୋଲି ମୁଁ ବିଚାର କରିଛି। ତେବେ ମୋ ଭିତରେ ନାଟକ ଲେଖିବା ଓ ଅଭିନୟ କରିବାର ପ୍ରବୃତ୍ତି ତ ମୂଳରୁ ଥିଲା। ସେସବୁ ରୂପାୟିତ ହେଲା ୧୯୮୦ ପରେ ନାଟକ ରଚନାରେ। ମୁଁ ଐତିହାସିକ ନାଟକ ଉପରେ ପିଏଚ୍‌ଡି କରିଛି। ନାଟକର ଉଦ୍ଭଟ ଚିନ୍ତାକୁ ନେଇ ଡିଲିଟ୍ କରିଛି। ଟ୍ରେଡିଶନାଲ ଆଧୁନିକ ସମୟ ଉପରେ ଆଲୋଚନା ଲେଖିବା ସହ ପ୍ରାଚୀନ ଓ ମଧ୍ୟଯୁଗ କବିତାକୁ ମୁଁ ନୂତନ ଦୃଷ୍ଟିକୋଣ ଦେଇଛି। ମୁଖ୍ୟତଃ ନାଟକ ଉପରେ ଗବେଷଣାତ୍ମକ ଆଲୋଚନାହିଁ ଲେଖେ। ଆଧୁନିକ ସାହିତ୍ୟରେ ବିଶେଷତଃ କବିତା ଓ ସ୍ଥିତିକୁ ମିଥ୍ ସାହାର୍ଯ୍ୟରେ ଗଭୀର ଉପଲବ୍ଧି କରିହୁଏ। ଆଧୁନିକ ମଣିଷ ତା'ର ପୁରାଣ, ଇତିହାସ ଓ ଲୋକ ପରମ୍ପରା ଭିତରେ ନିଜକୁ ଅନ୍ତରଙ୍ଗ ଭାବେ ଦେଖିପାରେ। ମୋର ଅନେକ ନାଟକରେ ସାମାଜିକ ପ୍ରତିବାଦ ଶାଣିତ। କାରଣ ଏହାର ଆବଶ୍ୟକତା ରହିଛି। ସାଧାରଣ ମଣିଷକୁ ତା'ର ଦୁଃସ୍ଥିତି ସମ୍ପର୍କରେ ସଚେତନ କରାଇ ତା' ମନରେ ଆଶାର ସଞ୍ଚାର କରିବା ହିଁ ମୋର ଲକ୍ଷ୍ୟ।

ପ୍ରଶ୍ନ: ଆମ ଦୁର୍ବଳ ଦିଗ ?

ଉତ୍ତର. ସୃଷ୍ଟିର ସ୍ୱଚ୍ଛତା ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରତ୍ୟେକ ଦିଗରେ ଉଚ୍ଚକୋଟୀର ସୃଷ୍ଟି ସମ୍ଭବ ହୋଇଛି ଏବଂ ହୋଇଚାଲିଛି। ଏଗୁଡ଼ିକ ବିଭିନ୍ନ ଭାରତୀୟ ଭାଷା ସାହିତ୍ୟର ଉତ୍କୃଷ୍ଟ ରଚନାଗୁଡ଼ିକ ସହିତ ସମକକ୍ଷ। କିନ୍ତୁ ଏଗୁଡ଼ିକ ସଂଖ୍ୟାତ୍ମକ ଭାବେ ଦୁର୍ବଳ। ସାମ୍ପ୍ରତିକ କାଳର ଉଚ୍ଚମାନର ଓଡ଼ିଆ ପୁସ୍ତକମାନ ଅନ୍ୟଭାଷାକୁ ପ୍ରାୟତଃ ଅନୁଦିତ ହୋଇପାରୁ ନାହିଁ। ଏହା ଏକ ର୍ଦୁବଳ ଦିଗ।





# କଥାଶିଳ୍ପୀ ପାଇଁ ଅଭିଜ୍ଞତାର ବିକଳ୍ପ ନାହିଁ

## ବିଭୂତି ପଟ୍ଟନାୟକ:

'ବଧୂ ନିରୁପମା', 'ନାୟିକାର ନାମ ଶ୍ରାବଣୀ' ଉପନ୍ୟାସ ନାମ ଆସିଲେ ସାହିତ୍ୟପ୍ରେମୀଙ୍କଠାରୁ ଆରମ୍ଭକରି ଅଖ୍ୟାତ ପଲ୍ଲୀରେ ରହୁଥିବା ଅଳ୍ପ ପାଠୁଆ ରମଣୀଟିଏ ମଧ୍ୟ ମନେପକାଇ ପାରିବ ବିଭୂତି ପଟ୍ଟନାୟକଙ୍କୁ। ସେ ଏଭଳି ଜଣେ ଔପନ୍ୟାସିକ ଯାହାଙ୍କ ଲେଖନୀରୁ ଜନ୍ମ ନେଇଛି ଉପରୋକ୍ତ ଦୁଇଟି ପାରିବାରିକ ଓ ସାମାଜିକ ଉପନ୍ୟାସଠାରୁ ଆରମ୍ଭ କରି 'ଘନକୁହୁଡ଼ିର ଦିନ' ଓ 'ଆକାଶ କୁସୁମ' ଭଳି ରାଜନୈତିକ ତଥା 'ସୁଲତାନା' ଓ 'ଶେଷ ରାଜିର ସୂର୍ଯ୍ୟ' ଭଳି ଐତିହାସିକ ଉପନ୍ୟାସ। ଏକାଧିକ ଉପନ୍ୟାସ ଓ ଗଳ୍ପ ସଂକଳନର ରଚୟିତା ଶ୍ରୀ ପଟ୍ଟନାୟକଙ୍କୁ ତାଙ୍କର 'ଅଶ୍ୱମେଧର ଘୋଡ଼ା' ଉପନ୍ୟାସ ପାଇଁ ମିଳିଛି ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର। ଏତଦ୍‌ବ୍ୟତିତ୍ ସାହିତ୍ୟକ୍ଷେତ୍ରକୁ ବିଶେଷ ଅବଦାନ ପାଇଁ ସେ ପାଇଛନ୍ତି ସମ୍ମାନଜନକ 'ସାରଳା ସମ୍ମାନ'। ଅଧ୍ୟାପନା ପେସାରୁ ଅବସର ନେଇଥିବା ଏହି ସ୍ରଷ୍ଟାଙ୍କର ଲେଖନୀ ଏବେ ମଧ୍ୟ ଚଳଚଞ୍ଚଳ।

ପ୍ରଶ୍ନ. ସମସ୍ୟାଧର୍ମୀ ଗଳ୍ପ, ଉପନ୍ୟାସ ଲେଖୁଥିବା ବିଭୂତି ପଟ୍ଟନାୟକ କଳ୍ପନା ନା ବାସ୍ତବତାକୁ ଗୁରୁତ୍ୱ ଦେଇଥାନ୍ତି ?

ଉତ୍ତର. ପ୍ରତିକୂଳ ପରିବେଶ ମଧ୍ୟରେ ବଞ୍ଚି ରହିବା ଲାଗି ସଂଘର୍ଷ କରୁଥିବା ମଣିଷମାନଙ୍କର ବିଭିନ୍ନ ସମସ୍ୟାକୁ ନେଇ ମୁଁ ଗଳ୍ପ, ଉପନ୍ୟାସ ଲେଖେ। ଯେଉଁମାନଙ୍କ ଜୀବନରେ ବିଭିନ୍ନ ସଂଘର୍ଷ ନାହିଁ, ସେମାନଙ୍କର କୌଣସି ସମସ୍ୟା ନାହିଁ। ସେଭଳି ଫ୍ଲାଟ୍ କ୍ୟାରେକ୍ଟରମାନଙ୍କୁ ନେଇ ମୁଁ କିଛି ଲେଖିବା ଲାଗି ନିଜ ଭିତରେ କୌଣସି ତାଡନା ଅନୁଭବ କରେ ନାହିଁ। ମୋ ଗଳ୍ପ, ଉପନ୍ୟାସ ସମସ୍ୟା ବାସ୍ତବ କିନ୍ତୁ ଚରିତ୍ର ସବୁ କାଳ୍ପନିକ, ବିନା ଖାଦରେ ଯେପରି ସୁନା ଗହଣା ଗଢ଼ା ଯାଇପ ।ରେ ନାହିଁ କଳ୍ପନାକୁ ବାଦ ଦେଇ ସେପରି ଗଳ୍ପ, ଉପନ୍ୟାସ ଲେଖାଯାଏ ନାହିଁ।

ପ୍ରଶ୍ନ. ଭାଷା, ଭାବ ଓ ଶୈଳୀର ସମନ୍ୱୟକୁ ଆପଣ କିଭଳି ଭାବେ ଦେଖିବାକୁ ଚାହାଁନ୍ତି ?

ଉତ୍ତର. ଭାଷା ଭାବର ବାହକ। ଶୈଳୀର ଶିଡ଼ି ଚଢ଼ି ଭାବ ପାଠକର ହୃଦୟରେ ପହଞ୍ଚିଥାଏ। କିନ୍ତୁ ଲେଖାରେ ଯଦି ଭାବର ଅଭାବ ଥିବ, ଭାଷା ବା ଶୈଳୀ କ'ଣ ନେଇ ପାଠକର ମନରେ ବା ହୃଦୟରେ ପହଞ୍ଚାଇବ ? ଏଇ ଭାବ, ଥିମ୍ ବା ପ୍ଲଟ ଲେଖକ ନିଜ ଅଭିଜ୍ଞତାରୁ ଆହରଣ କରେ। ଭାବବସ୍ତୁ ଯଦି ନିଜ ଅଭିଜ୍ଞତା ପ୍ରସୂତ ନୁହେଁ, ତା'ହେଲେ ସେ ଗଳ୍ପ ବା ଉପନ୍ୟାସ ଲେଖକର ମୌଳିକ ସୃଷ୍ଟି ନୁହେଁ। ସେଥିପାଇଁ ଜଣେ କଥାଶିଳ୍ପୀ ପାଇଁ ଅଭିଜ୍ଞତାର କୌଣସି ବିକଳ୍ପ ନାହିଁ। ଅଭିଜ୍ଞତା ଲବ୍ଧ ଭାବବସ୍ତୁର ଅଭାବ ଯାଦୁକରି ଭାଷା କିମ୍ବା ସାବଲୀଳ ଲିଖନ ଶୈଳୀ ଦ୍ୱାରା ପୂରଣ କରାଯାଇପାରେ ନାହିଁ।

ପ୍ରଶ୍ନ. କୁହାଯାଏ ଆପଣ ଲେଖକ ହେବାରେ ଭାଗବତର ଭୂମିକା ରହିଛି। ତାହା କେମିତି ?

ଉତ୍ତର. ହଁ, ଆମ ଘରେ ଜେଜେବାପାଙ୍କର ଗୋଟିଏ ଠାକୁର ଘର ଥିଲା। ଠାକୁର ପୂଜା କରିବାକୁ ପ୍ରତିଦିନ ଜଣେ ନନା ସନ୍ଧ୍ୟାବେଳେ ଆସୁଥିଲେ। ପ୍ରତିଦିନ ଗୋଟିଏ ଅଧ୍ୟାୟ ଭାଗବତ ପଢ଼ିବା ବିଧି ଥିଲା। ଭାଗବତ ଶୁଣିବା ପାଇଁ ଏବଂ ଛୁଆମାନେ ଉଖୁଡା ଭୋଗ ଖାଇବା ଲାଗି ଆସୁଥିବାବେଳେ, ମୁଁ ମଧ୍ୟ ଉଖୁଡା ଭୋଗ ଖାଇବା ଲାଗି ପ୍ରତିଦିନ ଭୋଗ ହେଲା ବେଳକୁ ଠାକୁର ଘରେ ପହଞ୍ଚି ଯାଉଥିଲି। ବଡଜେଜେ ବାଳକୃଷ୍ଣ ପଟ୍ଟନାୟକ ନନା ନ ଆସିଲେ

ମତେ ଭାଗବତ ବୋଲିବା କାମରେ ଲଗାଇ ଦେଉଥିଲେ। ମୁଁ ସେତେବେଳେ ଚତୁର୍ଥ ଶ୍ରେଣୀରେ ପଢୁଥିଲି। ଗୁଜ୍ଜରୀ ରାଗରେ ରଚିତ ନବାକ୍ଷରୀ ଭାଗବତ ବୋଲିବାବେଳେ ଯଦି ମୋର ସ୍ୱରଭଙ୍ଗ ହେଉଥିଲା, ଜେଜେ ଖିଙ୍କାରି ହୋଇ ଉଠୁଥିଲେ। ଠାକୁର ଘର ପିଣ୍ଡାରେ ବସି ଭାଗବତ ଶୁଣୁଥିବା ଶ୍ରୋତାମାନେ ମଧ୍ୟ 'ହେଲା ନାହିଁ', 'ହେଲା ନାହିଁ' ବୋଲି ପ୍ରତିବାଦ କରୁଥିଲେ। ଫଳରେ ମନଧ୍ୟାନ ଦେଇ ଗୁଜ୍ଜରୀ ରାଗରେ ଭାଗବତ ବୋଲିବା ମୋର ଅଭ୍ୟାସ ହୋଇ ଉଠିଥିଲା। ଭାଗବତ ଅର୍ଥ ଠିକ୍ ବୁଝି ପାରୁ ନ ଥିଲେ ମଧ୍ୟ ଜଗନ୍ନାଥ ଦାସ ବିରଚିତ ଓଡ଼ିଆ ଭାଗବତର ଶବ୍ଦ ମାଧୁର୍ଯ୍ୟ ହୋଇ ଅନ୍ତସ୍ଥଳରେ ପ୍ରବେଶ କରି ଯାଉଥିଲା। ସ୍କୁଲରୁ ଫେରିବା ରାସ୍ତାର ବହି ନ ଦେଖି ନିମ୍ନସ୍ୱରରେ ଭାଗବତ ଆବୃତ୍ତି କରିବାରେ କୌଣସି ଅସୁବିଧା ହେଉ ନଥିଲା। ଏହି ଭାଗବତ ହିଁ ମୋର ଶବ୍ଦଜ୍ଞାନ ଓ ଛନ୍ଦର ଶୃଙ୍ଖଳ ଶିକ୍ଷା ଦେଇଥିଲା। ଅଷ୍ଟମ-ନବମ ଶ୍ରେଣୀରେ ପଢ଼ିଲା ବେଳେ ମୁଁ କବିତା ଲେଖା ଆରମ୍ଭ କରିଥିଲି। ନବମ ଶ୍ରେଣୀରେ ପଢ଼ିଲାବେଳେ ମୋର ପ୍ରଥମ କବିତା 'ଆମ ଗାଁ ଟାଉଟର' 'ପ୍ରଜାତନ୍ତ୍ର' ମୀନା ବଜାରରେ ପ୍ରକାଶିତ ହେଉଥିଲା। ଏହା କୌଣସି ଭକ୍ତିମୂଳକ ପଦ୍ୟ ନୁହେଁ, ସମାଜ ଚେତନା ମୂଳକ କବିତା।

ପ୍ରଶ୍ନ. ଅପଣ ଗଳ୍ପ, ଉପନ୍ୟାସ ଲେଖୁଛନ୍ତି। ସ୍ତମ୍ଭ ମଧ୍ୟ ଲେଖୁଛନ୍ତି, କେଉଁଥିରେ ଅଧିକ ସନ୍ତୋଷଲାଭ କରନ୍ତି ?

ଉତ୍ତର. ନିଃସନ୍ଦେହରେ ଗଳ୍ପ, ଉପନ୍ୟାସ ମତେ ଅଧିକ ଆତ୍ମସନ୍ତୋଷ ଦେଇଥାଏ। ଖବରକାଗଜରେ ସ୍ତମ୍ଭ ବା କଲମ୍ ପାଠକମାନଙ୍କୁ ସନ୍ତୁଷ୍ଟ କରିବା ଲାଗି ଉଦ୍ଦିଷ୍ଟ। ଏହା ମୌଳିକ ରଚନା ନୁହେଁ, ଅନ୍ୟତ୍ର ସଂଗୃହୀତ ତଥ୍ୟ ଭିତ୍ତିକ ଗଦ୍ୟ ରଚନା। କିନ୍ତୁ ଗଳ୍ପ, ଉପନ୍ୟାସ ମୋର ନିଜସ୍ୱ ଚିନ୍ତା ଭାବନାର ସୁବର୍ଣ୍ଣ ଶସ୍ୟ। ଗୋଟିଏ ଉପନ୍ୟାସ ରଚନା ଶେଷ କଲା ପରେ କିଛି ଅତୃପ୍ତି ଯେ ନ ଥାଏ ସେ କଥା ନୁହେଁ। କିନ୍ତୁ ଏହି ଅତୃପ୍ତି ମଧ୍ୟରେ ଏଭଳି ଏକ ପରମ ତୃପ୍ତି ଥାଏ, ଯାହା ସ୍ତମ୍ଭ ରଚନାରେ ମିଳିବା ସମ୍ଭବ ନୁହେଁ।

ପ୍ରଶ୍ନ. ଲେଖାରେ ସାମାଜିକ ଅଙ୍ଗୀକାରବଦ୍ଧତର ପ୍ରତି ଆପଣ ଅଧିକ ସଚେତନ, ତାହା କିପରି ?

ଉତ୍ତର. କେବଳ ପାଠକକୁ ଆନନ୍ଦ ଦେବା ପାଇଁ ମୁଁ ଲେଖେ ନାହିଁ, ପାଠକକୁ ଶିକ୍ଷା ଦେବା ମଧ୍ୟ ମୋର ଗଳ୍ପ, ଉପନ୍ୟାସର ଲକ୍ଷ୍ୟ ନୁହେଁ। ମୁଁ ଯେଉଁ ଶ୍ରେଣୀ ବିଭକ୍ତ ସମାଜରେ ବାସ କରୁଛି, ସେ ସମାଜରେ ଅର୍ଥନୈତିକ ବୈଷମ୍ୟ

ମତେ ଯେପରି ବିଚଳିତ କରେ, ପୁରୁଷତାନ୍ତ୍ରିକ ସମାଜରେ ନାରୀ ନିର୍ଯାତନା ସେହିପରି ମୋ ଚେତନାକୁ ଆନ୍ଦୋଳିତ କରେ। ଏକ ଶ୍ରେଣୀହୀନ, ଶୋଷଣହୀନ, ସମାଜବାଦୀ ସମାଜ ଗଠନର ସ୍ୱପ୍ନ ମତେ ଏ ପରିଣତ ବୟସରେ ମଧ୍ୟ କଲମକୁ ହତିଆର ଭାବରେ ବ୍ୟବହାର କରିବା ପାଇଁ ଶକ୍ତି ଯୋଗାଏ। ସମାଜିକ ଅଙ୍ଗୀକାରବଦ୍ଧତା ହିଁ ମତେ ଲେଖକ କରିଛି। ଏହା ମୋର ଜୀବନ ଦର୍ଶନ।

ପ୍ରଶ୍ନ. ଆପଣଙ୍କ ଲେଖକୀୟ ପ୍ରାଣ କିଭଳି ଲେଖାରେ ସନ୍ତୁଷ୍ଟ ହୋଇଛି ?

ଉତ୍ତର. ଜାତିଗତ, ଲିଙ୍ଗଭେଦ, ଶ୍ରେଣୀଭେଦ ଯେପରି ମୋ ଗଳ୍ପ ଉପନ୍ୟାସର ପ୍ରଧାନ ପ୍ରସଙ୍ଗ ହୋଇଛି, ମାନବିକ ଆବେଗ-ଯଥା ପ୍ରେମ, ପରିଣୟ, ଦୁଃଖ, ଶୋକ ମଧ୍ୟ ସେହିଭଳି ମୋ ଲେଖାରେ ପ୍ରାଧାନ୍ୟ ବିସ୍ତାର କରିଛି। ଏହି ମାନବିକ ଆବେଗକୁ ଅସ୍ତ୍ର କରି ମୁଁ ଜାତିଭେଦର ପ୍ରାଚୀର, ଲିଙ୍ଗଭେଦର ପାହାଡ଼ ଏବଂ ରାଜତନ୍ତ୍ର-ସମନ୍ତତନ୍ତ୍ରର ପ୍ରାସାଦ ଭାଙ୍ଗିବାକୁ ଚେଷ୍ଟା କରିଛି। 'ଅସବର୍ଣ୍ଣ', 'ନାୟିକାର ନାମ ଶ୍ରାବଣୀ' ଏବଂ 'ଚପଳ ଛନ୍ଦା' - ଏହି ତିନି ଶ୍ରେଣୀର ଲେଖାର ଉଜ୍ଜ୍ୱଳ ପ୍ରତିନିଧି।

ପ୍ରଶ୍ନ. ଆଧୁନିକ ସମାଜରେ ସମ୍ପର୍କର ସଂଜ୍ଞା ବଦଳିଯାଉଛି, ଏ ସମ୍ପର୍କରେ ଆପଣଙ୍କ ମତ କ'ଣ ?

ଉତ୍ତର. ସମ୍ପର୍କ କହିଲେ ଯଦି ପ୍ରେମିକ-ପ୍ରେମିକା, ସ୍ୱମୀ-ସ୍ତ୍ରୀର ସମ୍ପର୍କ କଥା କହୁଥାଅ, ତାହା ହେଲେ ସମୟ ସହିତ ତାଳମେଳ ରଖି ସମ୍ପର୍କର ସଂଜ୍ଞା ବଦଳିବାକୁ ବାଧ୍ୟ। ଅର୍ଥନୈତିକ ସ୍ୱାବଲମ୍ବନଶୀଳତା ଏବଂ ଉଚ୍ଚଶିକ୍ଷା ନାରୀକୁ ନିଜ ଗୋଡରେ ଠିଆ ହେବାକୁ ସମର୍ଥ କରିଛି। ପତ୍ନୀ ଭାବରେ ସେ ଗୃହଦାସୀ କିମ୍ବା ପ୍ରେମିକା ଭାବରେ ସେ ପୁରୁଷର ଭୋଗ୍ୟପଣ୍ୟ ହେବାକୁ ଚାହେଁ ନାହିଁ। ଏହି ନବ୍ୟନାରୀ ମୋ ଅଧିକାଂଶ ଉପନ୍ୟାସର ଅଧିଷ୍ଠାତ୍ରୀ ଦେବୀ। କେବଳ ସାମାଜିକ ଉପନ୍ୟାସ ନୁହେଁ, ବାଲ୍ମୀକି ରାମାୟଣ ଉପରେ ଆଧାରିତ ସୀତା ଚରିତ୍ରକୁ ମୁଁ ମୋ କାବ୍ୟୋପନ୍ୟାସ 'ବୈଦେହୀ ବିଦ୍ରୋହ' ରେ ମଧ୍ୟ ଜଣେ ମୁକ୍ତ-ମନ, ସ୍ୱଧୀନମନସ୍କା ନାରୀ ଭାବରେ ଚିତ୍ରଣ କରିଛି।

ପ୍ରଶ୍ନ. ହାଇଟେକ୍ ଦୁନିଆରେ ଆପଣ ଏବେ ବି ସେହି ପାରିବାରିକ ସମ୍ପର୍କ ଲେଖୁଛନ୍ତି। ରାଜନୈତିକ, ସମାଜିକ ପ୍ରତିବଦ୍ଧତା ଉପରେ ଗଳ୍ପ, ଐତିହାସିକ ଗଳ୍ପ-ଉପନ୍ୟାସ ଲେଖୁନାହାଁନ୍ତି କାହିଁକି ?

ଉତ୍ତର. ହାଇଟେକ୍ ବା ପ୍ରଯୁକ୍ତି ନିର୍ଭର ସମାଜରେ ଗଳ୍ପ ଉପନ୍ୟାସ ଟେକ୍‌ନିକ୍ ମଧ୍ୟ ବଦଳିଯାଇଛି। ଆଗେ ଯେପରି ଉପନ୍ୟାସରେ ଭାବବ୍ୟକ୍ତ କରିବା ଲାଗି ନାୟକ-ନାୟିକା 'ବିନୟପତର' ଲେଖୁଥିଲେ, ଏ ମୋବାଇଲ୍ ଫୋନ୍ ଯୁଗରେ ଉପନ୍ୟାସରେ ସେ ପତ୍ର ଲିଖନ ଆଉ ନାହିଁ। ମହାକାଳ ବର୍ତ୍ତମାନ ମୁହୂର୍ତ୍ତରେ ରୂପାନ୍ତରିତ। ସମାଜିକ ଏବଂ ସମସ୍ୟା କଣ୍ଟକିତ ପାରିବାରିକ ଉପନ୍ୟାସରେ ଏହି ନୂତନ ଟେକନିକ୍ ବ୍ୟବହାର କରିବା ଫଳରେ ଏହା ପାଠକୀୟ ଆକର୍ଷଣ ହରାଇ ନାହିଁ। 'ବଧୂ ନିରୁପମା', 'ନାୟିକାର ନାମ ଶ୍ରାବଣୀ' ଏହାର ଜ୍ୱଳନ୍ତ ଉଦାହରଣ।

ଏହାର ଅର୍ଥ ନୁହେଁ ଯେ ରାଜନୈତିକ ଉପନ୍ୟାସ ଲେଖିନାହିଁ ବା ଲେଖୁନାହିଁ। 'ଘନ କୁହୁଡ଼ିର ଦିନ'ଠାରୁ ଆରମ୍ଭ କରି 'ଆକାଶ କୁସୁମ' ପର୍ଯ୍ୟନ୍ତ ବହୁ ବାମପନ୍ଥୀ ଭାବାପନ୍ନ ରାଜନୈତିକ ଉପନ୍ୟାସ ମତେ ମୋର ସମକାଳୀନ ଔପନ୍ୟାସିକମାନଙ୍କଠାରୁ ଅଲଗା କରି ଚିହ୍ନାଇ ଦେଇଛି। ସଂଖ୍ୟାରେ ସ୍ୱଳ୍ପ ହେଲେ ମଧ୍ୟ 'ସୁଲତାନା', 'ଶେଷ ରାତିର ସୂର୍ଯ୍ୟ' ଭଳି ଐତିହାସିକ ଉପନ୍ୟାସ ମୋର ସ୍ମରଣୀୟ ସୃଷ୍ଟି ଭାବରେ ବିବେଚିତ ହୋଇଛି।





# ଲେଖକ ଉନ୍ମୁକ୍ତ ଭାବେ ଲେଖୁ

## ଦିନନାଥ ପାଠୀ:

ଦିନନାଥ ପାଠୀ ଏକାଧାରରେ ଜଣେ ଚିତ୍ରଶିଳ୍ପୀ କଳା, ଐତିହାସିକ ଓ ଲେଖକ। ଚିତ୍ର ମାଧ୍ୟମରେ ମନର ସମସ୍ତ ଭାବନାକୁ ସମ୍ପୂର୍ଣ୍ଣ ଭାବେ ଉନ୍ମୁକ୍ତ କରିବା ଯଥେଷ୍ଟ ନୁହେଁ ବୋଲି ଉପଲବ୍ଧ ଲେଖନୀ ଧରିଲେ ସେ। ତାଙ୍କ ମତରେ ଲେଖକ ଉନ୍ମୁକ୍ତ ଭାବେ ଲେଖନୀ ଚାଳନା କରିବା ଆବଶ୍ୟକ। ଦିନନାଥଙ୍କ ସହ ହୋଇଥିବା ଆଳାପର କିୟଦଂଶ...

ପ୍ରଶ୍ନ: ଆପଣ ଜଣେ ଚିତ୍ରଶିଳ୍ପୀ, ସାହିତ୍ୟର ଆବଶ୍ୟକତା ଅନୁଭବ କଲେ କେମିତି ?

ଉତ୍ତର. ମୁଁ ପିଲାଦିନରୁ ଚିତ୍ର କରୁଥିଲି। ଚିତ୍ରମୋର ଏବଂ ଆମ ସମଗ୍ର ପରିବାରର ଜୀବିକା ଥିଲା। କିନ୍ତୁ ସମୟ ଅନୁଯାୟୀ ଦେଖିଲି ଚିତ୍ରରେ ସବୁକଥା କହି ହେଉନାହିଁ। ଏଣୁ ଭାବିଲି ମୋ ଅନୁଭୂତି ଲେଖନୀ ସାହାଯ୍ୟରେ ବ୍ୟକ୍ତ କରିବି। ଚିତ୍ରକଳା ଉପରେ ପ୍ରବନ୍ଧ 'ଚିୟତେ ଇତି' ଲେଖିଲି। ଚିତ୍ରକଳାର ବିଭିନ୍ନ ବିଭାଗ ଏହି ବହିରେ ଆଲୋଚିତ ହୋଇଛି। ଯେପରି ଆଧୁନିକ ଚିତ୍ରକଳା, ସମାଜ ସହିତ ଚିତ୍ରକଳାର ସଂପର୍କ, ଚାଇନିଜ୍ ଚିତ୍ରକଳା, ଚିତ୍ରର ସାହିତ୍ୟ ସହିତ ସମ୍ପର୍କ ଇତ୍ୟାଦି। ପାଠକ ସହଜରେ ଚିତ୍ରଭାଷାକୁ ଆଦରି ପାରେନାହିଁ। ତା'ପାଇଁ ସାହିତ୍ୟର ଭାଷା ଅଧିକ ବୋଧଗମ୍ୟ ହୋଇଥାଏ। ଚିତ୍ରକଳା ମଧ୍ୟ ସାହିତ୍ୟରେ ବଞ୍ଚେ ଓ ପ୍ରସାରିତ ହୁଏ ମଧ୍ୟ।

ପ୍ରଶ୍ନ: ପ୍ରଥମେ ପ୍ରବନ୍ଧ ଲେଖି ଆଜି କବିତା ଓଭିଗା ଲେଖିଲେଣି ?

ଉତ୍ତର. ମୋ ପ୍ରବନ୍ଧ ଭିତରେ ବି କାବ୍ୟିକତା ରହୁଛି, ଅନ୍ତର୍ଛନ୍ଦ ରହୁଛି। ଅନେକ ବନ୍ଧୁ ମଧ୍ୟ ମୋତେ ଏ କଥା ସଚେତନ କରିଦେଲେ। ମୋ ପରିବାରରୁ ମୋ ବାପା, ବଡଭାଇ, ଗୋସେଇଁବାପା କବିତା ଲେଖୁଥିଲେ। ହୁଏତ ପରିବାରର ସେହି କଳାଟି ସ୍ୱତଃପ୍ରବୃତ ଭାବେ ମୋ ଭିତରେ ଦେଖାଦେଇଛି।

ପ୍ରଶ୍ନ: ଆପଣ ଚିତ୍ର କରନ୍ତି, ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, କବିତା, ଆତ୍ମଜୀବନୀ ଲେଖିଛନ୍ତି। କେଉଁଥିରେ ନିଜକୁ ମୁକ୍ତ କରିପାରିଛନ୍ତି ?

ଉତ୍ତର. ନିଜକୁ ମୁକ୍ତ କରିବା ଲେଖକର ଦମ୍ଭ ଉପରେ ନିର୍ଭର କରେ। ସାହିତ୍ୟର ସବୁ ବିଭାଗରେ ନିଜ କଥା କହିହେବ। ନିଜକୁ ପ୍ରକାଶ କରିହେବ। ଅବଶ୍ୟ ଆତ୍ମ ଜୀବନୀରେ ଲେଖକ ପାଠକ ଆଗରେ ନିଜକୁ ସଂପୂର୍ଣ୍ଣଭାବେ ବ୍ୟକ୍ତ କରେ। ଯଦି ଲେଖା ସତ୍ୟନିଷ୍ଠ ହୋଇଥାଏ ।

ପ୍ରଶ୍ନ: ଆପଣ କ'ଣ ଜୀବନର ସବୁ ସତକଥା ଆତ୍ମଜୀବନୀରେ ଲେଖିଛନ୍ତି ?

ଉତ୍ତର. ହଁ, ସବୁକଥା ସତ ଲେଖିଛି। ମୋ ଜୀବନରେ ଏତେ କଥା ରହିଛି, ଘଟିଛି ଯେ, ଆହୁରି ଲେଖିବାକୁ ହେବ, ବହୁତ ବାକି ରହିଯାଇଛି ଭଳି ମନେ ହେଉଛି। ମୋର ୫ଟି ଆତ୍ମଜୀବନୀ ଦିଗପହଣ୍ଡିର ଡ୍ରଇଂମାଷ୍ଟ୍ରେ, ପୁଞ୍ଜିକିୟାର ଫକିର, ଚିଲିକା ପାଣିରେ ଛାଇ, ରୂପଜୀବୀର ଡାଏରୀ ଓ କଲେଜଟିଏ ଗଢ଼ିବାର ବେଳ ପ୍ରକାଶ ପାଇସାରିଛି। ଆଉ ୨ଟି ପ୍ରକାଶ ପାଇବାର ଯୋଜନା ଅଛି।

ପ୍ରଶ୍ନ: ଅପଣଙ୍କ ଜୀବନର ଗୋଟିଏ ଦୁଃଖାବହ ଘଟଣା ?

ଉତ୍ତର. ମୋତେ ସେତେବେଳକୁ ୧୬ ବର୍ଷ ବୟସ । ଦଶହରା ସମୟ । ସେତେବେଳକୁ ଗାଡି ମଟରକୁ ସଜେଇବା ଆବଶ୍ୟକ ହେଉଥିଲା । ମୁଁ ଆମ ଗାଁଆ ପାଖ ପୋଡାମାରି ଗାଆଁକୁ ବସ୍ ସଜେଇବାକୁ ଯାଇଥିଲି । ତା'ରି ମାଧ୍ୟମରେ ରୋଜଗାର କରିବାର ଥିଲା, ଯାହା ଆଣି ମୁଁ ଘରେ ବାପାଙ୍କୁ ଦେଇଥାନ୍ତି । ମୁଁ ଘରକୁ ଫେରିବାବେଳକୁ ବାପା ଚାଲିଯାଇଥିଲେ । ମୁଁ ଘରେ ସାନ । ଏଣୁ କେହି ମୋତେ ଆଉ ଅପେକ୍ଷା କରିନାହାନ୍ତି, ମୋ ବାପାଙ୍କ ଦାହ କାର୍ଯ୍ୟ ସମାପ୍ତ କରିଦେଇଛନ୍ତି । ମୋତେ ମୋ ବାପା ବହୁତ ଭଲ ପାଉଥିଲେ କିନ୍ତୁ ଶେଷ ବେଳକୁ ଟିକେ ତାଙ୍କୁ ଦେଖି ପାରିଲିନାହିଁ । ଏହି ଅଭାବଟି ଆଜିବି ମୋ ସହ ରହିଛି ଯାହା କି ମୋତେ ଖୁବ୍ କଷ୍ଟ ଦେଉଛି ।

ପ୍ରଶ୍ନ: ବର୍ତ୍ତମାନ ଓଡ଼ିଆ ସାହିତ୍ୟରେ କେଉଁ ଆବଶ୍ୟକତା ରହିଛି ଭାବୁଛନ୍ତି ?

ଉତ୍ତର. ବୌଦ୍ଧିକ ଚେତନାର ଉନ୍ନତି ପାଇଁ, ଐତିହ୍ୟ ଓ ପରମ୍ପରାର ବିକାଶ ପାଇଁ ଓଡ଼ିଆ ସାହିତ୍ୟରେ ଏ ଯାଏ ବିଶେଷ କିଛି ଲେଖାଯାଇ ନାହିଁ । ଏପରି କି ଆମ ଜଗନ୍ନାଥ ସଂସ୍କୃତି ଏତେ ବଳିଷ୍ଠ ଏବଂ ସମୃଦ୍ଧ, ମାତ୍ର ଆମ ସାହିତ୍ୟ ମାଧ୍ୟମରେ ଏହାର ଉପଯୁକ୍ତ ପ୍ରଚାର ପ୍ରସାର ହୋଇପାରୁନାହିଁ । ଏବେ ଯେଉଁମାନେ ଲେଖୁଛନ୍ତି ହୁଏତ ଠିକ୍ ଲେଖୁଛନ୍ତି ମନୋରଞ୍ଜନଧର୍ମୀ ସାହିତ୍ୟ । କିନ୍ତୁ ଗବେଷଣା ସାହିତ୍ୟ ଦିଗଟି ଅବହେଳିତ ହୋଇ ରହିଯାଇଛି ।

ପ୍ରଶ୍ନ: ଶୃଙ୍ଗାର ରସକୁ ସାହିତ୍ୟ ଓ ଚିତ୍ରରେ ଶ୍ରେଷ୍ଠତା ଦିଆଯାଉଛି । କିନ୍ତୁ ଆଜି ଏହାକୁ ଅଶ୍ଳୀଳତା କୁହାଯାଉଛି, ଆପଣ କ'ଣ କହିବେ ?

ଉତ୍ତର. ଶ୍ଳୀଳ-ଅଶ୍ଳୀଳ (ସେକ୍ରେଡ୍ ଓ ପ୍ରୋଫେନ୍ ବିଚାର ଇଂଲିଶ ସାହିତ୍ୟ ମାଧ୍ୟମରେ ଆମପାଖରେ ପହଞ୍ଚିଛି । ଆମ ପରମ୍ପରାରେ ଏଭଳି ବିଚାର ଆଗରୁ କେବେ ନ ଥିଲା । ତାହା ଯଦି ହୋଇଥାନ୍ତା ତା' ହେଲେ ଆମେ କୋଣାର୍କ ମନ୍ଦିରକୁ ଆଠଶହ ବର୍ଷ ଧରି ଶ୍ରେଷ୍ଠ କଳାକୃତି ବୋଲି କହୁ ନ ଥାନ୍ତେ ବା ଗୀତଗୋବିନ୍ଦକୁ ଶ୍ରେଷ୍ଠ ରସାତ୍ମକ କାବ୍ୟ କହୁ ନ ଥାନ୍ତେ । ଆମ ପରମ୍ପରାରେ ଇଂଳଲିଶ ଶବ୍ଦ ନେକେଡ ବା ନ୍ୟୁଡ୍ ଭିତରେ ଫରକ ନ ଥିଲା । ଇଂଲିଶ ସାହିତ୍ୟରେ ବା ପାଶ୍ଚାତ୍ୟ କଳାରେ ନଗ୍ନ ବା ନେକେଡ୍ ନୂଆ କଥା ନୁହେଁ । ନ୍ୟୁଡ ହେଉଛି ଦେହର ଭଙ୍ଗିମା ଓ ସମ୍ବେଦନ । ଏଣୁ ତାହା କୌଣସି ସାହିତ୍ୟରେ ଅଶ୍ଳୀଳ ବୋଲି ବିବେଚନା କରାଯାଉ ନାହିଁ । ଏସବୁ ଭିତରେ

ରୁଚି ଏବଂ ମର୍ଯଦା ହେଉଛି ସବୁଠୁ ଗୁରୁତ୍ୱପୂର୍ଣ୍ଣ କଥା । ଏବଂ ଏହା ସମାଜରେ କେତେ ଯାଏଁ ଗ୍ରହଣୀୟ ତା'ର ବିଚାର ରାଜନୈତିକ, କଳାତ୍ମକ ନୁହେଁ। ଏଣୁ ଶ୍ଳୀଳ-ଅଶ୍ଳୀଳ ବିଚାର ଅନାବଶ୍ୟକ।

ପ୍ରଶ୍ନ: 'ରୂପ, ରଙ୍ଗ, ଅନଙ୍ଗ' ଉପନ୍ୟାସରେ ଆପଣ ନିଜେ ମୁଖ୍ୟ ଚରିତ୍ରରେ ଅବତୀର୍ଣ୍ଣ ହୋଇଛନ୍ତି, ଏ ସମ୍ପର୍କରେ କ'ଣ କହିବେ ?

ଉତ୍ତର. ହଁ, ତାହା କୁହାଯାଇପାରେ। ଅଥଚ ନିଜକଥା କହିବା ପାଇଁ, ନିଜ ପ୍ରତ୍ୟକ୍ଷ ଓ ପରୋକ୍ଷ ଅନୁଭବକୁ ବ୍ୟକ୍ତ କରିବା ପାଇଁ ଯେଉଁ ଶବ୍ଦଗୁଡ଼ିକ ବ୍ୟବହାର କଲେ ସମାଜ ମୋତେ ବାସନ୍ଦ କରିବ ସେଭଳି ଅନେକ ଶବ୍ଦ ବ୍ୟବହାର କରିବାକୁ ଚାହିଁ ମଧ୍ୟ ମୁଁ ସେଠି ବ୍ୟବହାର କଲି ନାହିଁ। କାରଣ ସେହି ଶବ୍ଦ ବ୍ୟବହାର କଲେ ଆମ ଲୋକ ତାକୁ ସହଜରେ ଗ୍ରହଣ କରିପାରିବେ ନାହିଁ। ସମାଜରେ ଆମର ସ୍ଥିତିକୁ ବଜାୟ ରଖିବା ପାଇଁ ଦୃଷ୍ଟିରୁ ଆମେ ଅନେକ କଥା କହୁ ଆଉ କହୁନାହୁଁ ମଧ୍ୟ। କିନ୍ତୁ ଉପଲକ୍ଷ୍ୟରେ ସେହିସବୁ କୁହାଯାଇପାରେ। ରୂପ, ରଙ୍ଗ, ଅନଙ୍ଗରେ ତାହା ହିଁ କରାଯାଇଛି।

ପ୍ରଶ୍ନ: ଆପଣଙ୍କ 'ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ' ବହୁତ ଲୋକପ୍ରିୟ/କାରଣ କ'ଣ ବୋଲି ଭାବୁଛନ୍ତି ?

ଉତ୍ତର. 'ଦିଗପହଣ୍ଡିର ଡ୍ରଇଂମାଷ୍ଟ୍ରେ'ରେ ମୁଁ ନିଜେ ନିଜକଥା କମ୍ କହି ଗାଁ କଥା ଅଧିକ କହିଛି ଯେଉଁଠି ପାଠକ ନିଜକୁ ଅଧିକ ପାଇପାରୁଛନ୍ତି ଏବଂ ନିଜେ ସେହି ବିଷୟବସ୍ତୁର କଥନିକା ଭିତରେ ଗୋଟିଏ ଚରିତ୍ର ଭାବେ ଚିହ୍ନିତ ହୋଇଯାଉଛି, ପାଠକର ଆତ୍ମପ୍ରତ୍ୟୟ ବଢ଼ିଯାଉଛି। ଏଣୁ ପାଠକ ଏହାକୁ ବେଶି ଭଲପାଇଲେ। ମୋ ପାଇଁ ଚିତ୍ର-ସାହିତ୍ୟ-ଗବେଷଣା ଗୋଟିଏ ସୃଜନ ଶକ୍ତିର ଉତ୍ସ ଯାହା ମୋର ସବୁ ପୁସ୍ତକରେ ସନ୍ନିହିତ।

ପ୍ରଶ୍ନ: ସାହିତ୍ୟ ମାଧ୍ୟମରେ କେଉଁ ବାର୍ତ୍ତାଟି ସମସ୍ତଙ୍କ ପାଖକୁ ଯାଉ ବୋଲି ଆପଣ କହିବେ ?

ଉତ୍ତର. ବାର୍ତ୍ତା ଦେବା ସାହିତ୍ୟର କାମ ନୁହେଁ। ସାହିତ୍ୟପାଠ କଲେ ବ୍ୟକ୍ତି ବାହ୍ୟ ଓ ଅନ୍ତର୍ଜଗତକୁ ନେଇ ସଚେତନ ହୁଏ। ଅହରହ ପରିବର୍ତ୍ତନ ଲାଗିରହିଛି। ଏହି ପରିବର୍ତ୍ତନ କେବଳ ସମାଜର ବାହ୍ୟରୂପକୁ ବଦଳାଇ ଦେଉନାହିଁ । ତାର ମୂଲ୍ୟବୋଧକୁ ମଧ୍ୟ ପରିବତର୍ତନ କରିଦେଉଛି। ସାହିତ୍ୟର ସଂଜ୍ଞା ମଧ୍ୟ

ବଦଳିଲାଣଇ।ଏସବୁ ପରିବର୍ତ୍ତନ ମଧ୍ୟରେ ଯେଉଁଟି ମୂଳ ତାକୁ ଆଧାର କରି ଆଗେଇବାକୁ ପଡେ। ସାହିତ୍ୟିକ ଏବଂ ଚିତ୍ରଶିଳ୍ପୀ ହିଁ ପରିବର୍ତ୍ତନର କାରଣ ହୋଇଯାଏ।





# ଉପନ୍ୟାସ ଓ ଗଳ୍ପ ଗୋଟିଏ ପରିପ୍ରକାଶ, ବିନ୍ୟାସ ପୃଥକ

## ରାମଚନ୍ଦ୍ର ବେହେରା:

'ଗଳ୍ପରେ ମୋର ପ୍ରଚୁର ପ୍ରସିଦ୍ଧି ଅଛି - ଏ କଥା କାହିଁ ମୋର ବିଶ୍ୱାସ ଆସୁନି।' ଏ ଭଳି ନମ୍ର ମତ ରଖନ୍ତି ଓଡ଼ିଆ ସହିତ୍ୟର ଅନ୍ୟତମ ସୁନାମଧନ୍ୟ କଥାକାର ରାମଚନ୍ଦ୍ର ବେହେରା। ଗଳ୍ପ, ଉପନ୍ୟାସକୁ ମିଶାଇ ଏକାଧିକ ପୁସ୍ତକର ସ୍ରଷ୍ଟା ରାମଚନ୍ଦ୍ର ବେହେରା। ତାଙ୍କ ରଚିତ ପୁସ୍ତକଗୁଡିକ ମଧ୍ୟରୁ 'ଚିହ୍ନା ଅଚିହ୍ନା', 'ବଟ ବୈକୁଣ୍ଠ', 'ମରୀଚିକାର ମହକ', 'ବଡ଼ ମାୟାବୀ ଜୀବ' ଓ 'ନିଖୋଜ ଅପରାଧୀ' ବହୁ ଚର୍ଚ୍ଚିତ। ପ୍ରେମ ଓ ଯୌନତା ବିହୀନ ନିରୁତା ସାହିତ୍ୟ ସୃଷ୍ଟି କରୁଥିବା ଏହି କଥାକାରଙ୍କ ସହ ଆଳାପର କିୟଦଂଶ...

ପ୍ରଶ୍ନ. ଆପଣଙ୍କ ଗଳ୍ପରେ ବୌଦ୍ଧିକତା ଓ ଦର୍ଶନର ପ୍ରତିଫଳନ ଘଟିଥାଏ। ପ୍ରକୃତରେ ଆପଣଙ୍କ ସଫଳତାର ଚାବିକାଠି କାହା ଉପରେ ନିର୍ଭରଶୀଳ ?

ଉତ୍ତର. ମୋ ରଚିତ, 'ଶୋଷ' ଗଳ୍ପଟି ଜାଲରେ ପଡିଥିବା ଏକ କଇଁଚକୁ ନେଇ ଏକ ପ୍ରତୀକାତ୍ମକ ସୃଷ୍ଟି। ବଞ୍ଚିରହିବା ଜନିତ ବ୍ୟାକୁଳତା ଓ ସଂଘର୍ଷ ଏ ଗପରେ ପ୍ରତିଫଳିତ। 'ପିଞ୍ଜରା' ଗପରେ ମଣିଷର ନିଷ୍ଠୁରତା ଓ ହୃଦୟହୀନତା ପରିବେଷ୍ଟିତ। ପିଞ୍ଜରାରୁ ବାହାରି ଯାଇଥିବା ଦୁର୍ବଳ ସିଂହଟି ଚିଡ଼ିଆଖାନା ପରିସରରେ ଭୟର ବାତାବରଣ ସୃଷ୍ଟି କରି ପୁନର୍ବାର ପିଞ୍ଜରାକୁ ଫେରିଆସିଲା ବେଳେ ଗୁଳିବିଦ୍ଧ ହୋଇ ପ୍ରାଣ ହରାଇଛି। 'ଅସମାହିତ' ଗଳ୍ପ ଦୁଇଟି କୁକୁର ଛୁଆକୁ କେନ୍ଦ୍ରକରି ବଞ୍ଚିରହିବା ଜନିତ ଯନ୍ତ୍ରଣା ଓ ସଂଘର୍ଷକୁ ପ୍ରକାଶ କରେ। ଆତ୍ମଗଛର ଶୀର୍ଷରୁ ଚଢ଼େଇର ଅଣ୍ଡା ନେଇ ଆସିଥିବା କିଶୋରର ମାନସିକତା, ମା' ଚଢ଼େଇର ବ୍ୟାକୁଳତାକୁ ଭିତ୍ତିକରି ଏକ ପ୍ରତୀକାତ୍ମକ ଗଳ୍ପ । 'ଅସ୍ଥାୟୀ ଠିକଣା' ଗଳ୍ପଟି ଗୋଟିଏ ଦମ୍ପତିଙ୍କର ଛିନ୍ନମୂଳ ଜୀବନଯାପନ ଓ କ୍ରମାଗତ ଅସହାୟତାକୁ ନେଇ ରଚିତ। ଏଇସବୁ ଗଳ୍ପ ଭିତରେ ରହିଛି ଗଭୀର ବୌଦ୍ଧିକତା ଓ ଦାର୍ଶନିକତା। ସାଧାରଣ ପାଠକଙ୍କ ପାଇଁ ଏସବୁ ଗଳ୍ପ ଆଦୌ ସହଜଗମ୍ୟ ନୁହେଁ। ଏ ସବୁ ଗଳ୍ପ ଭିତରୁ ପାଠକ ଭିନ୍ନ ଭିନ୍ନ ଅର୍ଥ ଅନ୍ୱେଷଣ କରିଥାନ୍ତି।

ପ୍ରଶ୍ନ. ଜୀବନକୁ ଆପଣ କେଉଁ ଭଳି ଦେଖନ୍ତି ?

ଉତ୍ତର. ସମୟ ଅନୁସାରେ ଜୀବନକୁ ଭିନ୍ନ ଭିନ୍ନ ଦୃଷ୍ଟିରେ ଦେଖିବାକୁ ପଡେ। ଯେତେବେଳେ ଯୁବକ ଥିଲି, ନୂଆ ନୂଆ ଲେଖୁଥିଲି ସେତେବେଳେ ନିଃସଙ୍ଗତା, ପରାଜୟ, ନୈରାଶ୍ୟ ଏଗୁଡିକ ହିଁ ମୋ ଦୃଷ୍ଟିରେ ଉପାଦାନ ଥିଲା। ସମୟକ୍ରମେ ମୁଁ ବୁଝୁଛି ଏ ସବୁ ଆହୁରି ବେଶି ଗଭୀର ଏବଂ ଗରୀୟାନ। ଜୀବନକାଳରେ ପ୍ରତିବନ୍ଧକ ଆସିବ ଏବଂ ତାକୁ ଅତିକ୍ରମ କରିବା ପାଇଁ ନିରନ୍ତର ଉଦ୍ୟମ ଜାରି ରହିବ। ପ୍ରତିବନ୍ଧକକୁ ଦୂର କରି ତିଷ୍ଠି ରହିବାର ବ୍ୟାକୁଳତା ହିଁ ବଞ୍ଚି ରହିବା। ସେଥିପାଇଁ ଏବେ ମୁଁ ବୁଝୁଛି ସବୁ ସଫଳତା ସତ୍ତ୍ୱେ ମୋର ସାମର୍ଥ୍ୟ ପରେ ଯାହା ମୋତେ ମିଳିଲା ଯଥେଷ୍ଟ। ସେଥିପାଇଁ ହାଇଁ ପାଇଁ ହେବାର ନାହିଁ।

ପ୍ରଶ୍ନ. ଆପଣଙ୍କ 'ଦ୍ୱିତୀୟ ଶ୍ମଶାନ'ରେ ଅଧିକ କାବ୍ୟିକତାର ପରିପ୍ରକାଶ ଘଟିଛି। ଗଳ୍ପରେ ଏହି କାବ୍ୟିକ ଛାପ କିପରି ?

ଉତ୍ତର. ମୋ ଗଳ୍ପରେ କାବ୍ୟିକ ଭାବକୁ ମୁଁ ଜାଣିଶୁଣି ଖଞ୍ଜି ନାହିଁ। ମୋ ଧାରଣା କାବ୍ୟିକ ଯେତେବେଳେ ଅତି ତିବ୍ର ହୁଏ ସୃଜନଶୀଳତାର ଚାପ

ଯେତେବେଳେ ଅଧିକ ହୁଏ ଲେଖନୀ ସେତେବେଳେ ଅଧିକ ସାନ୍ଦ୍ର, ତୀବ୍ର ହେବାକୁ ବାଧ୍ୟ। ସେତେବେଳେ ଦୀର୍ଘ ବର୍ଣ୍ଣନା ନୁହେଁ ଅଳ୍ପରେ ସେହି ଶାଣିତ ବକ୍ତବ୍ୟ ଜରିଆରେ ଜଣେ ଲେଖକ କହେ ତାହାକୁ ବୋଧେ କାବ୍ୟିକତା ବୋଲି ଆପଣ କହୁଛନ୍ତି। କହିବାର ଦ୍ୱିଧା ନାହିଁ ଯେ ମୋର ଅନେକ ପାଠକ ମୋତେ ଜଣେ କବି ବୋଲି କହନ୍ତି।

ପ୍ରଶ୍ନ. ଆପଣ ଅନେକ ଗଳ୍ପରେ ଚରିତ୍ରମାନଙ୍କୁ କନ୍ଦାଇଛନ୍ତି କାହିଁକି ?

ଉତ୍ତର. ଚରିତ୍ରମାନଙ୍କୁ ମୁଁ କନ୍ଦାଏନି ସେମାନେ କାନ୍ଦନ୍ତି। ଚରିତ୍ରମାନେ ଯଦି ସେହି ପ୍ରକାରର କୌଣସି ପରିସ୍ଥିତିରେ ପଡି ତାଙ୍କର ମାନସିକତା, ତାଙ୍କର ଦୃଷ୍ଟିଭଙ୍ଗୀ, ତାଙ୍କର ପରିପୂର୍ଣ୍ଣତା ପାଇଁ ଯେଉଁ ବ୍ୟାକୁଳତା ଏ ସବୁର ପରିପନ୍ଥୀ ହୁଏ ତାହା ହେଲେ ଅଶ୍ରୁପାତ ଅନିବାର୍ଯ୍ୟ ହୋଇପଡେ। ଦୁଃଖ, ପରାଜୟ, ନୈରାଶ୍ୟ ଇତ୍ୟାଦିକୁ ମୁଁ ବାରମ୍ବାର ଅଙ୍ଗେ ନିଭେଇଛି। ସେଥିପାଇଁ ମୋର ଅନେକ ଚରିତ୍ର ଆଶ୍ରୁପାତ କରନ୍ତି। ମୋର ଏମିତି ମଧ୍ୟ ଗଳ୍ପ ଅଛି, ଯେଉଁଠି ଅଶ୍ରୁପାତ ଏକ ଦିବ୍ୟ ଅନୁଭୂତି ଭାବରେ ଉପସ୍ଥାପିତ ହୋଇଛି।

ପ୍ରଶ୍ନ. ଆପଣଙ୍କ ସାହିତ୍ୟ ପ୍ରେମ ଓ ଯୌନତା ପ୍ରତି ବିମୁଖ କାହିଁକି ?

ଉତ୍ତର. ପ୍ରେମ ଏବଂ ଯୌନତା ବିହୀନ ମୋ କଥା ସାହିତ୍ୟକୁ ଆପଣ ସଫଳ ବୋଲି କହୁଛନ୍ତି। ଏହାର ଅର୍ଥ ହେଉଛି ଜୀବନ କେବଳ ପ୍ରେମ ଏବଂ ଯୌନତା ଆଦୌ ନୁହେଁ ତା'ଠାରୁ ଆହୁରି ବିଶାଳ। ମୁଁ ସ୍ୱୀକାର କରେ ଯେ ଜୀବନର ସବୁଠାରୁ ଶକ୍ତିଶାଳୀ ଆବେଗପୂର୍ଣ୍ଣ ଅନୁଭୂତି ହେଉଛି ପ୍ରେମ। ମୋର ଏପରି ଅନୁଭୂତି ନାହିଁ। ଦ୍ୱିତୀୟତଃ ପାଠକମାନଙ୍କୁ କେବଳ ଉତ୍ତେଜିତ କରିବା ପାଇଁ ଯୌନତାକୁ ପରିବେଷଣ କରାଯିବ ନା ଭାବବସ୍ତୁ ଚାବି ଅନୁଯାୟୀ ଏହାକୁ ସଂଯୋଜିତ କରାଯିବ। ମୋ ଜାଣିବାରେ ଯୌନତାକୁ ମଧ୍ୟ ଅତ୍ୟନ୍ତ ସଂଯତ ଭାବରେ ପରିବେଷଣ କରାଯାଇପାରିବ। କେତୋଟି ସୂଚନାଧର୍ମୀ ବାକ୍ୟ ଯଥେଷ୍ଟ ହେବ ଏଥିପାଇଁ। ମୋ କଥା ସାହିତ୍ୟରେ ଏ ସବୁ ନାହିଁ। କାହିଁକି ନା ଏହାର ଅବତାରଣା ପାଇଁ ମୋ କଥା ସାହିତ୍ୟରେ ପରିସର ନ ଥାଏ।

ପ୍ରଶ୍ନ. ଦର୍ଶନ ସୁଲଭ ବକ୍ତବ୍ୟର ଅବତାରଣା କେଉଁଠି କେମିତି ଆପଣଙ୍କ ଗପରେ କ୍ଷତି ଘଟାଇଛି। ଏ ସମ୍ପର୍କରେ ଆପଣଙ୍କର ମତ କ'ଣ ?

ଉତ୍ତର. ହଁ, ଏଥିପ୍ରତି ମୁଁ ସଚେତନ। କୌଣସି ଚରିତ୍ର ବା ଘଟଣା ମୋତେ ଅଭିଭୂତ କଲେ ମୁଁ ତା' ମଧ୍ୟରେ ଥିବା ବିଶେଷତ୍ୱକୁ ଚିହ୍ନଟ କରେ। ମୋର ଅର୍ନ୍ତଦୃଷ୍ଟି

ଓ ବୌଦ୍ଧିକତା ସେଥିରେ ନିହିତ ଥିବା ଦାର୍ଶନିକତା ସମ୍ପର୍କରେ ମୋତେ ସଚେତନ କରାଏ। ଏହାର ଅର୍ଥ ହେଉଛି ଏ ପ୍ରକାର ଗପରୁ ଏହି ଦାର୍ଶନିକତା ସ୍ୱତଃ ଉତୁରି ଆସେ। କିନ୍ତୁ କେତେକ କ୍ଷେତ୍ରରେ ମୁଁ ଏହି ଦାର୍ଶନିକତା କଥା ପ୍ରଥମେ ଚିନ୍ତା କରେ। ଏହାର ପରିବେଷଣ ପାଇଁ ଚରିତ୍ର/ପରିସ୍ଥିତି ସୃଷ୍ଟି କରେ। ଏ ପ୍ରକାର ଗପ ବିଫଳ ହୋଇପଡନ୍ତି। ଏ ପ୍ରକାର କିଛି ଗପ ବିଶେଷତଃ ମୁଁ ଲେଖକୀୟ ଜୀବନର ଆଦ୍ୟ ଭାଗରେ ଲେଖିବାର ମନେଅଛି।

ପ୍ରଶ୍ନ. କେଉଁ ଲକ୍ଷ୍ୟ ନେଇ କଲମ ଧରିଛନ୍ତି ?

ଉତ୍ତର. ଗଳ୍ପ ଲେଖା ଜରିଆରେ ଅର୍ଥ ଉପାର୍ଜନ କରିବା କିମ୍ବା ସମାଜକୁ ପରିମାର୍ଜିତ କରିବା ମୋର ଲକ୍ଷ୍ୟ ନୁହେଁ। ଏମିତି କେତେକ ପ୍ରସଙ୍ଗ ମୋର ଆବେଗଗତ, ସୃଜନଶୀଳ ଏବଂ ଆଧ୍ୟାତ୍ମିକ ସତ୍ତାକୁ ସ୍ପନ୍ଦିତ କରେ, ଯାହାଫଳରେ ମୁଁ କଲମ ଧରେ। ଲେଖା ସମାପ୍ତ ହେବା ପରେ ମୋ ଭିତରେ ଅନେକ ଉପାଦାନ ଶାନ୍ତ ଓ ସାବଲୀଳ ହୋଇପଡେ। ଏହା ଏକ ଆଧ୍ୟାତ୍ମିକ ଅନୁଭୂତି, ଯାହା ମୋତେ ଲେଖାଲେଖି କରିବାକୁ ପ୍ରୋତ୍ସାହନ ଯୋଗାଏ।

ପ୍ରଶ୍ନ. ଆପଣଙ୍କ ଏକ ଗଳ୍ପ ଆମେରିକୀୟ ଜର୍ଣ୍ଣାଲରେ ପ୍ରକାଶ ପାଇଥିଲା। ସେସଂପର୍କରେ କିଛି କହିବେ ?

ଉତ୍ତର. ନିଉୟର୍କରୁ 'ଆମେରିକାନ୍ ୱାନ୍ ଷ୍ଟୋରି' ବୋଲି ଗୋଟିଏ ଜର୍ଣ୍ଣାଲର ବିଶେଷତ୍ୱ ହେଲା ସେଥିରେ ଗୋଟିଏ ମାତ୍ର ଷ୍ଟୋରି ପ୍ରକାଶ ପାଇବ। ସେଇଟି ଆଠପୃଷ୍ଠା ହୋଇପାରେ ବି ଷୋହଳ ପୃଷ୍ଠା ହୋଇପାରେ। ମୋର ଗୋଟେ ଗପ ଭୁବନେଶ୍ୱରର ରବୀନ୍ଦ୍ର କୁମାର ସ୍ୱାଇଁ ଅନୁବାଦ କରି ନିଉୟର୍କ ପଠାଇଥିଲେ। ସାପୁଆ କେଳାକୁ ନେଇ ସେ ଗପଟି ଥିଲା। ତା'ର ନାମ ଥିଲା 'ସ୍ନେକ୍ ଚାରର୍ମର'।

ପ୍ରଶ୍ନ. ରେଡିଓରେ ଗୋଟିଏ ସମୟରେ ଆପଣ ଖୁବ୍ ନାଟକ ଲେଖିଛନ୍ତି, ଆପଣଙ୍କ 'କୁହୁଡ଼ି ଓ ତୃଷ୍ଣା' ନାଟକ ବେତାର ପ୍ରସାରଣ ପରେ ଦୂରଦର୍ଶନରେ ଟେଲିଫିଲ୍ମ ମଧ୍ୟ ହୋଇଥିଲା। ବେତାର ନାଟକର ସଫଳତା ଟେଲିଫିଲ୍ମ ନେଇପାରିଲାନି କାହିଁକି ?

ଉତ୍ତର. ପ୍ରଣବନ୍ଧୁ କର ସେତେବେଳେ ଥାନ୍ତି। ତାଙ୍କ ପାଖକୁ ମୋର ଗୋଟିଏ ସ୍କ୍ରିପ୍ଟ ପଠାଯାଇଥାଏ ଯେ, ନାଟକଟି ପ୍ରସାର ଉପଯୋଗୀ କି ନୁହେଁ ବିଚାର କରିବାକୁ। ନାଟକ ପଢ଼ି ପ୍ରାଣବନ୍ଧୁବାବୁ ଖୁବ୍ ଖୁସି ହୋଇଯାଉଥିଲେ।

ନାଟକଟି ଥିଲା 'କୁହୁଡ଼ି ଓ ତୃଷ୍ଣା'। ମନୋରଞ୍ଜନ ଦାସ, ଝରଣା ଦାସ, ହିମାଂଶୁ ଭୂଷଣ ସାବତ ମଧ୍ୟ ମୋତେ ଅଧିକରୁ ଅଧିକ ଭାବେ ରେଡିଓ ଡ୍ରାମା ଲେଖିବାକୁ ଉତ୍ସାହିତ କରିଥିଲେ ଏବଂ ମୁଁ ଅନେକ ବେତାର ନାଟକ ଲେଖିଥିଲି। କିନ୍ତୁ 'କୁହୁଡ଼ି ଓ ତୃଷ୍ଣା' ପରେ ଦୂରଦର୍ଶନ ରାଜୁ ମିଶ୍ର ତାକୁ ଠିକ୍ ଭାବେ ଉପସ୍ଥାପନା କରିପାରିଲେନି। ରାଜୁ ଆମ ଘରକୁ ଆସି କଥା ବି ହୋଇଥିଲେ। ହେଲେ ଫିଲ୍ମ ଦେଖିବା ପରେ ମୁଁ ତାଙ୍କୁ କହିଲି – ନା, ହେଲାନି....।

ପ୍ରଶ୍ନ. ଗାଳ୍ପିକ ରାମଚନ୍ଦ୍ର ବେହେରା ଉପନ୍ୟାସକୁ କାହିଁକି ଆସିଲେ ?

ଉ. ଗପରେ ମୋର ପ୍ରଚୁର ପ୍ରସିଦ୍ଧି ଅଛି ? ଏକଥା କାହିଁ ମୋର ବିଶ୍ୱାସ ଅସୁନି, ଏନି ୱେ ଏମିତି ଅନେକ କଥାବସ୍ତୁ ଅଛି, ଯେଉଁ କଥାବସ୍ତୁ ଦଶପୃଷ୍ଠା କି ପନ୍ଦର ପୃଷ୍ଠାର ସୀମିତ ପରିସର ମଧ୍ୟରେ ବିନ୍ୟାସ ହେବା ଆଦୌ ସମ୍ଭବ ନୁହେଁ। ଏହି ପ୍ରକାର କଥାବସ୍ତୁ ଯେତେବେଳେ ଆସେ ଓ ମତେ ଆନ୍ଦୋଳିତ କରେ ସେତେବେଳେ ହିଁ ମୁଁ ଉପନ୍ୟାସ କଥା ଚିନ୍ତା କରେ ଏବଂ ଉପନ୍ୟାସ ଲେଖେ। ଉପନ୍ୟାସ ଏବଂ ଗଳ୍ପ ପ୍ରକୃତରେ ଗୋଟିଏ ସୃଜନଶୀଳତାର ପରିପ୍ରକାଶ। କେବଳ ବିନ୍ୟାସ ଅଲଗା। ବିନ୍ୟାସକୁ ଚାହିଁ କିଏ ଉପନ୍ୟାସ ହେଉଛି କିମ୍ବା ଗପ ହେଉଛି।





# କେବଳ ବିଚାର ଏବଂ ସିଦ୍ଧାନ୍ତରୁ ସାହିତ୍ୟ ହୁଏନି

## ବିଶ୍ୱନାଥ ପ୍ରତାପ ତିଓ୍ୱାରୀ:

ମଣିଷ ଭିତରେ ବିଶ୍ୱାସ ଜନ୍ମାଇବା, ତାକୁ ସମ୍ବେଦନଶୀଳ କରାଇ ତା'ର ହୃଦୟ ପରିବର୍ତ୍ତନ କରିବା ସାହିତ୍ୟର କାମ। ଏହି ମତ ପୋଷଣ କରନ୍ତି ବିଶିଷ୍ଟ ହିନ୍ଦୀ କବି ବିଶ୍ୱନାଥ ତିଓ୍ୱାରୀ। କବିତା କ୍ଷେତ୍ରରେ ନିଜକୁ ଜଣେ ଦରଦୀ ମଣିଷ ଭାବେ ପରିଚିତ କରାଇଥିବା ଏହି କବିଙ୍କ ସହ ସଂକ୍ଷିପ୍ତ ଆଳାପ।

ପ୍ରଶ୍ନ: ଆପଣ ସାହିତ୍ୟ ସହ ଦୀର୍ଘବର୍ଷ ଧରି ଜଡିତ ଅଛନ୍ତି, ଆଜି ପଛକୁ ଦେଖିଲେ କିପରି ଲାଗୁଛି ?

ଉତ୍ତର. ମୋର ପଛକୁ ଦେଖିବାରେ ଫରକ ପଡ଼ିବ। ଯାହା ଅଛି ତାହା ଅଛି। ଇତିହାସ ନିଜ ଗତିରେ ଆଗକୁ ବଢୁଛି ଏବଂ ଏହା ସହିତ ସାହିତ୍ୟ ମଧ୍ୟ। ସେତେବେଳେ ଏବଂ ଏବର ସାହିତ୍ୟରେ ଯାହା ଅନ୍ତର ଦେଖାଯାଉଛି ତାହା ସ୍ୱଭାବିକ କାରଣ ସମୟର ଯଥାର୍ଥତା ବଦଳିଯାଇଛି। ସେତେବେଳେ ଉତ୍ତର ଆଧୁନିକତାର ଏତେ ଭିଡ ନ ଥିଲା। ଦୁନିଆର ଦୁଇଟି ଶକ୍ତିକେନ୍ଦ୍ର ଥିଲା, ଶୀତଳ ଯୁଦ୍ଧ ଥିଲା, ସାହିତ୍ୟରେ ଏତେ ଦଳବଦଳ ନ ଥିଲା, ଲୋକଙ୍କ ଭିତରେ ପାରସ୍ପରିକ ସଦ୍‌ଭାବ ଥିଲା, ପଇସାର ମାୟା ନ ଥିଲା କି ଲୋକଙ୍କ ଭିତରେ ରାତିପାହିଲେ କରୋଡ଼ପତି ବନିବାର ଲୋଭ ନ ଥିଲା। ସେହି ତୁଳନାରେ ଆଜିର ସମୟ ତ ଆପଣଙ୍କ ସାମ୍‌ନାରେ ମଧ୍ୟ ଅଛି। ସାହିତ୍ୟରେ ପରିବର୍ତ୍ତନର ରେଖାକୁ ଆପଣ ସ୍ୱୟଂ ଦେଖିପାରୁଥିବେ। ଏସବୁ ସ୍ୱାଭାବିକ।

ପ୍ରଶ୍ନ: ଆପଣଙ୍କର ଅନେକ କବିତା ସଙ୍କଳନ ପ୍ରକାଶିତ, ତେବେ ଆପଣ ନିଜକୁ ଜଣେ ଆଲୋଚକ ଭାବେ ପ୍ରତିପାଦିତ କରୁଛନ୍ତି କାହିଁକି ?

ଉତ୍ତର. ଏହାର ତିନି ଚତୁର୍ଥାଂଶ କିମ୍ବା କମ୍ ସେ କମ୍ ଅଧା ଉତ୍ତର ଚିହ୍ନଟ କରୁଥିବା ଲୋକଙ୍କୁ ଦେବା କଥା। ଆଉ ଅଧେରୁ ମୋତେ ଏହା କହିବାର ଅଛି ଯେ ହୁଏତ ସମୟ ଅନୁରୂପରେ ମୋ କବିତା ପାଠକର ଡିମାଣ୍ଡ ପୂରା କରିପାରିନାହିଁ। ଦ୍ୱିତୀୟ କଥା କବି ଆଲୋଚନାରୁ ଏବଂ ଆଲୋଚକ କବିତାରୁ ଦୂରରେ ଥାଆନ୍ତି, ସମ୍ଭବତଃ ମୋର ଏହି ଦୁଇଟିରେ ରୁଚି ରହିଛି।

ପ୍ରଶ୍ନ: ଆପଣଙ୍କ 'ଫିର୍ ଭି କୁଛ୍ ରହ ଜାଏଗା' କବିତା ସଙ୍କଳନର ଅଧିକାଂଶ ଯୁବ ମାନସିକତାର କବିତା। ଏବେ ବି ଏତେ ସ୍ଫୁର୍ତ୍ତି ଆପଣଙ୍କ ଲେଖନୀରେ ଆସେ କେମିତି ?

ଉତ୍ତର. 'ଫିର୍ ଭି କୁଛ୍ ରହ ଜାଏଗା'ରେ ମୋ ନିଜ ଅନୁଭବ ଅଧିକ ରହିଛି। ଏଣୁ ଏଥିରେ ସତେଜତା ବା ସ୍ଫୁର୍ତ୍ତି ରହିଛି। ଯେଉଁ କବିତା ନିଜ ସମୟର ଅନୁକରଣରେ ଲେଖାଯାଇଥାଏ ବା ସମୟର ପ୍ରଭାବରେ ଲେଖାଯାଏ ସେଥିରେ ସ୍ଫୁର୍ତ୍ତି ଦେଖାଯାଉଥାଏ। ଏମିତି ବି ଏହି ପ୍ରତିଟି କବିତାର ଲେଖାଶୈଳୀ ଅନ୍ୟ ତୁଳନାରେ ସ୍ୱତନ୍ତ୍ର।

ପ୍ରଶ୍ନ: ଆପଣ 'ଦସ୍ତାବିଜ' ନାମକ ଏକ ତ୍ରୈମାସିକ ପତ୍ରିକାର ସମ୍ପାଦକ, ଏଥିପାଇଁ କେଉଁଭଳି ସଂଘର୍ଷ କରି ପତ୍ରିକାକୁ ଆଗେଇବାକୁ ପଡୁଛି ?

ଉତ୍ତର. କେବେ କୌଣସି ସଂଘର୍ଷରେ ଅତିକ୍ରମ କରିନି। ଏହା ଆମ ସମୟର ଖିଆପିଆ କରୁଥିବା ଲୋକଙ୍କର ସ୍ଲୋଗାନ ଯେ ସେମାନେ ସଂଘର୍ଷ କରୁଛନ୍ତି। ଯାହା ପାଖରେ ଖାଇବାକୁ ରୁଟି, ପିନ୍ଧିବାକୁ କପଡ଼ା ଏବଂ ମୁଣ୍ଡ ଗୁଞ୍ଜିବାକୁ ଛାତ ଅଛି ସେମାନଙ୍କ ସଂଘର୍ଷ ପାଖଣ୍ଡ। ସଂଘର୍ଷ ଏହି ଦେଶରେ ସେହିମାନେ କରୁଛନ୍ତି ଯେଉଁମାନଙ୍କ ଆଡ଼କୁ ଆମ ଧ୍ୟାନ ଯାଉନି। ଖାଇବାକୁ ପାଉ ନ ଥିବା ଆଦିବାସୀ ଜଙ୍ଗଲରେ ରହୁଥିବା ଲୋକ ଏବଂ ଦଶଟଙ୍କା ପାଇଁ ନିଜ ସନ୍ତାନକୁ ବିକ୍ରି କରିବାକୁ ବାଧ୍ୟ ହେଉଥିବା ଲୋକଙ୍କୁ ଦେଖନ୍ତୁ ଜାଣିବେ ସଂଘର୍ଷ କ'ଣ। ରୁଟି ପାଇଁ ସଂଘର୍ଷ କରୁଥିବା ସେହି ଲୋକମାନଙ୍କୁ ଦେଖିଛି, ସେମାନଙ୍କ ତୁଳନାରେ ମୋ ପାଖରେ ତ ନିଜ ପସନ୍ଦର କର୍ମ ରହିଛି। ଏଥିରେ ଯାହା ବି ସଙ୍କଟ ଆସେ ମୋତେ କୌଣସି କଷ୍ଟ ହୁଏନା। ହଁ କିଛିଟା କଠିନ ଏବଂ କାର୍ଯ୍ୟଭାର ବଢ଼େ ନିଶ୍ଚୟ, କିନ୍ତୁ ଏହା ଏପରି ସଂଘର୍ଷ ନୁହେଁ ଯାହାକୁ ନେଇ ଗୌରବାନ୍ୱିତ ହେବି।

ପ୍ରଶ୍ନ: ବର୍ତ୍ତମାନ ସମୟରେ ସାହିତ୍ୟରେ କେନ୍ଦ୍ରୀୟ ଭୂମିକା କେଉଁ ତତ୍ତ୍ୱରେ ହେବା ଉଚିତ ?

ଉତ୍ତର. ସାହିତ୍ୟରେ କେନ୍ଦ୍ରୀୟ ଭୂମିକା ସବୁବେଳେ ସମ୍ବେଦନଶୀଳ ଏବଂ ସର୍ଜନାତ୍ମକ ହେବା ଉଚିତ। ଯଦି କୌଣସି ଲେଖକ ସମ୍ବେଦନଶୀଳ ନୁହେଁ ତେବେ ସେ ଲୋକଙ୍କ ମନ ଏବଂ ଚିନ୍ତନ ପର୍ଯ୍ୟନ୍ତ ପହଞ୍ଚିପାରିବ ନାହିଁ। ଏପରି ଯଦି କାହା ପାଖରେ ସର୍ଜନାତ୍ମକ ଭାଷା ନାହିଁ ତେବେ ଯଥାର୍ଥତାକୁ ରଚନାତ୍ମକ ଏବଂ ପ୍ରଭାବକାରୀ ଢ଼ଙ୍ଗରେ ପାଠକ ପର୍ଯ୍ୟନ୍ତ ପହଞ୍ଚାଇ ପାରିବ ନାହିଁ। କେବଳ ବିଚାର ଏବଂ ସିଦ୍ଧାନ୍ତରୁ ରଚନା ହୁଏନି।

ପ୍ରଶ୍ନ: ଆତଙ୍କବାଦ ପ୍ରଭାବିତ ଯୁଗରେ ମାନବିୟତାକୁ ବଞ୍ଚାଇବା ଏବଂ ମଣିଷ ମଧ୍ୟରେ ବିଶ୍ୱାସଭାଜନ ହେବା ପାଇଁ ସାହିତ୍ୟର କି ଭୂମିକା ହେବା ଦରକାର ?

ଉତ୍ତର. ଏହି ଆତଙ୍କବାଦ ଯୁଗରେ ଭୂମିକା ମହତ୍ତ୍ୱପୂର୍ଣ୍ଣ। ସାହିତ୍ୟ ନିଜର ମୂଳ ସ୍ୱଭାବରେ ହିଂସାବିରୋଧୀ। ସାହିତ୍ୟ ଏପରି ଏକ ଅସ୍ତ୍ର ଯାହା ହିଂସାକୁ ରୋକିପାରେ। ମନୁଷ୍ୟ ମନୁଷ୍ୟ ଭିତରେ ବିଶ୍ୱାସ ଜନ୍ମାଇବା ବା ମନୁଷ୍ୟକୁ ସମ୍ବେଦନଶୀଳ ବନାଇ ତା'ର ହୃଦୟ ପରିବର୍ତ୍ତନ କରିବା ସାହିତ୍ୟର କାମ।

ପ୍ରଶ୍ନ: ସାହିତ୍ୟ ଏକାଡେମୀ ସବୁବେଳେ ବିବାଦରେ ରହୁଛି। ଆପଣ ମଧ୍ୟ କେନ୍ଦ୍ରସାହିତ୍ୟ ଏକାଡେମୀ ଉପସଭାପତି କାର୍ଯ୍ୟ ତୁଲାଇଛନ୍ତି। ତେବେ ଏଭଳି ବିବାଦ ଘେରରେ ଆପଣ କେତେ କାମ କରିପାରିଛନ୍ତି ?

ଉତ୍ତର. ବଡ଼ ଏବଂ ସକ୍ରିୟ ସଂସ୍ଥା ସହ ବିବାଦ ରହିଥାଏ। ବିବାଦ ସେହି ବ୍ୟକ୍ତି ବା ସଂସ୍ଥା ସହିତ ରହି ନ ଥାଏ ଯିଏ ନିଷ୍କ୍ରିୟ ହୋଇଥାଏ। ସାହିତ୍ୟ ଏକାଡେମୀରେ ମୋତେ କାର୍ଯ୍ୟ କରିବାକୁ କୌଣସି ଅସୁବିଧା ହେଇନାହିଁ। ଯେଉଁ ନିର୍ଣ୍ଣୟ ଆମର ପରାମର୍ଶଦାତାମଣ୍ଡଳୀ ନିଏ, ସେହି କାର୍ଯ୍ୟ ହେଉଛି। ହଁ, ହିନ୍ଦୀ ଉଷାରେ କାମ କରୁଥିବା ସାହିତ୍ୟିକଙ୍କ ଅଭାବ କାରଣରୁ କାର୍ଯ୍ୟର ଗତି ମନ୍ଥର ନିଶ୍ଚୟ।





# କବିତା ମୋ' ଭାଷା

## ଲୀଳାଧର ଜଗୁଡ଼ିଃ

ହିନ୍ଦୀ ସାହିତ୍ୟର ଅନ୍ୟତମ ପ୍ରତିଷ୍ଠିତ କବି ଲୀଳାଧର ଜଗୁଡ଼ି। ଉତ୍ତରପ୍ରଦେଶର ଟିହରିସ୍ଥିତ ଧଙ୍ଗଣ ଗ୍ରାମ (ବର୍ତ୍ତମାନର ଉତ୍ତରାଖଣ୍ଡରେ ଅବସ୍ଥିତ)ରେ ଜନ୍ମଗ୍ରହଣ କରିଥିବା ଲୀଳାଧର ଶିକ୍ଷକତାକୁ ପେସା ଭାବେ ଗ୍ରହଣ କରିଥିଲେ। ଏବେ ସେ ସୂଚନା ଓ ଲୋକସମ୍ପର୍କ ବିଭାଗରେ ଅବସ୍ଥାପିତ। ଶଙ୍ଖମୁଖୀ ଶିଖରୋଁ ପର, ଅନୁଭବ କେ ଆକାଶ ମେଁ ଚାନ୍ଦ, ମହାକାବ୍ୟ କେ ବିନା, ବଚି ହୁଇ ପୃଥ୍ୱୀ, ଘବରାଏ ହୁଏ ଶବ୍ଦ ଆଦି ବେଶ୍ ଲୋକପ୍ରିୟ କବିତା ସଂକଳନ ଏହି ସ୍ରଷ୍ଟାଙ୍କୁ ୨୦୦୪ରେ ଭାରତ ସରକାରଙ୍କ ପକ୍ଷରୁ ମିଳିଛି ପଦ୍ମଶ୍ରୀ ଉପାଧି। କବିତା ପାଇଁ ସେ ମଧ୍ୟ ପାଇଛନ୍ତି ୧୯୯୭ରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର। ସଂପ୍ରତି ତାଙ୍କ ସହ ହୋଇଥିବା ସାକ୍ଷାତ୍କାରର କିଛି ଅଂଶ।

ପ୍ରଶ୍ନ: ଆଜିର କବିତାରେ ମୁଖ୍ୟ ସଙ୍କଟ କ'ଣ ?

ଉତ୍ତର. ଯାହା ମଣିଷର। କବିତା ମଣିଷ ଜୀବନଠାରୁ ବାହାରେ ନୁହେଁ। ଜୀବନର ସୁଖଦୁଃଖ, ସଂଘର୍ଷ, ସଂଘାତ, ଉପଲବ୍ଧି ସହିତ କବିତା ସଂଶ୍ଳିଷ୍ଟ। ହଁ କବିତାର ସଙ୍କଟ ମଧ୍ୟ ରହିଛି ଅନ୍ୟ ସ୍ତରରେ। ସବୁ କବିତା ସମାନ ଭାବେ ସମସ୍ତଙ୍କଠାରେ ଆଦୃତ ହୋଇପାରୁନାହିଁ। ଯେଉଁ କବିତା ଦୀର୍ଘସମୟ ଯାତ୍ରା କରିପାରିବ ସେହି କବିତା ସେତେ ଲୋକପ୍ରିୟ ହୋଇପାରିବ।

ପ୍ରଶ୍ନ: ହିନ୍ଦୀ ସାହିତ୍ୟର କ୍ଷେତ୍ର ବ୍ୟାପକ। ମାତ୍ର ପାଠକ ସମାଜ ସୀମିତ ବୋଲି ଅଭିଯୋଗ ହୁଏ। ଆପଣ କ'ଣ ମନେକରନ୍ତି ?

ଉତ୍ତର. ହିନ୍ଦୀଭାଷୀଙ୍କ ସଂଖ୍ୟା ଅଧିକ। ମାତ୍ର ଏହାର ପାଠକ ସଂଖ୍ୟା ସଂସ୍କୃତି ପ୍ରେମୀ ଓ ବୌଦ୍ଧିକତା ଉପରେ ନିର୍ଭର କରେ। ସତୁରି ଦଶନ୍ଧିରେ ଆଶ୍ଚର୍ଯ୍ୟଜନକ ଭାବେ ହିନ୍ଦୀ ପାଠକ ସଂଖ୍ୟା ବୃଦ୍ଧି ପାଇଥିଲା। ମାତ୍ର ଏହାର ଗତି କ୍ରମଶଃ ହ୍ରାସ ପାଇଲା। ମୁଁ କହିବି ଟେଲିଭିଜନ ଓ ଫିଲ୍ମ ଚକ୍କରରେ ପଡ଼ି ପାଠକ ଘାବରେଇ ଯାଉଛନ୍ତି। କିନ୍ତୁ ଏହି ଆତଙ୍କ ବେଶିଦିନ ରହିବ ନାହିଁ। ଆଗାମୀ ଶତାବ୍ଦୀ ଅକ୍ଷର ଓ ଶବ୍ଦର ଶତାବ୍ଦୀ ହେବ। ଲୋକଙ୍କ ଭିତରେ ପୁନଶ୍ଚ ଆଗ୍ରହ ବୃଦ୍ଧି ପାଇବ।

ପ୍ରଶ୍ନ: ଆଗାମୀ ଯୁବ ପାଠକ ଗୋଷ୍ଠୀ ନିକଟରେ କବିତାର ଆଦୃତି ହେବ ବୋଲି ଭାବୁଛନ୍ତି କି ?

ଉତ୍ତର. ଆଗାମୀ ଦିନରେ ଯେଉଁ ପାଠକ ଗୋଷ୍ଠୀ ସୃଷ୍ଟି ହେବେ ସେମାନଙ୍କ ପାଖରେ କବିତାର ସଂସ୍କାର ସବୁଠାରୁ କମ୍ ହେବ। କବିତାକୁ ସେହି 'ଅସଂସ୍କାରୀ' ପାଠକମାନଙ୍କ ପର୍ଯ୍ୟନ୍ତ ପହଞ୍ଚିବାକୁ ବର୍ତ୍ତମାନଠାରୁ ପ୍ରସ୍ତୁତି ନେବା ଉଚିତ୍। କାରଣ ବର୍ତ୍ତମାନ କବିତା ପଠନ ଏବଂ ଗାୟନ ଉଭୟ ଦିଗରୁ କମିଗଲାଣି। ଏଣୁ ଏହାର ଆତଙ୍କ ଆହୁରି ବଢ଼ିଯାଇଛି।

ପ୍ରଶ୍ନ: ଆପଣଙ୍କ ଦୃଷ୍ଟିରେ କ'ଣ କବିତାରେ ରାଜନୈତିକ ବିଚାରଧାରା ରହିବା ଉଚିତ ?

ଉତ୍ତର. ଏଥିରେ ସନ୍ଦେହ ନାହିଁ କି ମାର୍କ୍ସବାଦ ଏ ପର୍ଯ୍ୟନ୍ତ ସର୍ବାଧିକ ବୈଜ୍ଞାନିକ ସାମାଜିକ ଚିନ୍ତନରେ ରହିଛି। ଏହାକୁ କଠୋରପନ୍ଥୀ ମାର୍କ୍ସବାଦୀମାନେ ବିକଶିତ ହେବାକୁ ଦେଲେନାହିଁ। ରାଜନୈତିକ ବିଚାରଧାରା ଅର୍ଥ ଯଦି

ପାର୍ଟି ତେବେ ତାହା କବିତା ପାଇଁ ବହୁତ ଅନିବାର୍ଯ୍ୟ ନୁହେଁ। କିନ୍ତୁ ରାଜନୀତି ବୁଝାମଣା ବିନା ଭଲ କବିତା ଲେଖାଯାଇପାରେନା।

ପ୍ରଶ୍ନ: ଜାଗ୍ରତ ପାଠକଙ୍କର ଚିନ୍ତା ଯେ ସେ କ'ଣ ପଢ଼ିବ। ଅନେକ ସାହିତ୍ୟ ପାଠକଙ୍କର ଚିନ୍ତା ବନ୍ଦ ହେବାରେ ଲାଗିଛି। ଆପଣ କୁହନ୍ତୁ ପାଠକ କ'ଣ କରିବ?

ଉତ୍ତର. ଏହା ଏକ ଚିନ୍ତାର ବିଷୟ ପୁସ୍ତକର ମୂଲ୍ୟ ଏତେ ବଢ଼ିଯାଇଛି ଯେ ପାଠକମାନେ ଅନ୍ୟ ଆବଶ୍ୟକତା ତୁଳନାରେ ଏହାକୁ ପ୍ରାଥମିକତା ଆବଶ୍ୟକତାରେ ନେଇପାରୁ ନ ଥିବାରୁ ପତ୍ରିକା ବନ୍ଦ ହେବାକୁ ବସିଲାଣି। ମୁଁ ଭାବୁଛି ଭଲ ସାହିତ୍ୟର ଆଦର କେବଳ ଅଧିକ ମୂଲ୍ୟ କାରଣରୁ କମୁନାହିଁ। ପାଠକ ସୃଷ୍ଟି କରିବାରେ ଏହାର ମଧ୍ୟ ଭୂମିକା ରହିବା ଦେଖିବାକୁ ମିଳୁଛି। ଭଲ କବିତାମାନଙ୍କର କ୍ୟାସେଟ୍ ହେବା ଦରକାର। ରୁଚି ମଧ୍ୟ ବଢ଼ିବ ଏବଂ ନୂଆ ଶ୍ରୋତା ଓ ପାଠକବର୍ଗ ମଧ୍ୟ ପ୍ରସ୍ତୁତ ହେବେ।

ପ୍ରଶ୍ନ: ଆପଣଙ୍କ ମତରେ ଭଲ କବିତା?

ଉତ୍ତର. ପୁରୁଣା ସୂର୍ଯ୍ୟଠାରୁ ଯେପରି ନୂଆଦିନ ମିଳେ, ଯେପରି ପୁରୁଣା ପୃଥିବୀରୁ ଆମକୁ ନୂଆ ନୂଆ ଋତୁ ମିଳେ। ସେହିପରି କବିତାର ପରମ୍ପରା ମଧ୍ୟ ନିତ୍ୟ ନୂତନ ତଥା ସର୍ବଦା ପରିବର୍ତ୍ତନଶୀଳ ରହିବା ଉଚିତ।

ପ୍ରଶ୍ନ: ସମକାଳୀନ କାବ୍ୟ ଭାଷାରୁ ଆପଣ ନିଜର କାବ୍ୟ ଭାଷାକୁ କିଭଳି ପୃଥକ ଭାବନ୍ତି?

ଉତ୍ତର. ସମକାଳୀନ କାବ୍ୟଭାଷା ହିଁ ମୋର କାବ୍ୟ ଭାଷା। ଏହାକୁ ଏପରି କୁହାଯାଇପାରେ ଯେ ମୋ ପାଇଁ ମୋ କାବ୍ୟଭାଷା ହିଁ ସମକାଳୀନ ଭାଷା। ମୋ କବିତାରେ କଥନ ସମକାଳୀନ କବିତାମାନଙ୍କଠାରୁ ଭିନ୍ନ ହେଉ ତାହା ମୋର ଚେଷ୍ଟା।

ପ୍ରଶ୍ନ: ଆପଣ କବିତାରେ ମନୋନିବେଶ କଲେ କାହିଁକି?

ଉତ୍ତର. ମୁଁ ମୋର ଆତ୍ମାକୁ ଦୁନିଆ ସହ ଏକାତ୍ମ କରିବା ପାଇଁ କବିତାକୁ ଭାଷା ଭାବେ ବାଛିଚି। ମୂଳରୁ ମୁଁ ଚିନ୍ତା କରିଛି ଯେ କବିତାର ଭାବ ମତେ ବାନ୍ଧି ରଖୁ ଏବଂ ମୋ ନିଃଶ୍ୱାସ ସହ ନିଃଶ୍ୱାସ ନେଉ।

ପ୍ରଶ୍ନ: ହିନ୍ଦୀ ସାହିତ୍ୟରେ ଦଳିତ ଚେତନା ଗଭୀର ରୂପ ନେଇଛି। ଦଳିତ ସାହିତ୍ୟ ସମ୍ପର୍କରେ ଆପଣଙ୍କ ମତ କ'ଣ?

ଉତ୍ତର. ହିନ୍ଦୀ ସାହିତ୍ୟ ସମାଜ ସ୍ୱୟଂ ବହୁ ଦଳିତ ମନୋବୃତ୍ତିର ସମାଜ। ଏଥିରେ ବର୍ଣ୍ଣ ବ୍ୟବସ୍ଥାର ମଧ୍ୟ ଜବରଦସ୍ତ ହାତ ଅଛି। ଦଳିତ ମନୋବୃତ୍ତିର ସାହିତ୍ୟ ହିନ୍ଦୀରେ ପ୍ରଚୁର ପରିମାଣରେ ଉପଲବ୍ଧ।

ପ୍ରଶ୍ନ: ଆପଣଙ୍କ କବିତାରେ ପାହାଡ ଶବ୍ଦର ବ୍ୟବହାର ଅଧିକ ଦେଖିବାକୁ ମିଳେ କାହିଁକି ?

ଉତ୍ତର. ପାହାଡ ତ ଜୀବନସାରା ମୋ ପିଛା –ଛାଡିବ ନାହିଁ। ପାହାଡୀ ପରିବେଶରେ ଜନ୍ମ ହୋଇଛି, ଏଣୁ ପାହାଡ ପ୍ରତି ଅଧିକ ଆସକ୍ତି ରହିବା ସ୍ୱାଭାବିକ। ଜଣେ ଡାକ୍ତର ମୋର ଗଲବ୍ଲାଡର ଅପରେଶନ କରି କହିଲେ– 'ପାହାଡ ଅଞ୍ଚଳରେ ଜନ୍ମ ହୋଇଛ, ପେଟରେ ମଧ୍ୟ ପଥର ନେଇ ବୁଲୁଛ'।

ପ୍ରଶ୍ନ: ପ୍ରଥମେ ଆପଣ ଗଡୱାଲିରେ ଲେଖୁଥିଲେ, ତା'ପରେ ସେଥିରୁ ନିବୃତ୍ତ ହେଲେ କାହିଁକି ?

ଉତ୍ତର. ଦେଖନ୍ତୁ ଗଡୱାଲି ଗୋଟିଏ ବୋଲି, ଭାଷା ନୁହେଁ। ଗଡୱାଲି ଏବଂ କୁମାଉନୀର କୌଣସି ପ୍ରମାଣିକ ବ୍ୟାକରଣ ନାହିଁ। ଏହାର ସମାଜ ଏତେ ସୀମିତ ଯେ ଅନେକ କଥା କହିବା ପାଇଁ ବାହାରକୁ ଯିବାକୁ ପଡିଲା। ଏକଥା ସତ ଯେ ଗଡୱାଲି ଲୋକଗୀତରୁ ଭାଷାର ସମୃଦ୍ଧି ହୋଇ ନ ଥାଏ। ଭାଷା ସେତେବେଳେ ଦୃଢ଼ହୁଏ ଯେତେବେଳେ ସେଥିରେ ଜୀବନର ଅଧବସାୟ ବଢ଼େ। ଯେ ପର୍ଯ୍ୟନ୍ତ ଜୀବନ ଅଧବସାୟରେ ଉନ୍ନତି ଘଟିନାହିଁ ସେ ପର୍ଯ୍ୟନ୍ତ ଭାଷାରେ ନୂଆ ଶବ୍ଦ ସୃଷ୍ଟି ହେବନାହିଁ।





# ଭଗବାନଙ୍କର ବି ଶ୍ମଶାନ ଅଛି

## ମାଲୀରାମ ଶର୍ମା:

୧୯୨୫ ମସିହାରେ ରାଜସ୍ଥାନର ବିକାନେର ଜିଲାର ସତ୍ତାସର ଗ୍ରାମରେ ମାଲୀରାମ ଶର୍ମାଙ୍କ ଜନ୍ମ। ସେ ଇଂଲିଶ ଶିକ୍ଷକ ଥିଲେ। ଶିକ୍ଷକତା କରୁ କରୁ ସେ ଶିକ୍ଷା ବିଭାଗର ଉପ ନିର୍ଦ୍ଦେଶକ ହୋଇଯାଇଥିଲେ। ଜଣେ ଶିକ୍ଷକ ଭାବରେ ତାଙ୍କର ଅଧ୍ୟାପନା ଶୈଳୀ ଓ ଲୋକଙ୍କ ପ୍ରତି ଶ୍ରଦ୍ଧା ଏବଂ ଆନ୍ତରିକତା ତାଙ୍କୁ ଖୁବ୍ ଲୋକପ୍ରିୟ କରିଥିଲା। ହିନ୍ଦୀ ଗଦ୍ୟର ଏକ ନୂତନ ଧାରା ବିକଶିତ କରିଛନ୍ତି ମାଲୀରାମ। ତାଙ୍କ ଦ୍ୱାରା ରଚିତ 'ମାଜ୍‌ରା କ୍ୟା ହେଁ' ଶୀର୍ଷକ କଲମଟି ଲୋକଙ୍କ ଦ୍ୱାରା ବହୁଭାବରେ ଆଦୃତ ହୋଇଥିଲା। ତାଙ୍କର ଦୁଇଟି କବିତା ପୁସ୍ତକ 'ଔବର୍ଜ କି ରାଜ' ଏବଂ 'ସଓକ କା ସୈଲାବ' ପ୍ରକାଶିତ। ଏହା ସହିତ ବ୍ୟଙ୍ଗ ଲେଖନ ପୁସ୍ତକ 'ଆମନେ-ସାମନେ' 'ମୁର୍ଗେ କି ସାଜିଶ', 'କ୍ୟାପସୁଲ ନହିଁ ଝୁଟତା', 'ରାୟ ବାହାଦୂର', ଏବଂ 'ଚୁଡି ମେଁ ଚୁଡି' ପ୍ରକାଶିତ। ଦୀର୍ଘ ଦିନର ନୀରବତା ପରେ ମାଲୀରାମ ଶର୍ମା "ଔ ସତ୍ତାସର' ଶୀର୍ଷକ ଏକ ଆତ୍ମ କଥନ ଉପନ୍ୟାସ ରଚନା କରିଛନ୍ତି। ଯାହାକି ବହୁ ଲୋକପ୍ରିୟତା ହାସଲ କରିଛି।

ପ୍ରଶ୍ନ: ସାହିତ୍ୟରେ ପ୍ରବେଶ କିପରି ?

ଉତ୍ତର. ୧୯୭୩ ମସିହାରେ ପ୍ରୌଢ଼ଶିକ୍ଷା ଉପରେ ଏକ ନିବନ୍ଧ ଲେଖିବା ପରେ ହିନ୍ଦୁସ୍ଥାନରେ ତା'ର ପ୍ରକାଶନ ହେଲା। ମୁଖ୍ୟତଃ ମୁଁ ଜଣେ ସାହିତ୍ୟର ଛାତ୍ର ଏବଂ ଶିକ୍ଷକ। ଏହା ସହିତ ମୁଁ ଦେଖିଲି ଗ୍ରାମୀଣ ଲୋକଙ୍କ ପାଖରେ ଅନେକ କିଛି କହିବାକୁ ଅଛି। ସେମାନଙ୍କ ଭିତରେ ବୁଝିପାରିବାର ସାମର୍ଥ୍ୟ ଅଛି। ଏଣୁ ଚିନ୍ତା କଲି ଏହି ଲୋକମାନଙ୍କୁ ନେଇ ଗ୍ରାମାଞ୍ଚଳର ସମସ୍ୟା ପ୍ରତି ସ୍ୱର ଉତ୍ତୋଳନ ପୂର୍ବକ ପ୍ରବନ୍ଧମାନ ଲେଖିବା ଆରମ୍ଭ କଲି।

ପ୍ରଶ୍ନ: କେଉଁ ବିଷୟମାନଙ୍କୁ ଆପଣଙ୍କ ସାହିତ୍ୟରେ ଗୁରୁତ୍ୱ ଦିଅନ୍ତି ?

ଉତ୍ତର. ସାଧାରଣ ଲୋକଙ୍କ ସମସ୍ୟା। ବ୍ୟଙ୍ଗ ଲେଖା, ବିଶେଷତଃ ଗ୍ରାମାଞ୍ଚଳ ଲୋକଙ୍କ କଥା ତଥା ଯେଉଁଠି ଅନ୍ୟାୟ ହେଉଛି ତା' ବିରୁଦ୍ଧରେ ଲେଖେ।

ପ୍ରଶ୍ନ: ଆପଣ ଉଭୟ ପ୍ରବନ୍ଧ ଓ କବିତାରେ ଲେଖନୀ ଚାଳନା କରିଛନ୍ତି। କେଉଁ ଲେଖନୀରେ ଆତ୍ମସନ୍ତୁଷ୍ଟି ପାଆନ୍ତି ?

ଉତ୍ତର. ପ୍ରବନ୍ଧରେ। କାରଣ ପ୍ରବନ୍ଧରେ ପ୍ରକୃତରେ ସବୁକଥାକୁ ସ୍ପଷ୍ଟ ଭାବରେ କହିହୁଏ।

ପ୍ରଶ୍ନ: ରାଜସ୍ଥାନ ସାହିତ୍ୟ ସମ୍ପର୍କରେ କ'ଣ କହିବେ। ମୁଖ୍ୟତଃ ଏହି ସାହିତ୍ୟରେ କ'ଣ ଅଭାବ ରହିଛି ବୋଲି ଭାବୁଛନ୍ତି ?

ଉତ୍ତର. ରାଜସ୍ଥାନୀ ସାହିତ୍ୟ ପୁରାତନ। ଏଥିରେ ବିଜ୍ଞାନ ଏବଂ ସମସାମୟିକ ଚିନ୍ତାଧାରାର ଅଭାବ ରହିଛି।

ପ୍ରଶ୍ନ: କେଉଁ କେଉଁ ସାହିତ୍ୟ ପଢ଼ିଛନ୍ତି ?

ଉତ୍ତର. ଉର୍ଦ୍ଦୁ, ହିନ୍ଦୀ, ସଂସ୍କୃତ, ଇଂଲିଶ।

ପ୍ରଶ୍ନ: ଆପଣଙ୍କୁ କେଉଁ ସାହିତ୍ୟ ଭଲ ଲାଗେ ?

ଉତ୍ତର. ଉର୍ଦ୍ଦୁ ଏବଂ ହିନ୍ଦୀ ସାହିତ୍ୟ।

ପ୍ରଶ୍ନ: ଓଡ଼ିଆ ସାହିତ୍ୟ ଏବଂ ଓଡ଼ିଶା ସମ୍ପର୍କରେ ଆପଣଙ୍କର ଧାରଣା କ'ଣ ?

ଉତ୍ତର. ଓଡ଼ିଶାରେ କଳିଙ୍ଗ ଯୁଦ୍ଧ ହୋଇଥିଲା। ଏହି ଇତିହାସକୁ ପଢ଼ି ମୁଁ ସେହି ସମୟକୁ ଏବେ ବି ଅନୁମାନ କରେ। କୋଣାର୍କ ଏବଂ ପୁରୀ ଜଗନ୍ନାଥ ମନ୍ଦିର ଦେଖିଛି।

ଖୁବ୍ ସୁନ୍ଦର। ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ସର୍ବୋପରି ସ୍ୱର୍ଗଦ୍ୱାର ମୋତେ ଖୁବ୍ ପ୍ରଭାବିତ କରିଛି। ଭଗବାନଙ୍କର ବି ଶ୍ମଶାନ ଥିବା ମୁଁ ସେଠି ଜାଣିଲି। ଏ ବିଷୟ ଉପରେ ମୁଁ ଏକ ପ୍ରବନ୍ଧ ମଧ୍ୟ ଲେଖିଛି- "ଭଗବାନ କି ଭି ଶ୍ମଶାନ"।

ପ୍ରଶ୍ନ: ଏବେ କ'ଣ ଲେଖୁଛନ୍ତି ?

ଉତ୍ତର. ଉପନ୍ୟାସ ଲେଖୁଛି।

ପ୍ରଶ୍ନ: ଆପଣ ପ୍ରଥମେ ଲେଖନ୍ତି ନା ପ୍ରଥମେ ଶୀର୍ଷକ ଚୟନ କରନ୍ତି ?

ଉତ୍ତର. ଲେଖିସାରିଲା ପରେ ଶୀର୍ଷକ ଦିଏ।

ପ୍ରଶ୍ନ: ଅନୁବାଦ ସାହିତ୍ୟ ଉପରେ ଆପଣଙ୍କ ମତାମତ କ'ଣ ?

ଉତ୍ତର. ଅନୁବାଦରେ ମୂଳଲେଖାର ସ୍ୱରୂପ ଅବିକଳ ନ ଥାଏ। ଅବିକଳ ଅନୁବାଦ ନ ହୋଇପାରିଲେ ବରଂ ଅନୁବାଦ ନ କରିବା ଭଲ। 'ଗୀତାଞ୍ଜଳି' ଅନୁବାଦ ନ ହୋଇ ସେପରିଥିଲେ ଭଲ ହୋଇଥାନ୍ତା। ଦୁଇଟି ଭାଷାର ଭାବ ସମାନ ହୋଇ ନ ଥାଏ। ଏଣୁ ଭାଷାର ଜିନିଅସ୍ ମରିଯାଏ। ମୂଳ ଭାଷାର ଆତ୍ମା ନିକଟରେ ପହଞ୍ଚିପାରିଲେ ଅନୁବାଦ କରିବା ଦରକାର। ମୋତେ ଅନୁବାଦ ପାଇଁ କୁହାଯାଇଛି କିନ୍ତୁ ମୁଁ କରିନି।

ପ୍ରଶ୍ନ: ଆଗାମୀ ପିଢ଼ି ପାଇଁ ଆପଣଙ୍କ ବାର୍ତ୍ତା-

ଉତ୍ତର. ଆଜିକାଲି ସମୟ ବଦଳିଲାଣି। ସାହିତ୍ୟ ପ୍ରତି ଲୋକଙ୍କ ରୁଚି କମୁଛି। ଯାହାବି ସାହିତ୍ୟ କଥା ଉଠୁଛି ଭାଷା ଉପରେ ବେଶି ଗୁରୁତ୍ୱ ଦିଆଯାଉଛି, ସାହିତ୍ୟରେ ନୁହେଁ। ବିଜ୍ଞାନର ଯେପରି ଉନ୍ନତି ହେଉଛି ସାହିତ୍ୟର ସେହି ମାତ୍ରାରେ ବା ବିଜ୍ଞାନ ସମକକ୍ଷରେ ଉନ୍ନତି ହେଉନାହିଁ। ପୁରୁଣା ଢ଼ଙ୍ଗରେ ଚାଲି ସାହିତ୍ୟର ଉନ୍ନତି ହୋଇପାରିବ ନାହିଁ। ହଁ ଆଉ ଏକ କଥା, ବିଜ୍ଞାନ ହିଁ ସାହିତ୍ୟକୁ ନଷ୍ଟ କରୁଛି। ଯେପରି ଟେଷ୍ଟଟ୍ୟୁବ ବେବିର ଜନ୍ମ ଦ୍ୱାରା ପିଲାଙ୍କ ପିତାମାତାର ପରିଚୟ ପାଉନି। ପରିବାର ସଦସ୍ୟଙ୍କୁ ନେଇ ଯେଉଁସବୁ ଅନୁଭବ ମନୁଷ୍ୟର ଏକ ସ୍ୱତଃ କ୍ରିୟା ସେହି ଅନୁଭବ ତା' ପାଖରେ ଆସିପାରୁ ନାହିଁ। ବିଜ୍ଞାନ ମଣିଷର ଆୟତ୍ତରେ ରହିବା ଦରକାର ନଚେତ ବିଜ୍ଞାନ ମନୁଷ୍ୟର ସ୍ୱତଃପ୍ରବୃତ୍ତ କ୍ରିୟାମାନଙ୍କୁ ହତ୍ୟା କରିବ, ଯାହାର ଅଭାବରେ ସାହିତ୍ୟର ମଧ୍ୟ ବିନାଶ ଘଟିବ। ଅନୁଭବ ଥିଲେ ହିଁ ସାହିତ୍ୟ ରହିବ।





# ମୁଁ ସାହିତ୍ୟ ପଛରେ ଗୋଡ଼ାଉଥିଲି

## ନିତ୍ୟାନନ୍ଦ ମହାପାତ୍ର:

ବିଶିଷ୍ଟ କଥାକାର ନିତ୍ୟାନନ୍ଦ ମହାପାତ୍ର। ଲେଖିଛନ୍ତି ଅନେକ, ଲେଖାଇଛନ୍ତି ମଧ୍ୟ ବହୁତ କିଛି। ଓଡ଼ିଆ ସାହିତ୍ୟ ଜଗତର ଏହି ପ୍ରଚଣ୍ଡ ପ୍ରତିଭାଧର ଏବେ ଆଉ ଆମ ଗହଣରେ ସଶରୀରରେ ନାହାନ୍ତି। ପରଲୋକ ଗମନ କରିବାର ବେଶ୍ କିଛିଦିନ ପୂର୍ବରୁ ତାଙ୍କ ସହ ହୋଇଥିବା ଆଳାପ।

ପ୍ରଶ୍ନ: ଆପଣଙ୍କ ସମୟରେ ଲେଖକଙ୍କ ସଂଖ୍ୟା କମ୍ ଥିଲେ, ଏବେ କିନ୍ତୁ ଅନେକ ଲେଖକ ଅନେକ ସାହିତ୍ୟ ପତ୍ରିକା, କ'ଣ କହିବେ ?

ଉତ୍ତର. ହଁ, ଏକଥା ସତ । ତେବେ ଗୋଟିଏ କଥା ଦୁଃଖ ଲାଗୁଛି ଆମ ପଦ୍ୟ ସାହିତ୍ୟ ଇଂଲିଶ ସହିତ୍ୟର ପ୍ରଭାବରେ ନଷ୍ଟ ହୋଇଯାଇଛି । ଏହା ମୋତେ ଭଲ ଲାଗୁ ନାହିଁ । ସାହିତ୍ୟ ପତ୍ରିକା କହିଲେ ସେତେବେଳେ ଅଙ୍ଗୁଳି ଆଗରେ ଗଣି ହେଉଥିଲା, ବର୍ତ୍ତମାନ ତ ଶହ ଶହ ପତ୍ରିକା ।

ପ୍ରଶ୍ନ: ପତ୍ରିକା ସଂଖ୍ୟା ବଢ଼ିବାରେ କି କାରଣ ହୋଇପାରେ ଭାବୁଛନ୍ତି ?

ଉତ୍ତର. କାରଣ ଯାହାହେଉ ପଛେ ସାହିତ୍ୟର ଭାଷା ଖୁବ୍ ସୁନ୍ଦର ହୋଇଯାଇଛି, ପଦ୍ୟ ସାହିତ୍ୟକୁ ଛାଡ଼ି ।

ପ୍ରଶ୍ନ: କବିତା କିନ୍ତୁ ବହୁତ ଲେଖାହେଉଛି ?

ଉତ୍ତର. ହଁ, ସେ କଥା ସତ କିନ୍ତୁ ଆଜିର ପଦ୍ୟ ସାହିତ୍ୟରେ ନୂତନତ୍ୱ କିଛି ନାହିଁ । ଜନଜୀବନର ଅନୁଭୂତି ଉପରେ ଲେଖା କାହିଁ ?

ପ୍ରଶ୍ନ: ଆପଣ ଏକାଧିକ ଛଦ୍ମ ନାମରେ ଅନେକଗୁଡ଼ିଏ ଲେଖା ଲେଖିଛନ୍ତି, ତେବେ ଏତେଗୁଡ଼ିଏ ଛଦ୍ମନାମରେ ସାହାଯ୍ୟ ନେଲେ କାହିଁକି ?

ଉତ୍ତର. ହଁ, ମୁଁ ଏକାଧିକ ଛଦ୍ମନାମରେ ଗୋଟିଏ ସମୟରେ ଲେଖୁଥିଲି । ଏହା କରିବାର କାରଣ ହେଲା ଗୋଟିଏ ନାମରେ ଗୋଟିଏ ପତ୍ରିକାରେ ଏକାଧିକ ଲେଖା ଦେବା ଠିକ୍ ମନେକଲି ନାହିଁ । ଏଣୁ ଏକାଧିକ ଛଦ୍ମନାମର ସାହାର୍ଯ୍ୟ ନେଲି । ଗୋଟିଏ ପତ୍ରିକାର ସମ୍ପାଦନା ଦାୟିତ୍ୱରେ ଥିଲେ ଏଭଳି କରିବାକୁ ପଡେ ।

ପ୍ରଶ୍ନ: କାନ୍ତକବିଙ୍କ ଭଳି ଜଣେ ବିଶିଷ୍ଟ କବିଙ୍କର ଆପଣ ପୁଅ । ବାପାଙ୍କ ସହ କିପରି ଅନୁଭୂତି ଆପଣଙ୍କର ?

ଉତ୍ତର. ବାପା ଥରେ ଭଦ୍ରକର ଜଣେ ଅବସରପ୍ରାପ୍ତ ହେଡମାଷ୍ଟରଙ୍କ ପାଖରେ ବସିଥିଲେ । ମୋର ବି ହେଡମାଷ୍ଟର ଥିଲେ ସେ, ମୁଁ ଭଦ୍ରକ ହାଇସ୍କୁଲରେ ପଢୁଥିବାବେଳେ । ସେଇଠି ବାପା କହିଲେ- "ମୋର ନିତ୍ୟାନନ୍ଦ ଖୁବ୍ ପାରଙ୍ଗମ - ସାହିତ୍ୟରେ, ସବୁକଥାରେ । କିନ୍ତୁ ଗୋଟିଏ କଥାରେ ମୋର ନିକଟବର୍ତ୍ତୀ ହୋଇପାରିଲା ନାହିଁ । ସେଥିପାଇଁ ମୋର ମନରେ ବେଳେବେଳେ ସନ୍ଦେହ ହୁଏ, ସେ ମୋର ପୁଅ କି ନୁହେଁ । ମୁଁ ବସିଛି ପାଖରେ । ସେହି ଶିକ୍ଷକ ତାଙ୍କ ଶାଳକ ହିସାବ ହେବେ, କହିଲେ - ହେତ୍, ପୁଅଟା ବସିଛି ତମେ ଏମିତି କଥା କହୁଛ । ସେଇଠୁ ବାପା କହିଲେ - ନା, ଏମିତି କଥା ମୁଁ କାହିଁକି କହିଲି, ଶୁଣ - ସେ

ମୋର ସବୁ ସାହିତ୍ୟକୁ ଅନୁକରଣ କରି ଟପିଯାଇଛି। କିନ୍ତୁ ଗୋଟିଏ କଥାରେ ମୋର ଦୁଃଖ ରହିଯାଉଛି। ସନ୍ଦେହ କାହିଁକି ନା, ମୋର ସଙ୍ଗୀତରେ ସେ ପ୍ରବେଶ କରିପାରିଲା ନାହିଁ।

ପ୍ରଶ୍ନ: ଆପଣ ଏତେ ସୁନ୍ଦର ସାହିତ୍ୟ କରନ୍ତି ତେବେ ସଙ୍ଗୀତରେ ପଶି ପାରିଲେନି କାହିଁକି ?

ଉତ୍ତର. ବାପାଙ୍କର ଜଣେ ଶିଷ୍ୟ ଜଗବନ୍ଧୁ ସାହୁଙ୍କୁ ଥରେ ମୁଁ ଡାକି ମୋତେ ସଙ୍ଗୀତ ଶିଖାଇବାକୁ କହିଲି। ସେ ମୋତେ କହିଲେ, "ତୋ ଗଳା ତ ସୁନ୍ଦର ନୁହେଁ, ତୁ ଗୋଟେ କଥା କର, ଡୁବି ତାବଲା ଶିଖ। ସଙ୍ଗୀତର ଗୋଟେ ଧାରା ତ ସିଏ। ମୁଁ ତା'ପରେ ଡୁବି ତାବଲା ଶିଖିଲି। ପନ୍ଦର ଦିନ ପରେ ମୁଁ ଆରେଷ୍ଟ ହୋଇଗଲି। ସେଠୁ ଡୁବି ତାବଲା ଶିଖିବା ବନ୍ଦ ହୋଇଗଲା। ପ୍ରଥମେ ସେ 'ତାରେକେଟେ ଧା...'କୁ ମାସେ ଶିଖିବା ପାଇଁ କହିଥିଲେ। ଏଇଥିରେ ହାତ ଫେରିଗଲେ ଅନ୍ୟ ତାନ୍ ସେ ଶିଖାଇଥାନ୍ତେ।

ପ୍ରଶ୍ନ: ଆପଣ ହଠାତ୍ ସ୍ୱାଧୀନତା ସଂଗ୍ରାମକୁ ଆସିଗଲେ କେମିତି ?

ଉତ୍ତର. ଆସିବା ଜରୁରୀ ଥିଲା ସମୟକୁ ଚାହିଁ। ଏକାଦଶ ପରୀକ୍ଷା ଦେଇନାହିଁ ଲବଣ ସତ୍ୟାଗ୍ରହରେ ଯୋଗଦେଇ ଏମିତି ବକ୍ତୃତା ଦେଲି ଯେ ମୋତେ ଆରେଷ୍ଟ କରିନେଲେ। ବକ୍ତୃତା ଅତି ଚମତ୍କାର ହେଉଥିଲାବୋଲି ଶୁଣିଥିବା ଲୋକ କହନ୍ତି।

ପ୍ରଶ୍ନ: ସାହିତ୍ୟକୁ ନେଇ ଆପଣଙ୍କ ସ୍ୱପ୍ନ ସେତେବେଳେ କ'ଣ ଥିଲା ?

ଉତ୍ତର. ସ୍ୱପ୍ନ କ'ଣ – ମୁଁ ତ ସାହିତ୍ୟ ପଛରେ ଗୋଡ଼େଇଥିଲି। ଜେଲ୍‌ଖାନା ଭିତରେ ସାହିତ୍ୟ ଲେଖୁଥିଲି। ସାହିତ୍ୟ ମୋର ଜନ୍ମଗତ ଅଧିକାର।

ପ୍ରଶ୍ନ: ଏବର ସାହିତ୍ୟକୁ କ'ଣ କହିବେ ?

ଉତ୍ତର. ଏ ସାହିତ୍ୟ ତିଷ୍ଠିବନି, ମରିଯିବ। ନୂଆ ଲେଖା ଆସିବ। ନିଶ୍ଚୟ ଏମିତି କିଛି ନୂଆ ଆସିବ ଓଡ଼ିଆ ସାହିତ୍ୟ ଜଗତକୁ। ଏକଥା ମୋର ଆଶା ଏବଂ ବିଶ୍ୱାସ।

ପ୍ରଶ୍ନ: ଆପଣ ଭଦ୍ରକ ନିର୍ବାଚନମଣ୍ଡଳୀରୁ ତିନିଥର ଜିତିବା ପରେ ଚତୁର୍ଥ ଥର ହାରିଗଲେ କେମିତି ?

ଉତ୍ତର. କାରଣ ମୋ ପାଖରେ ଟଙ୍କା ନଥିଲା। ଲୋକେ ଟଙ୍କାଖୋର ହୋଇଗଲେ। ଟଙ୍କା ନେଇ ଭୋଟ ଦେଲେ। ସେଥିପାଇଁ ମୁଁ ହାରିଗଲି। ରାଜନୀତି ଛାଡ଼ିଦେଲି।

ପ୍ରଶ୍ନ: ଅନେକ ରାଜନୀତି କରୁଛନ୍ତି କିନ୍ତୁ ରାଜନୀତିଜ୍ଞ ଅଛନ୍ତି କି ?

ଉତ୍ତର. ସେ କଥା ମୁଁ କହିପାରିବିନି । କିନ୍ତୁ ରାଜନୀତିଜ୍ଞମାନେ ଅର୍ଥନୀତିଜ୍ଞ ହୋଇଯାଇଛନ୍ତି ।

ପ୍ରଶ୍ନ: ଏବେ ଅଧିକ ସମୟ କେମିତି କାଟୁଛନ୍ତି ?

ଉତ୍ତର. ଟିଭି ସିରିଏଲ୍ ଦେଖି ।

ପ୍ରଶ୍ନ: ଟିଭି ସିରିଏଲ୍‌ରେ ଯାହା ଦେଖୁଛନ୍ତି ଏବେ ତାହା କ'ଣ ସାହିତ୍ୟ କଳ୍ପନାଠାରୁ ଅଧିକ ?

ଉତ୍ତର. ଠିକ୍ କଳ୍ପନା କହି ହେବନି । କିନ୍ତୁ ଆମ କଳ୍ପନାଠାରୁ ଟିକେ ଭିନ୍ନ କଳ୍ପନା ହୋଇ ଯାଇଛି । ତେବେ ଏହାକୁ ସାହିତ୍ୟରେ ନିଶ୍ଚୟ ଗଣାଯିବ । ଏ ଯୋଉ ସିରିଏଲ୍ ସେଥିରୁ ଅନେକ ଶିଖିବାର ଅଛି । ଆମର ପଦ୍ୟଗୁଡ଼ିକ ଇଂଲିଶ ପ୍ରଭାବରେ । କିନ୍ତୁ ଏ ସିରିଏଲ୍‌ରେ ଇଂଲିଶ ପ୍ରଭାବ ନାହିଁ । ସେଇଥିପାଇଁ ଭଲ ଲାଗୁଛି । ଆଉ ସାହିତ୍ୟ ପତ୍ରିକାରେ ଯୋଉ ପଦ୍ୟ ସବୁ ବାହାରୁଛି, ତାକୁ ଗଦ୍ୟ ସାହିତ୍ୟ କି 'ଗଦ୍ୟ-ପଦ୍ୟ' କହିଲେ ଚଳିବ । କିନ୍ତୁ ସେସବୁ କବିତା ନୁହେଁ ।





# ଜିଦ୍‌ରୁ ଆରମ୍ଭ ହେଲା ବିପ୍ଳବ

## ରବି ସିଂ

**କ**ବିତାରେ ବିପ୍ଳବର ବହ୍ନି ଜାଳିଥିବା କବି ରବି ସିଂ। ସାମ୍ୟବାଦୀ ଚିନ୍ତାଧାରାରେ ପରିପୁଷ୍ଟ ତାଙ୍କର କାବ୍ୟ କବିତା। ମେହନତି ମଣିଷ ପାଇଁ ସତତ ମୁଖର ତାଙ୍କର କାବ୍ୟସ୍ୱର। ଯଥାର୍ଥରେ ସେ ବିପ୍ଳବୀ କବି। କାବ୍ୟ କବିତାର ପାହାଡ ସୃଷ୍ଟି କରିଥିବା ରବି ସିଂକୁ 'ଚରମପତ୍ର' କବିତା ପୁସ୍ତକ ପାଇଁ ୧୯୬୫ରେ ମିଳିଥିଲା ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର। ଅନୁବାଦରେ ମଧ୍ୟ ସେ ସିଦ୍ଧହସ୍ତ। 'ପକ୍ଷୀରାଜ ଓ ଅନ୍ୟାନ୍ୟ ଗଳ୍ପ' ଅନୁବାଦ ପୁସ୍ତକ ପାଇଁ ତାଙ୍କୁ ୧୯୬୮ରେ ମିଳିଛି ସୋଭିଏତ୍ ଲ୍ୟାଣ୍ଡ ନେହେରୁ ପୁରସ୍କାର। କବିତାରେ ସେ କେତେବେଳେ ଫୁଟାଇଛନ୍ତି ଗୁଳି ତ ପୁଣି ପ୍ରେମର ଫଲ୍‌ଗୁ ପ୍ରବାହିତ କରିଛନ୍ତି। ଶତାଧିକ କାବ୍ୟ କବିତା, ଗଳ୍ପ, ଅନୁବାଦ, ସମାଲୋଚନା, ନିବନ୍ଧର ସ୍ରଷ୍ଟା ରବି ସିଂଙ୍କ ସହ ଆଳାପ।

ପ୍ରଶ୍ନ. ପିଲାଦିନୁ ଆପଣ କ'ଣ ବିପ୍ଳବୀ ?

ଉତ୍ତର. ମୋ ପିଲାଦିନ ଥିଲା ଖୁବ୍ ଭୟାନକ। ମୋର ସ୍ୱର୍ଗତ ପିତା ରାମଚନ୍ଦ୍ର ସିଂହଙ୍କ ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ ଯୋଗୁ ମୋ ପରିବାର ଖୁବ୍ ଅବହେଳିତ ହୋଇଥିଲା। ଅନେକ ପୈତୃକ ସମ୍ପତ୍ତି ସତ୍ତ୍ୱେ ଭୋକ ହେଲେ ବରଫଳ ଖାଇ ପେଟ ପୁରାଉଥିଲି, ଶୋଷ ହେଲେ କୂଅରୁ ପାଣି ପିଉଥିଲି। ମା'ଙ୍କଠାରୁ ଯାହା ଅକ୍ଷର ଶିକ୍ଷା କରିଥିଲି, ପାଠଶାଳାର ମୁଖଦର୍ଶନ କରିଥିଲି ମାତ୍ର ଘଣ୍ଟାକ ପାଇଁ। ତାହା ହିଁ ମୋର ଶିକ୍ଷାଗତ ଯୋଗ୍ୟତାର ଆରମ୍ଭ ଆଉ ଶେଷ। ଶିକ୍ଷକଙ୍କଠାରୁ ମାଡ଼ ମୋ ଭିତରେ ଜିଦ୍ ଆଣିଦେଲା ଯେ ପାଠ ନ ପଢ଼ି ଜ୍ଞାନ ଅର୍ଜନ କରିବି। ଏହି ଜିଦ୍‌ରେ ଆରମ୍ଭ ହେଲା ବିପ୍ଳବ ମନୋଭାବ।

ପ୍ରଶ୍ନ. ଆପଣ ପ୍ରଥମେ ସୋସାଲିଷ୍ଟ ପାର୍ଟି, ଭାରତୀୟ କମ୍ୟୁନିଷ୍ଟ ପାର୍ଟି, ଏସ୍‌ୟୁଡିଆଇ ଦଳ ଭିତର ଦେଇ ଆସି ୧୯୫୫ରେ ପର୍ତ୍ତୁଗିଜ ଗୋଆର ମୁକ୍ତି ଆନ୍ଦୋଳନରେ ଅଂଶଗ୍ରହଣ କରିଥିଲେ। ସେ ସବୁ ସଂଗଠନରୁ ମୁକୁଳି ଏପରି ଏକନିଷ୍ଠ ସାରସ୍ୱତ ଜୀବନ ଭିତରେ କେମିତି ସାମିଲ ହେଲେ ?

ଉତ୍ତର. ଏହିସବୁ ପାର୍ଟିରେ କାମ କରି ମୁଁ ଖୁବ୍ ନିର୍ଯାତନା ପାଇଲି। ଏପରି ହିପୋକ୍ରାଟ୍‌ଙ୍କ ସହ କାମ କରିବାକୁ ପସନ୍ଦ କଲିନି। ଏମିତି ତ ମୋ ପିତା ଥିଲେ ଜଣେ କବି ଏବଂ ଗୀତିକାର। ସେ ଦୃଷ୍ଟିରୁ ମୋ ରକ୍ତରେ ବି କବି ଭାବର ଉଦ୍‌ବେଳନ। ଗୋଦାବରୀଶ ମହାପାତ୍ରଙ୍କ ସହ ଏକାତ୍ମକ ଏବଂ ତାଙ୍କରି ସାରସ୍ୱତ ବ୍ୟକ୍ତିତ୍ୱର ପ୍ରଭାବ ସହିତ ଓଡ଼ିଆ ଗଦ୍ୟ ସାହିତ୍ୟର ଅନ୍ୟତମ ଅଭେଦ୍ୟଦୁର୍ଗ ସ୍ୱର୍ଗତ ସୁରେନ୍ଦ୍ର ମହାନ୍ତିଙ୍କ ସହିତ ଏକତ୍ର ବସବାସ ଭିତରେ ତାଙ୍କର ପ୍ରେରଣା ଭରିଦେଲା। ମୋର ଅନୁସିନ୍ଧିତ୍ସା, ଅଧ୍ୟୟନ ଏ ସବୁ ମୋତେ ଏକନିଷ୍ଠ ସାରସ୍ୱତ ଜୀବନ ଭିତରେ ସାମିଲ ହେବାକୁ ବାଧ୍ୟକଲା।

ପ୍ରଶ୍ନ. କିପରି କବି ଜୀବନର ଅୟମାରମ୍ଭ ?

ଉତ୍ତର. ୧୯୮୯ ସମିହାରେ ପ୍ରଥମ କବିତା 'ପଥପ୍ରାନ୍ତ କବିତା'। ପ୍ରଥମେ ପ୍ରଥମେ ଅନେକ ଗୀତ ଲେଖିଲି ଏବଂ ଗାଇଲି ମଧ୍ୟ। ମୋର ସ୍ମରଣଶକ୍ତି ପ୍ରବଳ ଥିଲା। ବିଭିନ୍ନ ସାହିତ୍ୟ ସଭାର ପଛ ଚୌକିରେ ବସି କବିତା ଆବୃତ୍ତି ଶୁଣୁଥିଲି। ଆଉ ସେଗୁଡ଼ିକ ମନେ ରଖୁଥିଲି। 'ନବଜୀବନ' ପତ୍ରିକାଟି ମୋ ସାହିତ୍ୟ ଜୀବନର ଉନ୍ମେଷ କରିଛି।

ପ୍ରଶ୍ନ. ‘ପଥପ୍ରାନ୍ତ କବିତା’ର ଉନ୍ମୋଚନ ସମୟ ଏବଂ ବର୍ତ୍ତମାନର ଶେଷ କବିତା ସଂକଳନ ‘ବାଟୋଇ’ର ଉନ୍ମୋଚନ ସମୟ ମଧ୍ୟରେ କେତେ ତଫାତ୍?

ଉତ୍ତର. ମୋ ସାହିତ୍ୟ ଜୀବନର ୩ଟି ପର୍ଯ୍ୟାୟ। ପ୍ରଥମ ପର୍ଯ୍ୟାୟ ସାମାଜିକ ବିଦ୍ରୋହୀ, ଦ୍ୱିତୀୟ, ଜାତୀୟତାବାଦୀ ଏବଂ ତୃତୀୟ ଆନ୍ତର୍ଜାତିକବାଦୀ। ‘ପଥପ୍ରାନ୍ତ କବିତା’ ସାମାଜିକ ବିଦ୍ରୋହୀ ପର୍ଯ୍ୟାୟଭୁକ୍ତ ଏବଂ ‘ବାଟୋଇ’ ଆନ୍ତର୍ଜାତିକବାଦୀ ପର୍ଯ୍ୟାୟଭୁକ୍ତ। ଆନ୍ତର୍ଜାତିକତାବାଦିତା ଆସିଲା ନକ୍ସଲ ଆନ୍ଦୋଳନରୁ।

ପ୍ରଶ୍ନ. ‘ଚରମପତ୍ର’ କବିତା ରଚନା ପଛରେ ରକ୍ଷଣଶୀଳ ମାନସିକତାକୁ ଘାଏଲ କରିବାର ଯେଉଁ ଉଦ୍ଦେଶ୍ୟ ସେଥିରେ କେତେ ସଫଳ ହୋଇଛନ୍ତି?

ଉତ୍ତର. ‘ଚରମପତ୍ର’ ପ୍ରକାଶନ ପରେ ଯେଉଁ ରକ୍ଷଣଶୀଳ ବିକ୍ଷୋଭ ଦେଖାଯାଇଥିଲା ତାହା ପରୋକ୍ଷରେ ମୋତେ ଦେଇଥିଲା ବିଜୟର ଜୟମାଲ୍ୟ। ଚରମପତ୍ରକୁ ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କୃତ କରିଥିଲା ୧୯୬୫ ମସିହାରେ। ଏବେ ଯୁକ୍ତ ଦୁଇ କୋର୍ସରେ ତାହା ସଂଯୋଜିତ ହୋଇଛି।

ପ୍ରଶ୍ନ. ‘ଯେଚ୍ଛାତା କବିତା’ ଗ୍ରନ୍ଥରେ ଅନେକ ସାମାଜିକ ନେତୃବୃନ୍ଦଙ୍କୁ ପ୍ରତୀକ ଭାବେ ବ୍ୟବହାର କରିଛନ୍ତି ସେମାନଙ୍କଠାରୁ କିଛି ପ୍ରତିକ୍ରିୟା ପାଇଛନ୍ତି କି?

ଉତ୍ତର. ସେମାନଙ୍କ ନୀରବ ପ୍ରତିକ୍ରିୟା। କାରଣ ସେମାନଙ୍କ ଜୀବନ ଏତେ ପଚା, ଏତେ ପୂତିଗନ୍ଧମୟ ଯେ ସେମାନେ ମୁହଁ ଖୋଲିଥିଲେ ଅଧିକ ବିପଦରେ ପଡ଼ିଥାନ୍ତେ। ସେମାନଙ୍କ ପ୍ରତି ମୋର କୌଣସି ବ୍ୟକ୍ତିଗତ ବିଦ୍ୱେଷ ନାହିଁ।

ପ୍ରଶ୍ନ. ବିପ୍ଳବ କବିତା ଲେଖୁ ଲେଖୁ ପ୍ରେମ କବିତା କେମିତି ଲେଖିଲେ?

ଉତ୍ତର. ମୁଁ ବି ଯୁବକ ଥିଲି। ମୋ ଜ୍ଞାନର ପରିସୀମା ଏତେ ପରିବ୍ୟାପ୍ତ ନ ଥିଲା। ତା’ଛଡା ମୁଁ ଅତ୍ୟନ୍ତ ସରଳ, ଅକପଟ, ଅତି ସହଜରେ ମଣିଷକୁ ବିଶ୍ୱାସ କରୁଥିଲି। କିନ୍ତୁ ସରଳତାର ଗରଳ ମୋତେ ନୀଳକଣ୍ଠରେ ରୂପାୟିତ କରିଛି। ମୁଁ ବିଶ୍ୱକଲ୍ୟାଣ ପାଇଁ ଉଦ୍ଦିଷ୍ଟ ସମାଜକୁ ଭଲପାଏ, ବ୍ୟକ୍ତିବିଶେଷକୁ ନୁହେଁ। ସେଥିପାଇଁ ମୋ ଜୀବନ ହୋଇଉଠିଛି କ୍ଷତିର ଖତିଆନ।

ପ୍ରଶ୍ନ. କବିଟିଏ ହେବାକୁ ହେଲେ କି କି ଉପାଦାନ ନିହାତି ଦରକାର?

ଉତ୍ତର. ଚେଷ୍ଟାକରି କିଏ କବି ହୁଏନି। କବିତ୍ୱର ଭିତ୍ତିଭୂମି ହେଲା ସାମାଜିକ ଆବହ

ସହିତ କିଛି ପ୍ରତିଭା ଯାହା କବିତା ସାହିତ୍ୟର ଏକ ସୂକ୍ଷ୍ମତମ ବିଭବ । ତେଣୁ ହଠାତ୍ କବି ହେବା ପାଇଁ ସ୍ୱପ୍ନ ଦେଖିବା ଏକ ନିର୍ବୋଧତା । ମୋର ଲେଖକ ଜୀବନର ଆରମ୍ଭ ହୋଇଥିଲା ଗଦ୍ୟ ରଚନାରୁ । ପରେ ଅନୁରଣିତ ହୋଇଥିଲା କାବ୍ୟର ନୂପୁରଧ୍ୱନି । ଗଦ୍ୟର ମରୁବାଲି ଅତିକ୍ରମ କରି ମୁଁ ପହଞ୍ଚି ଥିଲି ମୋର ବିଦ୍ରୋହିଣୀ କାବ୍ୟଦେବୀ ପାଖରେ ।





# ସାହିତ୍ୟରେ ରାଜନୀତି ଅସହନୀୟ

## ଶ୍ରୀନିବାସ ଉଦ୍‌ଗାତା:

**କ**ବିତା, ଗଳ୍ପ, ଉପନ୍ୟାସ, ନାଟକ ଅନୁବାଦ-ସାହିତ୍ୟରେ ସବୁ ବିଭାଗରେ ପ୍ରବେଶ ରହିଛି ତାଙ୍କର। ଦୀର୍ଘ ବର୍ଷଧରି ସାରସ୍ୱତ ସାଧନାରେ ବ୍ରତୀ ରହିଥିବା ଶ୍ରୀନିବାସ ଉଦ୍‌ଗାତାଙ୍କୁ ମିଳିଛି ଦେଶର ଅନ୍ୟତମ ସମ୍ମାନ ପଦ୍ମଶ୍ରୀ। ପରିଣତ ବୟସରେ ବି ଲେଖାଲେଖିରେ ନିଜକୁ ନିମଜ୍ଜିତ କରି ରଖିଛନ୍ତି ସେ ନିଜକୁ।

ପ୍ରଶ୍ନ: ସାହିତ୍ୟରେ ଆପଣଙ୍କ ନିରଳସ ସାଧନା ଆପଣଙ୍କୁ ଦେଇଛି ସଫଳତା ଏବଂ ଅନେକ ସମ୍ମାନ କିଭଳି ଅନୁଭବ କରୁଛନ୍ତି ?

ଉତ୍ତର. ବହୁତ ଖୁସୀ। ବୟସ୍କଙ୍କୁ ମୁଣ୍ଡିଆ ମାରିଲେ ସେମାନେ ଯେତେବେଳେ ମୁଣ୍ଡ ଉପରେ ହାତ ଆଉଁଶି ଦିଅନ୍ତି ଯେମିତି ଖୁସିଲାଗେ, ଏହାପୁଣି ଦେଶର ସମ୍ମାନ। ଆମେ ଦେଶକୁ ଭଲ ପାଉ ତେଣୁ ଦେଶ ପ୍ରଦତ୍ତ ସମସ୍ତ ଜିନିଷ ଆମର ଗ୍ରାହ୍ୟ, ହେଲେ ବଳବୟସ ଥିବା ଅବସ୍ଥାରେ ଏଭଳି ସମ୍ମାନ ମିଳିଲେ ମଣିଷ ଟିକିଏ ଅଧିକ କର୍ମଠ ହୋଇପଡେ। କିନ୍ତୁ ଏହି ବୟସରେ ମନର ଆକାଶରେ ଉଡିବାର ଇଚ୍ଛା ହେଲେ ଶରୀର ବାଧକ ସାଜୁଛି।

ପ୍ରଶ୍ନ: ଆପଣ ସାହିତ୍ୟକୁ ଜୀବନର ଅଙ୍ଗ ଭାବରେ ଗ୍ରହଣ କରିଛନ୍ତି। ତେବେ ଏହି ପ୍ରେରଣା ପାଇଲେ କେମିତି ?

ଉତ୍ତର. ବାପା ଶ୍ରୀଧର ଉଦ୍‌ଗାତା ଶାନ୍ତିନିକେତନରେ ପାଠ ପଢ଼ିଥିଲେ। ବଲାଙ୍ଗୀର ସହରରେ ସାହିତ୍ୟ ଓ ସାଂସ୍କୃତିକ ଜୀବନକୁ ନୂଆ ଢଙ୍ଗରେ ଗଢ଼ି ତୋଳିଥିଲେ। ଘରେ ତିଆରି ଥିଲେ ବଡ ଲାଇବ୍ରେରୀ। ତାଙ୍କ ଲାଇବ୍ରେରୀରୁ ସୁନ୍ଦର ଗପ କି କବିତା ବହିଟିଏ ପଢ଼ି ଏମିତି ମୁଁ ବି ଲେଖିପାରନ୍ତି କି ବୋଲି ମନର ଇଚ୍ଛା ସାହିତ୍ୟ ଆଡକୁ ମୋତେ ଟାଣି ନେଲା। ସାହିତ୍ୟ ସ୍ୱତଃସ୍ଫୂର୍ତ୍ତ। ଜାଗତିକ ପ୍ରେରଣା ଖାଲି ଆଳ। ମୂଳ ପ୍ରଭୁଙ୍କ କରୁଣା। ପ୍ରତ୍ୟେକ ମଣିଷ ହେଉଛି ଜଣେ ଚିତ୍ରକର, ଜଣେ ଗାୟକ, ଜଣେ କବି। କିନ୍ତୁ ପ୍ରଭୁଙ୍କ କରୁଣା ତାକୁ ଏକ ନିର୍ଦ୍ଦିଷ୍ଟ ଦିଗରେ ଟାଣି ନେଇଥାଏ। କବିତା ଲେଖିଛି, ଗପ ଲେଖିଛି, ଉପନ୍ୟାସ ଲେଖିଛି, ନାଟ୍ୟଶାସ୍ତ୍ରରେ କାମ କରିଛି।

ପ୍ରଶ୍ନ: ସାହିତ୍ୟର ସବୁ ବିଭାଗରେ ଆପଣ ଲେଖନୀ ଚଳାଇଛନ୍ତି, ହେଲେ କେଉଁ ବିଭାଗ ଆପଣଙ୍କୁ ଭଲ ଲାଗେ ?

ଉତ୍ତର. ସାହିତ୍ୟର ସମସ୍ତ ଦିଗ ଯେପରି ଅନୁବାଦ କରିବା, ଛବି ଆଙ୍କିବା ଆଦି ରଚନାତ୍ମକ କାର୍ଯ୍ୟରେ ହାତ ଦେଇଛି। ହେଲେ କବିତା ହିଁ ମୋର ଆକର୍ଷଣ। ବ୍ୟକ୍ତି ନିଜର ଅଭିବ୍ୟକ୍ତିକୁ ପ୍ରକାଶ କରିବା ପାଇଁ ସାହିତ୍ୟ ସର୍ଜନା କରେ। ମୋ ପାଇଁ କବିତା ହିଁ ଶ୍ରେଷ୍ଠ ମାଧ୍ୟମ ହୋଇଛି, ଆତ୍ମିକ ଅଭିବ୍ୟକ୍ତି ପ୍ରକାଶରେ ଛୋଟ କବିତାରେ ବିରାଟ ଅଭିବ୍ୟକ୍ତି ପ୍ରକାଶ୍ୟ ହୋଇପାରେ।

ପ୍ରଶ୍ନ: ଏଗାରଟି ଭାଷାର ସାହିତ୍ୟ ଅନୁବାଦ କାର୍ଯ୍ୟ କରି ଆପଣ ସଫଳ ହୋଇଛନ୍ତି। ଅନୁବାଦ ପ୍ରତି ଏତେ ଆକର୍ଷଣ କିପରି ?

ଉତ୍ତର. ମୋ ପାଇଁ ଅନୁବାଦ କେବଳ ଭାଷାର ରୂପାନ୍ତର ନୁହେଁ। ଟ୍ରାନ୍ସଲେସନ ନୁହେଁ, ଟ୍ରାନ୍ସକ୍ରିଏସନ ବା ଅନୁସର୍ଜନା। ଭାରତବର୍ଷରେ ବହୁତ ଭାଷା। ସବୁ ଭାଷା ସୁନ୍ଦର ଓ ମିଠା। ଏହି ସମସ୍ତ ଭାଷାର ସାହିତ୍ୟକୁ ଆମେ ଆସ୍ୱାଦନ କଲେ, ଭାବର ଆଦାନପ୍ରଦାନ ହେବ ଓ ଦେଶର ଭାବାତ୍ମକ ଏକାତ୍ମତା ପ୍ରତିଷ୍ଠା ହୋଇପାରିବ। ସେଥିପାଇଁ ଅନୁବାଦର ମହତ୍ତ୍ୱ ରହିଛି। କିନ୍ତୁ ଅନୁବାଦ ଯାହା ମୁଁ ପୂର୍ବରୁ କହିଛି କେବଳ ଭାଷାର ରୂପାନ୍ତର ନ ହୋଇ ଅନୁସର୍ଜନା ହେବା ଉଚିତ। ଅର୍ଥାତ ଯେଉଁ ଭାଷାର, ଯେଉଁ ବିଷୟକୁ ଅନୁବାଦ କରାଯାଉଛି ସେହି ବିଷୟକୁ ଆମ ଭାଷାରେ ଆମ ଢ଼ଙ୍ଗରେ ପରିପ୍ରକାଶ।

ପ୍ରଶ୍ନ: ଆପଣ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଥିଲେ। ସେ ସମୟରେ ଓଡ଼ିଆ ସାହିତ୍ୟର ବିକାଶ ଦିଗରେ ନେଇଥିବା କିଛି ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ଉପରେ କହିବେ କି ?

ଉତ୍ତର. ମୋ କାର୍ଯ୍ୟକଳାପରେ ଓଡ଼ିଶା ସାହିତ୍ୟ ଏକାଡେମୀ ସାହିତ୍ୟିକଙ୍କ ପାଇଁ ବହୁ ଆଲୋଚନାଚକ୍ର ଓ କର୍ମଶାଳା ଆୟୋଜନ କରିଥିଲା। ପୂର୍ବାଞ୍ଚଳ ସାଂସ୍କୃତିକ କେନ୍ଦ୍ର ସହଯୋଗରେ ଏକାଡେମୀ ପୂର୍ବାଞ୍ଚଳ କବିମାନଙ୍କୁ ନେଇ ଏକ କର୍ମଶାଳା (କାବ୍ୟ ବିନୋଦ) ଆୟୋଜନ କରିଥିଲା। ଏହାଥିଲା ମୋ ପାଇଁ ଓ ପୂର୍ବାଞ୍ଚଳର କବିମାନଙ୍କ ପାଇଁ ଏକ ବିଶେଷ ଉପଲବ୍ଧି। ଏକାଡେମୀର ମୁଖପାତ୍ର କୋଣାର୍କର ପ୍ରତ୍ୟେକ ସଂଖ୍ୟାକୁ ନିର୍ଦ୍ଦିଷ୍ଟ ଏକ ପ୍ରସଙ୍ଗ ଉପରେ ଉତ୍ସର୍ଗୀକୃତ କରିଥିଲି। ଯଦ୍ଦ୍ୱାରା କୋଣାର୍କ ସଂପୃକ୍ତ ପ୍ରସଙ୍ଗର ଗବେଷଣାତ୍ମକ ପୁସ୍ତକର ପରିପାଟୀ ପାଇ ପାରିଥିଲା।

ପ୍ରଶ୍ନ: ସାହିତ୍ୟକୁ ନେଇ ରାଜନୀତି ହେବା ଉପରେ ଆପଣଙ୍କ ମତ କ'ଣ ?

ଉତ୍ତର. ଛି, ଅମୃତ୍ କେ ସାଥ୍ ଜହର ମିଲାଓଗେ। ଏହା ଏକ ସଂସ୍କାରର କଥା। ଆଜି ବି ବାରାଣସୀରେ ଗୋରସରେ ପାଣି ମିଶାଇବା କଥା କହିଲେ କେହି ବିଶ୍ୱାସ କରିବେ ନାହିଁ। ଗୋରସରେ ପାଣି ମିଶାଇବା ଯେଭଳି ଘୃଣ୍ୟ, ସାହିତ୍ୟରେ ରାଜନୀତି ସେଭଳି ଅସହନୀୟ।

ପ୍ରଶ୍ନ: କୋଶଳି-ସମ୍ବଲପୁରୀ ଭାଷା ସାହିତ୍ୟକୁ ନେଇ ଆପଣଙ୍କ କ'ଣ କହିବେ ?

ଉତ୍ତର. କୋଶଳୀ ଭାଷା ଐତିହାସିକ ପ୍ରମାଣ ସମର୍ଥିତ। ଏହାର ପାଞ୍ଚହଜାର ବର୍ଷ ତଳର ଇତିହାସ ରହିଛି। ଭାରତର ଶିଖର, ବ୍ୟାକରଣବିତ୍, ପାଣିନୀ ମଧ୍ୟ ଏହି ଭାଷାର ପ୍ରମାଣିକତା ଦର୍ଶାଇଛନ୍ତି। ଆଜି ବି ପ୍ରୟାଗରେ ଆର୍ଯ୍ୟବର୍ତ୍ତେ

କୋଶଳ ପ୍ରଦେଶ ମଗଧ ଦେଶେ ବୋଲି ଉଲ୍ଲେଖ ସହ ତିଳତର୍ପଣ କରାଯାଏ। ଏହି ଭାଷାକୁ ନେଇ ରାଜନୀତିକ ମତଲବବାଜି ହେବା କଥା ନୁହେଁ। ସାହିତ୍ୟ ସୃଷ୍ଟିରେ ଏହି ଭାଷାର ବୈଶିଷ୍ଟ୍ୟ ଓ ନିରୁତାପଣକୁ ଜଗି ରଖିବାକୁ ହେବ। କୋଶଳୀ-ସମ୍ବଲପୁରୀ ନାମରେ ଆଲବମ୍ ଅପସଂସ୍କୃତି ମୋ ଛାତିରେ ଶରାଘାତ କରୁଛି।

ପ୍ରଶ୍ନ: ଯୁବପିଢ଼ିକୁ ଆପଣଙ୍କ ପରାମର୍ଶ କ'ଣ ?

ଉତ୍ତର. ଊର୍ଦ୍ଧ୍ବ ବହୁତ ପଢ଼ନ୍ତୁ। ରାଡ ହଣ୍ଡ୍ରେଡ ପର୍ସେଣ୍ଟ, ରାଇଟ ଫାଇଭ ପର୍ସେଣ୍ଟ। ସିଦ୍ଧ ଓ ସର୍ଜନା ବିଳାସରେ ନୁହେଁ ତପସ୍ୟାରେ ମିଳେ।





# ସାମାଜିକ ମୂଲ୍ୟବୋଧ ନ ରହିଲେ ଲେଖକୀୟ ସାଧୁତା ରହିବନି

## ହୃଷୀକେଶ ପଣ୍ଡା:

ନିଜ ଲେଖାରେ ଅନୁଭୂତି ଓ ଅନୁଭବକୁ ଖୁନ୍ଦି ଦେଉଥିବା କଥାକାର ହୃଷୀକେଶ ପଣ୍ଡା କିନ୍ତୁ ସାହିତ୍ୟରେ ସାମାଜିକ ମୂଲ୍ୟବୋଧକୁ ଉଚ୍ଚ ଦର୍ଜା ଦିଅନ୍ତି । ତାଙ୍କ ମତରେ ସାହିତ୍ୟରେ ସାମାଜିକ ମୂଲ୍ୟବୋଧ ନ ରହିଲେ ଲେଖକୀୟ ସାଧୁତା ରହିବା ଅସମ୍ଭବ । ତାଙ୍କ ଲେଖାରେ ଶୁଭେ ଅସ୍ତିତ୍ୱବାଦର ସ୍ୱର । କଥା ସାହିତ୍ୟରେ ଅନେକ ଆଗକୁ ଯାଇଥିବା ଶ୍ରୀ ପଣ୍ଡାଙ୍କ ସହ ଆଳାପ ।

ପ୍ରଶ୍ନ. ଜଣେ କଥାକାର ଭାବେ ଆପଣ ସାହିତ୍ୟରେ କଳା ଓ ସୌନ୍ଦର୍ଯ୍ୟ ସହ ନୈତିକତାକୁ କିପରି ବୁଝନ୍ତି ?

ଉତ୍ତର. ଜଣେ ଗୋଟିଏ କଥା ବିଷୟରେ ଲେଖିବାକୁ ଚାହୁଁଛି। ସେ ବିଷୟରେ ଯଦି ଅନୁଭୂତି ବା ଅନୁଭବ ନାହିଁ, ତାହାକୁ ମୁଁ ନୈତିକହୀନ ଲେଖା ବୋଲି କହିବି। ଯେଉଁ ବିଷୟରେ ଅନୁଭବ ବା ଅନୁଭୂତି ନାହିଁ, ସେ ବିଷୟରେ ମୁଁ ଲେଖିବି ନାହିଁ।

ପ୍ରଶ୍ନ. ଆପଣଙ୍କ ଗଳ୍ପ ଓ ଉପନ୍ୟାସରେ ଚରିତ୍ରଗୁଡିକ ସ୍ଥିତିବାଦୀ ମନେ ହୁଅନ୍ତି। ଏପରି କାହିଁକି ?

ଉତ୍ତର. ସବୁ ଜିନିଷ ଭାଗ୍ୟ, ଭଗବାନ ତିଆରି କରିଛନ୍ତି। ତା'ହେଲେ ତୁମେ ସ୍ଥିତିବାଦୀ(ଅସ୍ତିତ୍ୱବାଦୀ)ହେବ ନା-ତୁମେ ଯଦି ଭାବିବ ନାହିଁ ଯେ ଉପରୁ କେହି ଜଣେ ତୁମ ଜୀବନଟାକୁ ନିୟନ୍ତ୍ରିତ କରୁଛି-ମୁଁ ତ କୌଣସି ଜାଗାରେ ଭାବେ ନାହିଁ।

ପ୍ରଶ୍ନ. କିନ୍ତୁ ଆପଣଙ୍କ 'ଦସ୍ୟୁ'ରେ ଆଧିଭୌତିକ କଥା ଅବତାରଣା କରିଛନ୍ତି ?

ଉତ୍ତର. ହଁ, କେବଳ 'ଦସ୍ୟୁ'ରେ ଆପଣ ଦେଖିବେ ପ୍ରଥମ ଥର ପାଇଁ ଆଧିଭୌତିକ କଥାର ଏକ ଅବତାରଣା ରହିଛି। ମଣିଷ ନିଜର ଭାଗ୍ୟନିୟନ୍ତା ଓ ଭଗବାନଙ୍କ ଉପରେ ତା'ର କର୍ମଫଳ ଛାଡିଦେଇପାରିବ ନାହିଁ। ଅସ୍ତିତ୍ୱବାଦର ବକ୍ତବ୍ୟ ଏହାଠାରୁ ବିଶେଷ ଭିନ୍ନ ନୁହେଁ। ନ ହେଲେ ମୁଁ ତ ସବୁବେଳେ ଏଇଠି ପୃଥିବୀ ଭିତରେ ଥାଏ।

ପ୍ରଶ୍ନ. ସାମାଜିକ ଦୃଷ୍ଟିଭଙ୍ଗୀ ଆପଣଙ୍କର ଖୁବ୍ ତୀବ୍ର ଓ ଶାଣିତ, ଯାହାକି ଆପଣଙ୍କ ଲେଖାରୁ ପରିସ୍ଫୁଟ। କିପରି ?

ଉତ୍ତର. ଅନୁଭବ ଏବଂ ଅନୁଭୂତି। ବହୁତ ବେଶି। ଜୀବନଟା ବି ତ ସେଥିରେ ଗଲା।

ପ୍ରଶ୍ନ. ସାହିତ୍ୟିକ ଜୀବନରେ ଗୋଟେ ଅନୁଭବ ଥାଏ, ବେଳେ ବେଳେ ମୁକ୍ତିବୋଧ ଉଙ୍କି ମାରେ। ଆଉ ତା'ଭିତରେ ବନ୍ଧନ ବି ରହିଥାଏ। ସେହି ଅନୁଯାୟୀ ସାହିତ୍ୟର ସୃଷ୍ଟି ହୁଏ କି ?

ଉତ୍ତର. ସମ୍ଭବତଃ ତମେ ଭାବର କଥା କହୁଛ-ସାହିତ୍ୟିକର ମୁଡ୍ ଯେପରି ବଦଳୁଥାଏ, ଲେଖାର ରସ ସେପରି ବଦଳିବାକୁ ବାଧ୍ୟ। ମଣିଷ କ'ଣ ସବୁବେଳେ ଗୋଟେ

ମୁଡ୍‌ରେ ଥାଏ-ଧରନ୍ତୁ 'ସୁନାପୁଟର ଲୋକେ'ରେ ଯେଉଁ କ୍ରୋଧଟା ଅଛି, ସେଇଟା 'ସୁବର୍ଣ୍ଣ ଦ୍ୱୀପ'ରେ ନାହିଁ-ସେ ଅସହାୟ ହୋଇଗଲା, ସେଇଟା ବଦଳିଯିବ ତ ! 'ଦସ୍ୟୁ'ରେ ତ ପୁରା ମାନେ ଆଧିଭୌତିକ।

ପ୍ରଶ୍ନ. ଆପଣଙ୍କ ସୃଷ୍ଟିରେ ପ୍ରତ୍ୟେକ ଲେଖା ଅଲଗା ଭାବରେ ଉପସ୍ଥାପିତ। କିନ୍ତୁ ଆପଣ ସମାନ ମନସ୍ଥିତିକୁ ଦର୍ଶାଇଛନ୍ତି 'ରେବତୀ' ଏବଂ 'ହରିଣ ପିଠିରେ ଅଜଣା ସୂର୍ଯ୍ୟାସ୍ତକୁ'ରେ। ଏହା କେମିତି ସମ୍ଭବ ହେଲା ?

ଉତ୍ତର. କେତେଟା ଗଳ୍ପ ଆରମ୍ଭ ହୋଇସାରି ପୁଣି ସେଟା ଉପନ୍ୟାସ ହେବା ହେତୁ ସେଇ ମନସ୍ଥିତିଟା ରହିଯାଇପାରେ,ଯେମିତି 'ରେବତୀ'ଓ 'ହରିଣ ପିଠିରେ ଅଜଣା ସୂର୍ଯ୍ୟାସ୍ତକୁ'ରେ ରହିଛି। ଏଠାରେ ସମାନ ମନସ୍ଥିତି ଦେଖିବାକୁ ମିଳିଛି। ଗୋଟେ ନିର୍ଦ୍ଦିଷ୍ଟ ଅବସ୍ଥାଠାରୁ ସାମାନ୍ୟ ଭିନ୍ନ।

ପ୍ରଶ୍ନ. ଆପଣଙ୍କ କାହାଣୀ, ଉପନ୍ୟାସରେ ଉଭୟ ବ୍ୟକ୍ତି ଚେତନାର ଅଭିବ୍ୟକ୍ତି ଓ ସାମାଜିକ ଦାୟିତ୍ୱ ପରିସ୍ଫୁଟ ହୋଇଛି। ତେବେ ଆପଣ କେଉଁଟିକୁ ଅଧିକ ଗୁରୁତ୍ୱ ଦିଅନ୍ତି ?

ଉତ୍ତର. ଲେଖକର ସାମାଜିକ ଦାୟିତ୍ୱ ରହିବା କଥା। ବିଶେଷତଃ ଗଳ୍ପ, ଉପନ୍ୟାସ, ନାଟକରେ। କବିତା କଥା ଛାଡିଦିଅନ୍ତୁ-କବିମାନେ ସବୁ ପଦ୍ମଫୁଲ ଖାଇକରି ବଞ୍ଚନ୍ତି। କିନ୍ତୁ ଗଳ୍ପ, ଉପନ୍ୟାସ, ନାଟକରେ ଯଦି ସାମାଜିକ ଦାୟିତ୍ୱବୋଧ ନ ରହିବ, ଲେଖକୀୟ ସାଧୁତା ତ ରହିବନି।

ପ୍ରଶ୍ନ. ସାହିତ୍ୟିକର ସାମାଜିକ ମୂଲ୍ୟବୋଧ ଓ ଦାୟିତ୍ୱ କ'ଣ ହେବା ଉଚିତ ବୋଲି ଆପଣ ଭାବୁଛନ୍ତି ?

ଉତ୍ତର. ଲେଖକମାନଙ୍କ ଭିତରେ ଏବେ ସମସ୍ତେ ପ୍ରାୟ ଚାକିରିଆ, ପ୍ରାୟ ସହରବାସୀ ଓ ମଧ୍ୟବିତ୍ତ। ଏହା ଫଳରେ ଆମର ଅନୁଭବ, ଅନୁଭୂତିଟା ଗୋଟେ ସୀମିତ ସଂସାର ଭିତରେ ରହିଯାଉଛି। ଏହା କେବଳ ଆମ ଅଞ୍ଚଳ ବା ଆମ ସାହିତ୍ୟରେ ନୁହେଁ, ପୃଥିବୀର ସବୁ ସାହିତ୍ୟରେ ଏଇ ଘଟଣା କ୍ରମଶଃ ଘଟିଲାଣି। ଆଉ ଆମର ମଧ୍ୟ ସେମିତି ତ ସାହିତ୍ୟିକଙ୍କୁ ପଇସା ମିଳେନାହିଁ ଯେ ଜଣେ ଲୋକ ଛୁଟି ନେଇ କିମ୍ବା ତାଙ୍କ କାମ ବନ୍ଦ କରି ସେମିତି ଜାଗାରେ ଯାଇ ରହିକି ଲେଖିବ।

ପ୍ରଶ୍ନ. ଆପଣଙ୍କ ପ୍ରଶାସନିକ ଅନୁଭୂତି ସାହିତ୍ୟକୁ ଅନୁପ୍ରେରିତ କରିଛି କି ?

ଉତ୍ତର. ନା, ସେଇଟା ମୁଁ କରେ ନାହିଁ। ମୋର ୬ ମାସରେ ଥରେ ବଦଳି ହେଇଯାଉଥାଏ, ତେଣୁ ଏହି ଅଭିଜ୍ଞତାଟା ମୋ ପାଇଁ ବ୍ୟାପକତର ହୋଇଥାଏ। ଥରେ ମୋତେ ଜଣେ କହିଲେ, 'କୋରାପୁଟ ବିଷୟରେ ଲେଖିଲେ ଆମେ ଭାବିଥିଲୁ ଆପଣ ଗୋପୀନାଥ ମାହାନ୍ତିଙ୍କ ଭଳି ଲେଖିବେ।' ମୁଁ କହିଲି ମୋ ଭାଗ୍ୟରେ ସେଇଟା ନାହିଁ। ଏତେ ସ୍ଥାନ ବଦଳି ପରେ କୋରାପୁଟ ବିଷୟରେ ସାରା ଜୀବନ ଲେଖିବାଟା ମୋର ଅସାଧୁତା ହେବ।

ପ୍ରଶ୍ନ. ଗଳ୍ପ,ଉପନ୍ୟାସ, ନାଟକ, ସିନେମା ଭିତରୁ କେଉଁଟିରେ ଆପଣ ଅଧିକ ଅଭିବ୍ୟକ୍ତ ପ୍ରକାଶ ପାଇଁ ସୁଯୋଗ ପାଆନ୍ତି ?

ଉତ୍ତର. ଯେଉଁ ଜିନିଷଟା ଗପରେ କହିହେବ, ସେଇଟା ଉପନ୍ୟାସ, ନାଟକରେ ସମ୍ଭବ ନୁହେଁ। ଧରନ୍ତୁ ଭାସ୍କୋ-ଡା-ଗାମା ଟାକୁ-ଏଇଟା ଭଲ ସିନେମା ହେବ ବୋଲି ମୁଁ ଭାବୁନାହିଁ, ଯଦିଓ ଏଇଟା ଭଲ ନାଟକ ବା 'ବ୍ରହ୍ମ ରାକ୍ଷସ' ନାଟକଟା କ'ଣ ଭଲ ଗଳ୍ପ ହୋଇଥାନ୍ତା ? ହୋଇ ନ ଥାନ୍ତା। କିନ୍ତୁ ନିଜକୁ ଆବିଷ୍କାର କରିଥାନ୍ତି। ମୁଁ ଯେମିତି 'ରେବତି' ଗଳ୍ପ ଲେଖିବା ଭିତରେ ଭାବିଲି ଏଇ ଥିମଟାକୁ ଉପନ୍ୟାସ କରିହେବ। ଯେପରି 'ହରିଣ ପିଠିରେ ଅଜଣା ସୂର୍ଯ୍ୟାସ୍ତକୁ' ସେଇ ମୁଡ୍‌ର ଉପନ୍ୟାସ ଧରାଯାଉ ବା 'ଛଞ୍ଚାଣ ଗପଟା ଲେଖିବା ପରେ 'ସୁଟାପୁଟର ଲୋକେ' ଉପନ୍ୟାସଟା...





# ନୂଆ କିଛି କହିବାର ନ ଥିଲେ ଲେଖାଯିବ କାହିଁକି ?

## ତରୁଣକାନ୍ତି ମିଶ୍ର

**ଓ**ଡ଼ିଆ ସାହିତ୍ୟ ଜଗତର ଅନ୍ୟତମ ଶ୍ରେଷ୍ଠ କଥାଶିଳ୍ପୀ ତରୁଣକାନ୍ତି ମିଶ୍ର। ପ୍ରଶାସନିକ ଚୌହଦିରେ ବନ୍ଦା ପଡ଼ିଥିବା ଏହି ସାରସ୍ୱତ ସାଧକ କିନ୍ତୁ ଫୁରସତ୍ ମିଳିଲେ ବୁଡ଼ିଯାଆନ୍ତି ସାହିତ୍ୟ ନିଶାରେ। ତାଙ୍କ ଲେଖନୀରୁ ଉତୁରି ଆସନ୍ତି ସଂଯୁକ୍ତାନାନୀ, ରଙ୍ଗନାଥ, ଲଳିତା ଆଦି ଅନେକ ଚରିତ୍ର, ଯେଉଁଠି ସେମାନଙ୍କୁ ଦେଖିବାକୁ ମିଳେ ମଧ୍ୟବିତ୍ତର ବାଡ଼ଘେରା ପରିସୀମା ମଧ୍ୟରେ। ତରୁଣକାନ୍ତିଙ୍କ ଗଳ୍ପରେ ଫୁଟିଉଠେ ମଧ୍ୟବିତ୍ତର ଦୁଃଖ, ମେହନତୀ ମଣିଷର ଆର୍ତ୍ତି ତାଙ୍କ ସାହିତ୍ୟକୃତି ସମ୍ପର୍କରେ ତାଙ୍କ ସହ ଆଲୋଚନାର କିଛି ଅଂଶ।

ପ୍ରଶ୍ନ: ଆପଣଙ୍କ ଗଳ୍ପର ପାଠକୀୟ ସ୍ୱୀକୃତି ସମ୍ପର୍କରେ ଏଭଳି କିଛି ଘଟଣା ଅଛି କି ଯାହା ଆପଣଙ୍କ ପାଇଁ ଅଭୁଲା ?

ଉତ୍ତର. ମୋର ପ୍ରଥମ କ୍ଷୁଦ୍ରଗଳ୍ପ ପ୍ରକାଶ ପାଇଥିଲା ମୁଁ ଦଶମ ଶ୍ରେଣୀର ଛାତ୍ର ଥିବା ସମୟରେ ସେଇ ଗପଟିର ସାରାଂଶ ମୁଁ ଶୁଣିଥିଲି ଜଣେ ଅଚିହ୍ନା ରେଳଯାତ୍ରୀଙ୍କଠାରୁ। ତା'ର କେତେବର୍ଷ ପରେ ସେ ମୋର ସେହି ଗପଟିକୁ ଶୁଣାଇଥିଲେ ତାଙ୍କର ଜଣେ ସହଯାତ୍ରୀ ବନ୍ଧୁଙ୍କୁ ଅତି ସଂକ୍ଷେପରେ। ମୋର ସେତେବେଳେ ସାହସ ହେଲା ନାହିଁ କହିବାକୁ ଯେ ଏ ଗପଟିର ଲେଖକ ମୁଁ। ଏହାର କେତେବର୍ଷ ପରେ, ଗୋଟିଏ ଜହ୍ନରାତିରେ ମୋ ସହିତ ବଗିଚାରେ ବସି ଗପସପ କରୁ କରୁ ମୋ ଘରକୁ ଆସିଥିବା ଜଣେ ଅତିଥି ଆକାଶକୁ ଚାହିଁ କହିଥିଲେ, ଏମିତି ଜହ୍ନରାତିରେ ମୋର ଗୋଟିଏ ଗପ ମନେପଡେ, ଯୋଉଥିରେ ଦି'ଧାଡି କବିତା ବି ଥିଲା ଏଇମିତି;

'ତୁମେ କେଉଁ ସ୍ୱପ୍ନ-ନୀଳ ଆକାଶର ତାରା
ଦୂର କେଉଁ ଗ୍ରହର ଇସାରା।'

ତା'ପରେ ସେ କହିଥିଲେ, ଏ ଗୋଟେ ପୁରୁଣା ଲେଖା। ଲେଖକ କିଏ ମୁଁ ଜାଣେନା, ହୁଏତ ସେ ଲୋକଟି ମରିହଜି ଗଲାଣି। ଭଦ୍ରଲୋକଙ୍କର ଏହି ମୃତ୍ୟୁ ଦଣ୍ଡ ମୋ ପାଇଁ ଗ୍ରହଣଯୋଗ୍ୟ ନ ଥିବାରୁ ମୁଁ ବାଧହୋଇ କହିଥିଲି, ଗପଟି ପ୍ରକାଶିତ ହୋଇଥିଲା 'ଝଙ୍କାର' ପତ୍ରିକାରେ ୧୯୭୨ ମସିହାରେ ଓ ଏହାର ଲେଖକଙ୍କ ନାମ ତରୁଣକାନ୍ତି ମିଶ୍ର। ଏହି ଦୁଇଟି ଘଟଣା ଆଜି ବି ମୋତେ ଆମୋଦିତ କରେ।

ପ୍ରଶ୍ନ: ଗହଳି ଭିତରୁ ନିଜକୁ ଦୂରେଇ ରଖି ସୃଜନ କର୍ମରେ ନିଜକୁ ବିନିଯୋଗ କରି ଚାଲିଛନ୍ତି ଆପଣ। ଏପରି ରହିବାକୁ କାହିଁକି ପସନ୍ଦ କଲେ ?

ଉତ୍ତର. ପିଲାଟି ଦିନରୁ ମୁଁ ମୋର ସାହିତ୍ୟିକ ଅଙ୍ଗୀକାର ସମ୍ପର୍କରେ ଅତ୍ୟନ୍ତ ସଚେତନ, ମୋର ଯୋଗ୍ୟତା ନେଇ ସଂଶୟାଚ୍ଛନ୍ନ, ପୁଣି ସମ୍ଭାବନା ନେଇ ଆଶାବାଦୀ। ଏ ସମସ୍ତ ଦ୍ୱିଧା ଭିତରେ ଯଦି ମୁଁ ନିଃସଙ୍ଗ ହୋଇଯାଏ, ତେବେ ତାହା ହିଁ ମୋର ଅବଶ୍ୟମ୍ଭାବୀ ପରିଣତି, ସେଥିରୁ ନିସ୍ତାର ନାହିଁ।

ପ୍ରଶ୍ନ: ଆପଣଙ୍କ ଗଳ୍ପଗୁଡ଼ିକରେ ଫ୍ଲାସ୍‌ବ୍ୟାକ୍ ରହିଥାଏ ଏବଂ କୈଶୋର ଜୀବନର କଥା ପରିଦୃଶ୍ୟ ହୁଏ, ଏମିତି କାହିଁକି ?

ଉତ୍ତର. ଆଡୋଲାସେନ୍‌ସ ବା କୈଶୋର ଜୀବନକୁ ନେଇ କେତେକ ଗପ ମୋର ସେହି କିଶୋର ବୟସର ହିଁ ଲେଖିଥିଲି ଫ୍ଲାସବ୍ୟାକ୍ ମିଡିୟମରେ। ମୁଁ ଦେଖିଥିଲି ଏହି ଟେକ୍‌ନିକରେ ସେସବୁ ଗପ ପୂର୍ଣ୍ଣତା ଆସିଲା ଯାହା ଅନ୍ୟଥା ଆସିପାରି ନଥାନ୍ତା। ଉଦାହରଣସ୍ୱରୂପ 'ଅନେକ ଦୂର', 'ସମ୍ପର୍କ', 'କୋମଳ ଗାନ୍ଧାର' ଓ 'ପ୍ରଜାପତିର ଡେଣା ନାହିଁ' ଏସବୁ ଗପ ମୁଁ ଅଳ୍ପ ବୟସରେ ହିଁ ଲେଖିଛି।

ପ୍ରଶ୍ନ: 'ଅଜଣା ତିଥିର ଜହ୍ନ' ଗପକୁ ଯିଏ ପଢ଼ିଛି ସେ ଗୁଞ୍ଜରିତ ହୋଇଛି। ତା' ଭିତରେ ଉନ୍ମାଦନା ସୃଷ୍ଟି ହୋଇଛି। କୋଡ଼ିଏ ବର୍ଷ ପରେ ନଷ୍ଟଲଜିକ୍ ହୋଇ ଏତେ ସୁନ୍ଦର ଗପଟିଏ ଲେଖିଥିଲେ। ସେ ଗଳ୍ପର ନାୟିକା ଏବେ କେଉଁଠି ?

ଉତ୍ତର. ସେ ଝିଅଟି ଏବେ ଅସଂଖ୍ୟ ପାଠକଙ୍କ ଛାତି ଗହୀରିରେ। ମତେ ଅନେକ ପାଠକ କୌତୂହଳୀ ହୋଇ ଏ ପ୍ରଶ୍ନଟି ପଚାରିଛନ୍ତି ଏବଂ ପୂର୍ଣ୍ଣତଃ ବିଶ୍ୱାସ କରିଛନ୍ତି ଯେ ଏ ଗୋଟେ ସତସତିକା କାହାଣୀ ଓ ଏହାର ନାୟକ ମୁଁ ନିଜେ। ଜଣେ ଲେଖକ ପକ୍ଷରେ ଏଭଳି ବଡ଼ ସୌଭାଗ୍ୟର କଥା, କାରଣ ଯେଉଁ ଗପରେ କଳ୍ପନା ଓ ବାସ୍ତବତା ମଝିରେ ସୀମାରେଖା ଉଭେଇଯାଏ ତାହା ହିଁ ସାର୍ଥକ ସାହିତ୍ୟ। କିନ୍ତୁ ଦୁଃଖ ଏତିକି, ଏ ଗୋଟେ ମନଗଢ଼ା କାହାଣୀ, ସତ ନୁହେଁ। ଆଜିକୁ ପନ୍ଦର ବର୍ଷ ତଳେ ମୁଁ ଯେତେବେଳେ ଦଣ୍ଡକାରଣ୍ୟ ପ୍ରୋଜେକ୍ଟର ଉପମୁଖ୍ୟ ପ୍ରଶାସକ ଥିଲି, ସେତିକିବେଳେ ଏ ଗଳ୍ପଟି ଲେଖା। ଗଳ୍ପଟିର ପରିକଳ୍ପନା କାପ୍‌ସି ଯିବା ରାସ୍ତାରେ। ସେ ବି ଥିଲା ସେମିତି ଜହ୍ନରାତି, ସେମିତି ଭିଜା ଭିଜା ଥିଲା ପବନରେ। ମୋ ପାଖରେ ସେତେବେଳେ ଯିଏ ଥିଲେ ତାଙ୍କ ନାମ ସୁଚରିତା ନୁହେଁ, ତାଙ୍କ ନାମ ସୁନନ୍ଦା। ଆମେ ଦୁହେଁ ମିଶି ଏ ଗପଟିର ନକ୍‌ସା ଗଢ଼ିଥିଲୁ। ସୁନନ୍ଦା ମୋର ସ୍ତ୍ରୀ।

ପ୍ରଶ୍ନ: 'ରଙ୍ଗନାଥ' ଗଳ୍ପରେ ଦୁଇଟି ବିରୋଧୀ ଚରିତ୍ରଙ୍କୁ ସ୍ଥାନିତ କରିଛନ୍ତି। ନିଜସ୍ୱ ଅନୁଭବ ନ ଥିଲେ ଏପରି ଏକ ଚରିତ୍ରକୁ ବ୍ୟାଖ୍ୟା କରିବା କଷ୍ଟ ନୁହେଁ କି ?

ଉତ୍ତର. ସେ ମୋ ସହିତ ମସୌରୀରେ ଏକାଠି ଆଇଏଏସ୍ ଟ୍ରେନିଂ ନେଉଥିଲା। ଏକାଠି ଆମେ ଥିଲୁ ବର୍ଷାଧିକକାଳ, ଗୋଟିଏ କୋଠରିରେ। ସେ ତାମିଲ୍ ଜାଣିଥିଲା, ମରାଠି ଜାଣିଥିଲା, ଇଂଲିଶ ଓ ହିନ୍ଦୀ ମଧ୍ୟ ଜାଣିଥିଲା। କିନ୍ତୁ ସେ ଓଡ଼ିଆ ଲେଖା କେବେ ଦିନେ ପଢ଼ିପାରିବ ନାହିଁ, ସେଇ ସାହସରେ ଏ ଗପଟି ମୁଁ ତାକୁ ନେଇ ଲେଖିଥିଲି।

ପ୍ରଶ୍ନ: ଆପଣଙ୍କ ଦ୍ୱାରା ରଚିତ ଗଳ୍ପ ସଂକଳନ ମଧ୍ୟରୁ କେଉଁଟି ବ୍ୟତିକ୍ରମ ବା ସ୍ୱତନ୍ତ୍ର ବୋଲି ମନେକରନ୍ତି ?

ଉତ୍ତର. ମୋତେ ଲାଗେ, ମୋର ପ୍ରତ୍ୟେକ ସଂକଳନରେ କିଛି ନା କିଛି ବ୍ୟତିକ୍ରମ ରହିଛି। କିଛି ନୂଆକଥା କହିବାର ନ ଥିଲେ, ଜଣେ ଲେଖକ ଲେଖିବ ବା କାହିଁକି ? କିନ୍ତୁ ମୋ ସାରସ୍ୱତ ପ୍ରୟାସର ମୂଲ୍ୟାୟନ ମୁଁ ନିଜେ କରିବା ଠିକ୍ ହେବ ନାହିଁ। ସେ ଅଧିକାର ପାଠକମାନଙ୍କର।

ପ୍ରଶ୍ନ: ଆପଣ ଗପରେ ପ୍ରାୟତଃ ଏକ କରୁଣ ପରିବେଶ ସୃଷ୍ଟି କରିଥାନ୍ତି, ଏହା କ'ଣ ଇଚ୍ଛାକୃତ ?

ଉତ୍ତର. ଅଧିକାଂଶ କ୍ଷେତ୍ରରେ ଗପଟିଏ ଆପେଆପେ ଗଢ଼ି ହୋଇଯାଏ। କିଛି କ୍ଷେତ୍ରରେ ଏହା ହିଁ ମନେହୁଏ ଅବଶ୍ୟମ୍ଭାବୀ ପରିଣତି।

ପ୍ରଶ୍ନ: ଆପଣଙ୍କ ଗପରେ ଚରିତ୍ରମାନେ ଭାବପ୍ରବଣ ହେଉ ହେଉ ପୁନଶ୍ଚ ବାସ୍ତବକୁ ସାମ୍ନା କରି କିଂକର୍ତ୍ତବ୍ୟମୂଢ଼ ହୋଇଉଠନ୍ତି ?

ଉତ୍ତର. ମୁଁ ଜାଣିଶୁଣି ସେପରି କରେ ନାହିଁ। ତାହା ହିଁ ଜୀବନ ବୋଲି ମୋର ପ୍ରତ୍ୟୟ ଓ ମୋ ଅଜାଣତରେ ମୁଁ ତାହା ହିଁ ଲେଖିପକାଏ।

ପ୍ରଶ୍ନ: ଆପଣ 'ଅନେକ ଦୂର' ଗପରେ ସଂଯୁକ୍ତାନାନୀ ଓ 'ଫୁଲ ମଉଳିବାର କାହାଣୀ' ରେ ଲଳିତା ଭଳି ପ୍ରିୟ ଚରିତ୍ରମାନଙ୍କୁ ସଂସାରରୁ ବିଦାୟ ଦେଇଛନ୍ତି। ଏହା କ'ଣ ପାଠକୀୟ ସମ୍ବେଦନା ସୃଷ୍ଟି କରିବା ପାଇଁ ନା ବାସ୍ତବ ପୃଷ୍ଠଭୂମିରେ ସେପରି ପରିଣତି ହିଁ ନିର୍ଦ୍ଧାରିତ ?

ଉତ୍ତର. ବାସ୍ତବ ପଟଭୂମିରେ ସେପରି ପରିଣତି ହିଁ ନିର୍ଦ୍ଧାରିତ। ଅନେକ ସମୟରେ ତାହା ହିଁ କରିବା ପାଇଁ ଗପଟିଏ ଲେଖିବାକୁ ପଡିଥାଏ। କିନ୍ତୁ ଜୀବନର ବର୍ଣ୍ଣାଢ଼୍ୟ ଉଜ୍ଜ୍ୱଳ ଦିଗନ୍ତ ବି ରହିଛି, ଯେମିତି ରହିଛି ମୋର ଅସରନ୍ତି କାହାଣୀ, ନିଡ଼, ଗୁପ୍ତଧନ, ଦୂରର ଅତିଥି ଆଦି କାହାଣୀରେ।

ପ୍ରଶ୍ନ: ମନେହୁଏ ଆପଣଙ୍କ ଗପରେ ମଧ୍ୟବିତ୍ତର ଦୁଃଖଟି ବେଶି ପ୍ରସ୍ଫୁଟିତ । ଏପରି ଏକ ମଧ୍ୟବିତ୍ତୀୟ ମାନସିକତା ପ୍ରତି ଆପଣ କିପରି ଆକୃଷ୍ଟ ହେଲେ ?

ଉତ୍ତର. ମୋର ଜନ୍ମ ମଧ୍ୟବିତ୍ତ ପରିବାରରେ। ବଞ୍ଚିଛି ସେହି ମଧ୍ୟବିତ୍ତ ମୂଲ୍ୟବୋଧକୁ ନେଇ। ମୋ ଭାତଥାଳିର ଶେଷ ଭାତଟିକୁ ମୁଁ ପୋଛି ଖାଏ। ଅଫିସ୍‌କୁ ଯିବା ଆସେ ଭଲ ପୋଷାକ ପିନ୍ଧି, ମୋ ବିଛଣା ଚାଦର ଓ ଘରର ପର୍ଦ୍ଦା ଶସ୍ତା ଓଟିଏମ୍ କପଡ଼ାରେ ତିଆରି। ମଧ୍ୟବିତ୍ତୀୟ ମୂଲ୍ୟବୋଧ ମୋ ପାଇଁ ନିରାପଦ ପୋତାଶ୍ରୟ।





# ସାହିତ୍ୟ କଲେ
# ଓଡ଼ିଶାରେ ଘୋଡ଼ାଡିମ୍ବ ମିଳେ

## ଦେବ୍ରାଜ ଲେଙ୍କା:

ଏମିତି ଏକ ରୋକ୍‌ଠୋକ୍ ମନ୍ତବ୍ୟ ଦିଅନ୍ତି କଥାକାର ଦେବ୍ରାଜ ଲେଙ୍କା। ଆହ୍ୱାନ କରନ୍ତି ଓଡ଼ିଶାର ସବୁ ଲେଖକ/ କବି ବର୍ଷେ ପାଇଁ କଲମ ବନ୍ଦ କରିଦିଅନ୍ତୁ - ଦେଖିବେ ପତ୍ରପତ୍ରିକାଗୁଡ଼ିକ କିପରି କଲବଲ ହେବେ। ତା'ପରେ ପ୍ରାପ୍ୟ ମିଳିଯିବ ବୋଲି ତାଙ୍କର ପରୋକ୍ଷୋକ୍ତି। ଗୀତକୁ ଭଲ ପାଉଥିବା ଦେବ୍ରାଜ କହନ୍ତି - ଗୀତ ନ ଶୁଣିଲେ ସାହିତ୍ୟିକ ହେବା ଅସମ୍ଭବ। ପାଠକଙ୍କ ଆଗରେ ଏକ ଭିନ୍ନ ଆଦର୍ଶର ଲେଖା ଉପସ୍ଥାପିତ କରୁଥିବା ଏହି ନିଆରା କଥାକାରଙ୍କ ସହ ରୋକ୍‌ଠୋକ୍ ଆଳାପର କିୟଦଂଶ।


ଆଳାପ ॥ ୧୧୦

ପ୍ରଶ୍ନ: ସାହିତ୍ୟ କେମିତି ଲାଗୁଛି ?

ଉତ୍ତର. ଭୁଲରେ ପଶିଗଲି। ମାଷ୍ଟରମାନେ ମୋତେ ସ୍କୁଲରେ ପଢ଼ିଲାବେଳେ ମିସ୍ ଗାଇଡ କରିଦେଲେ ସେମାନେ କହିଲେ, ଫକୀରମୋହନ, ଗଙ୍ଗାଧର ମେହେର, ଉପେନ୍ଦ୍ର ଭଞ୍ଜ, ମଧୁସୂଦନ ଏମାନେ ସମସ୍ତେ ଓଡ଼ିଶାର ବରପୁତ୍ର। ସେମାନଙ୍କ କଥା ଶୁଣି ସେମିତି ହେବାକୁ ତା'ପରେ ମନହେଲା।

ପ୍ରଶ୍ନ: ସାହିତ୍ୟ ଲେଖି କ'ଣ ପାଇଲେ ?

ଉତ୍ତର. ସାହିତ୍ୟ ଲେଖିଲେ ଓଡ଼ିଶାରେ ଘୋଡ଼ାଡିମ୍ବ ମିଳେ। ମୋ ବଂଶରେ ସମସ୍ତେ କଣ୍ଟ୍ରାକ୍ଟର ମୁଁ ସେଥିରେ 'କବାବ୍ ମେ ହଡ୍ଡି' ହେଲି। ଜଣେ ଡି କ୍ଲାସ କଣ୍ଟ୍ରାକ୍ଟର ଯାହା ପାଇଛି ମୁଁ ସାହିତ୍ୟ କରିକି ତାହା ପାଇନି।

ପ୍ରଶ୍ନ: ଆପଣ ସାହିତ୍ୟକୁ ଅର୍ଥ ସହ ତୁଳନା କରୁଛନ୍ତି ?

ଉତ୍ତର. ଚିତ୍ରକର, ଗୀତିକାର, ସଙ୍ଗୀତଜ୍ଞ, ଅଭିନେତା-ଅଭିନେତ୍ରୀ, କ୍ରିକେଟର ଯେତେବେଳେ ନିଜ ପ୍ରତିଭାକୁ ନେଇ ଟଙ୍କା ରୋଜଗାର କରୁଛନ୍ତି ମୁଁ କାହିଁକି କରିବିନି।

ପ୍ରଶ୍ନ: ଆପଣଙ୍କ ଗୋଟିଏ ଲେଖାକୁ କେହି ଜଣେ ଟଙ୍କା ଦେବାକୁ ଇଚ୍ଛା କଲେ ଆପଣ କେତେ ମୂଲ୍ୟ ଚାହିଁବେ ?

ଉତ୍ତର. ପ୍ରଥମେ ତା' ଗୋଡରୁ ମୁଣ୍ଡ ଅନାଇବି। ଏଠି ସାହିତ୍ୟିକ ଚାକିରି ଦମ୍ଭରେ ବଞ୍ଚିଛନ୍ତି, କବିତାରେ ନୁହେଁ।

ପ୍ରଶ୍ନ: କ'ଣ କଲେ ସାହିତ୍ୟିକଙ୍କୁ ଟଙ୍କା ମିଳିବ ?

ଉତ୍ତର. ସବୁ ଲେଖକ ବର୍ଷକ ପାଇଁ କଲମ ଛାଡିଦିଅନ୍ତୁ ପତ୍ରିକାକୁ ଲେଖା ଦିଅନ୍ତୁ ନାହିଁ ଦେଖିବେ ପତ୍ରିକା ସବୁ ବନ୍ଦ ହୋଇଯିବ।

ପ୍ରଶ୍ନ: ଆପଣଙ୍କ ଲେଖାଶୈଳୀ କ୍ଲାସିକାଲ ଓ ପପ୍ ମ୍ୟୁଜିକ୍‌ର ମିଶ୍ରଣ ପରି ଲାଗେ, ଏପରି କି ଏହି ମ୍ୟୁଜିକମାନଙ୍କ ପରି ଆପଣ ଧାଡ଼ିଗୁଡ଼ିକୁ ବି ବାରମ୍ବାର ଦୋହରାନ୍ତି ?

ଉତ୍ତର. ଲାଗୁଛି ଯଦି ଲାଗୁଥିବ। ମୁଁ ସଦାବେଳେ ଗୀତ ଶୁଣେ, ଭଲ ହାରମୋନିୟମ ବଜାଏ। ମୁଁ ଭାବେ ଗୀତ ନ ଶୁଣିଲେ ସାହିତ୍ୟିକ ହୋଇପାରିବନି। ଏଣୁ ଏ ଲେଖାଗୁଡିକ ଯଦି ସଂଗୀତଧର୍ମୀ ହେଉଥିବେ ତେବେ ଭଲକଥା।

ରାଜଶେଖର, ମମ୍ କ'ଣ କହିଲା ତାକୁ ମୁଁ କାହିଁକି ମାନିବି ମୁଁ ମୋ ବାଟରେ ଚାଲେ। ହୁଏତ ନୂଆବାଟ ଫିଟିଯିବ।

ପ୍ରଶ୍ନ: ଆପଣଙ୍କ ଅନେକ ଗଳ୍ପ ଏବଂ ଉପନ୍ୟାସରେ ଆପଣ ବକ୍‌ବାସ କରନ୍ତି। ତେବେ ବି ପାଠକ ତାକୁ ଖୁସିରେ ଗ୍ରହଣ କରିଛି ଏହାର ରହସ୍ୟ?

ଉତ୍ତର. ସେମାନେ ବି ବକ୍‌ବାସକୁ ଭଲ ପାଆନ୍ତି ବୋଲି ଗ୍ରହଣ କରନ୍ତି। ଏ ତ ଗୋଟେ ଖୁସି କଥା କହୁଛ ତାହା ସେମାନଙ୍କ ମେହେରବାନ।

ପ୍ରଶ୍ନ: ବକ୍‌ବାସ ପରେ ବି ଆପଣ କାହଣୀ ମଣ୍ଡଳ ସୁରକ୍ଷିତ ରଖି ମଞ୍ଜିକୁ ଫେରିଆସିପାରନ୍ତି ଏହି ଟେକ୍‌ନିକ୍ ବିଷୟରେ କୁହନ୍ତୁ?

ଉତ୍ତର. ମୁଁ ଜନ୍ମରୁ ବକ୍‌ବାସ। କ୍ଲାସରେ ପଢ଼ିଲାବେଳେ ବି ବକ୍‌ବାସ ହୁଏ ଆଉ ସାହିତ୍ୟରେ ବି ତାହା କରୁଛି ଆଉ ତାକୁ ଯଦି ପାଠକ ଗ୍ରହଣ କରୁଛନ୍ତି ତେବେ ଖୁସିର କଥା। ମୁଁ ଗୋଟେ ବହିଯିବା ନଦୀ। ସବୁବେଳେ ଛଳଛଳ, କଳକଳ କେତେବେଳେ ନାଚୁଛି ତ କେତେବେଳେ ଡେଉଁଛି।

ପ୍ରଶ୍ନ: ଆପଣଙ୍କ ଗଳ୍ପ ଉପନ୍ୟାସରେ ବହୁ ଗ୍ରାମୀଣ ଏବଂ କୋଲୋକାଲ ଶବ୍ଦ ବ୍ୟବହାର ହୋଇଛି। ଆପଣ ଜାଣିଶୁଣି ଏ ଶବ୍ଦମାନଙ୍କୁ ବ୍ୟବହାର କରନ୍ତି ନା ହୋଇଯାଏ।

ଉତ୍ତର. ଶବ୍ଦ ସବୁ କଲେଜରେ କି ବିଶ୍ୱବିଦ୍ୟାଳୟରେ ନଥାଏ ବରଂ ଶବ୍ଦ ସବୁ ଶୁଖୁଆବାଲା, ଘାସ କଟାଳି, ଜୁଆଡି, ମଦୁଆ, ରିକ୍ସାବାଲା, ଶଗଡ଼ିଆ, କୁଲି, ମଜଦୁରଙ୍କ ପାଖରେ ଥାଏ। ଯେଉଁ ଶବ୍ଦମାନଙ୍କୁ ଅବିଚାର କରି ବିଶ୍ୱବିଦ୍ୟାଳୟରୁ ବିତାଡ଼ିତ କରାଯାଇଛି ମୁଁ ସେହି ଶବ୍ଦମାନଙ୍କୁ ଡଷ୍ଟବିନରୁ ଗୋଟାଇ ଆଣିଛି। କାହିଁକି ନା ଏ ସବୁ ଜନତାର ଭାଷା। ମୁଁ ସର୍ବସାଧାରଣ ଜନତାଙ୍କ ପାଇଁ ଲେଖେ।

ପ୍ରଶ୍ନ: ଆପଣଙ୍କ ଚରିତ୍ରମାନେ ନିଜ ନିଜ ସ୍ୱତନ୍ତ୍ରତା ଏବଂ ସୀମା ମଧ୍ୟରେ ରହିଛନ୍ତି। ଗୋଟିଏ କାହାଣୀରୁ ଅନ୍ୟ କାହାଣୀକୁ ଡେଇଁନାହାନ୍ତି ତେବେ କ'ଣ ଏସବୁ ଚରିତ୍ରକୁ ଭେଟି ସେମାନଙ୍କ ସହ ମଜ୍ଜି ମସ୍‌ଗୁଲ୍ ହେଲାପରେ ଲେଖନୀରେ ଉତ୍ତାରନ୍ତି ନା କଳ୍ପନାରେ ବାଉଳାନ୍ତି?

ଉତ୍ତର. କଳ୍ପନାରେ ଲେଖିହୁଏନା, ବାସ୍ତବକୁ ନେଇ ଲେଖେ। ଗୋଟିଏକୁ ଲେଖିବା ପରେ ଆଉ ତାକୁ ଲେଖିବାକୁ ଇଚ୍ଛାହୁଏନା। ଯେଉଁଠି ଚରିତ୍ର ଅଭାବ ନାହାଁନ୍ତି ସେଠି ଚରିତ୍ର ରିପିଟ୍ କାହିଁକି କରିବ?

ପ୍ରଶ୍ନ: ଆପଣଙ୍କ ଲେଖାରେ ଶବ୍ଦଗୁଡ଼ିକ ତେନ୍ତୁଳି ଜିଭରେ ଲାଗିଲା ଭଳି ପାଠକ ଦେହରେ ଲାଗେ । ସ୍ତ୍ରୀ, ମହିଳା, ନାରୀ ସ୍ଥାନରେ ମାଇକିନିଆ ଶବ୍ଦ ଅଧିକ ପ୍ରଭାବ ପକାଇବ ଭାବି ଆପଣ ଏପରି ଶବ୍ଦ ଗ୍ରହଣ କରନ୍ତି କି ?

ଉତ୍ତର. ମୁଁ ୩୦ ବର୍ଷ ତଳେ ଲେଖୁଥିଲି । ଏବେ ଗଢୁଛି ତିଆରି କରୁଛି । ଏଣୁ କେଉଁଠି କେଉଁ ଶବ୍ଦ ଲାଗିବ ସେଥିପାଇଁ ଯତ୍ନଶୀଳ ହୁଏ, ହୁସିଆର ହୋଇଯାଏ ।

ପ୍ରଶ୍ନ: ଆପଣ ଗଳ୍ପ ଉପନ୍ୟାସ ଭିତରେ କବିତାକୁ ଅତି ଚାଲାକିରେ ଭର୍ତ୍ତି କରିଦିଅନ୍ତି କିନ୍ତୁ କବିତା ଲେଖାରେ ମନ ଦେଇ ନାହାଁନ୍ତି କାହିଁକି ?

ଉତ୍ତର. ମୁଁ ନିଜକୁ କେବେ ଲେଖକ ବୋଲି କହିନି । ମୁଁ ନିଜକୁ କବି ବୋଲି କହେ । ମାଛ ଖେଳିବା, ପଙ୍ଖା ବୁଲିବା ଏ ସବୁ କବିତା । ପୃଥିବୀସାରା କବିତା ଭର୍ତ୍ତି ହୋଇଛି ପୁଣି କାହିଁକି କବିତା ଲେଖିବି ।

ପ୍ରଶ୍ନ: ବର୍ତ୍ତମାନ ଓଡ଼ିଆ ସାହିତ୍ୟ ଜଗତରେ ଆପଣଙ୍କ ସାହିତ୍ୟଟି ନିଆରା, କହିବେ କି କାହକୁ ଫଲୋ କରନ୍ତି ବା ପଢ଼ନ୍ତି ?

ଉତ୍ତର. ମୁଁ କାହାକୁ ଫଲୋ କରେନି । ମୁଁ ଯଦି ଫଲୋ କରେ ଭଲ ଭଲ ଗୀତକୁ ଫଲୋକରେ । ମୁଁ ଭାବେ ଏ.ଆର.ରହମନ କିପରି କରୁଛି ତାକୁ ନେଇ ମୁଁ ଭାବେ ସେ ଯଦି ଏପରି କରିପାରୁଛି ମୁଁ କିପରି ତାକୁ କରିବି ହେଲେ ମ୍ୟୁଜିକ୍ ତ କରିପାରିବିନି ମୋ ଲେଖନୀ ଭିତରେ ତାକୁ କ୍ରିଏଟ କରେ ।

ପ୍ରଶ୍ନ: ଆପଣଙ୍କ ନିଜ ସାହିତ୍ୟର ଭବିଷ୍ୟତ କିପରି ଭାବୁଛନ୍ତି ?

ଉତ୍ତର. ବର୍ତ୍ତମାନ ସମୟରେ ମଧ୍ୟ କେତେକଙ୍କଠାରେ ମୋ ସାହିତ୍ୟ ଅନାଦୃତ । କେହି ସାହିତ୍ୟିକ ନିଜ ସାହିତ୍ୟର ଭବିଷ୍ୟତ କଳନା କରି ପାରେନି । କେତେ ପାଠକ ମୋତେ ବାଦ୍‌ଶାହା, ନବାବ କହିଲାବେଳେ ଆଉ କେତେକ ପାଠକ ବକ୍‌ବାସ କରନ୍ତି ସେଥିରେ ମୁଁ ମୋ ଭବିଷ୍ୟତ କ'ଣ କହିବି । ଓଡ଼ିଶାରେ ମୋ ଭଳି ବକ୍‌ବାସ ଆଉ କିଏ କରୁ ନ ଥିବ । ତେବେ କ'ଣ ଲେଖିଲେ ଯେ ପଦ୍ମଶ୍ରୀ, କେନ୍ଦ୍ର ସାହିତ୍ୟ ଏକାଡେମୀ ମିଳିବ ତାହା ମୁଁ ଜାଣେନି, ତେବେ ଭବିଷ୍ୟତ ଆଉ କ'ଣ କହିବି ।

ଆପଣଙ୍କ ପୁସ୍ତକମାନଙ୍କ ନାମକରଣ ଖୁବ୍ ଅଜବଗଜବ ଯେପରି 'ଦେବ୍ରାଜଙ୍କ ଅର୍କେଷ୍ଟ୍ରା', 'ଏକ ବାକ୍ସ ଗପ', 'ଶୂନଶାନ୍-ଆର୍ଟିଷ୍ଟ ଠୋ'....ଏକପକ୍ଷେ

ଇଂରାଜୀ ଶବ୍ଦ ଏବଂ ଅନ୍ୟ ପକ୍ଷରେ ଗ୍ରାମୀଣ ଶବ୍ଦର ବ୍ୟବହାର।

ଉତ୍ତର. ସମସ୍ତେ ଜଷ୍ଟିଫାଏଡ୍ ୱେର ନାମକରଣ କରିଥାନ୍ତି ଆମେ ସବୁ ଯିଏ ଅଛୁ ଆମ ନାମ ଅନୁସାରେ ଆମେ ପ୍ରକୃତରେ ସେୟା ଥାଉ କି ଯଦି ନୁହେଁ ତେବେ ପୁସ୍ତକ ନାମ ଜଷ୍ଟିଫାଏଡ୍ ଦେବା କିଛି ଦରକାର ନାହିଁ। ମୋ ମନକୁ ଆସିଲା ମୁଁ ତା' ଦେବି। ଗ୍ରାମୀଣ ଶବ୍ଦଗୁଡ଼ାକ ପଞ୍ଚ କରେ ଏଣୁ ଲେଖେ।

ପ୍ରଶ୍ନ: ସାହିତ୍ୟିକଟିଏ କେମିତି ହେବା ଉଚିତ୍?

ଉତ୍ତର. ସାହିତ୍ୟିକଟିଏ ବହୁତ ଭଦ୍ର ହେବା ଉଚିତ୍। ବହୁତ ଲଫଙ୍ଗା ହେବା ଉଚିତ। ସବୁ ସ୍ଥାନକୁ ଯାଇପାରୁଥିବା ଉଚିତ୍।





# ଲେଖକ ଆଉ ସୀମିତ ନୁହେଁ

## ଯତୀନ୍ଦ୍ର ମୋହନ ମହାନ୍ତି

**ସ**ମାଲୋଚନା ସାହିତ୍ୟକୁ ନିଜର ବଳିଷ୍ଠ ଲେଖାରେ ସମୃଦ୍ଧ କରିଥିବା ଏହି ସାହିତ୍ୟିକ ହେଉଛନ୍ତି ଯତୀନ୍ଦ୍ର ମୋହନ ମହାନ୍ତି। ରାଜ୍ୟର ବିଭିନ୍ନ କଲେଜ ଓ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନାକୁ ପେସା ଭାବେ ଗ୍ରହଣ କରିଥିଲେ ମଧ୍ୟ ଶ୍ରୀ ମହାନ୍ତି ଏକାଧିକ ସମାଲୋଚନା ପୁସ୍ତକ ରଚନା କରିଛନ୍ତି। ତାଙ୍କୁ ଏଥିପାଇଁ ୨୦୦୩ରେ ମିଳିଛି କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର।

ପ୍ରଶ୍ନ: ଆପଣ ସମାଲୋଚକ ଭାବେ ପ୍ରତିଷ୍ଠା ଲାଭ କରିଛନ୍ତି । ସୃଜନଶୀଳତାରେ ଅଧିକ ସମୟ ଦେଲେ ନାହିଁ କାହିଁକି ?

ଉତ୍ତର. ଉପନ୍ୟାସ ଓ ସମାଲୋଚନା ଭିତରେ ଗୁଣବତ୍ତାର ପାର୍ଥକ୍ୟ ନାହିଁ । ଉପନ୍ୟାସକୁ ସାଧାରଣତଃ ଆମେ ସୃଜନଶୀଳତାରେ ରଖୁ, ସମାଲୋଚନା ମଧ୍ୟ ସମ୍ପୂର୍ଣ୍ଣ ଭାବେ ସୃଜନଶୀଳ ହୋଇପାରିବ । ସୃଜନଶୀଳତା ଲେଖକ ଯାହା ଲେଖୁଛି ତାହା ସହିତ ଅନ୍ତଃରଙ୍ଗତାର ସହିତ ଆସେ । ଏହି ଅନ୍ତରଙ୍ଗତା ଉଭୟ ଉପନ୍ୟାସ ଓ ସମାଲୋଚନାରେ ସମ୍ଭବ । ସୃଜନଶୀଳତାରେ ଏହା ଆଂଶିକ ସତ୍ୟ । 'ସହସ୍ରାଂଶୁ' ଏବଂ 'ସୂର୍ଯ୍ୟସ୍ନାତ' ସମାଲୋଚନା ହେଲେ ମଧ୍ୟ ଏ ମୋର ସୃଜନଶୀଳତାର ପରିଚୟ ।

ପ୍ରଶ୍ନ: ଆପଣ ପ୍ରାଚୀନ ଓ ଅଧୁନିକ ଓଡ଼ିଆ କବିତା ସମ୍ଭାର ସଂକଳନ କରିଛନ୍ତି । କେଉଁ କାଳର କବିତା ଆପଣଙ୍କର ଅଧିକ ପ୍ରିୟ ?

ଉତ୍ତର. ପ୍ରାଚୀନ ଓ ଆଧୁନିକ ଉଭୟ ପ୍ରିୟ । ପ୍ରାଚୀନ ଆଧୁନିକ ମଧ୍ୟରେ ସମୟର ପୃଷ୍ଠଭୂମିରେ ବିଭିନ୍ନତା ଅଛି ଏବଂ ସେହି ଭାବରେ ପୃଷ୍ଠଭୂମି ଅଲଗା ଅଲଗା ହେବ । କିନ୍ତୁ କବିତାରେ ବଡ଼ କଥା ହେଉଛି କବିର ଆନ୍ତରିକତା ପ୍ରାଚୀନ ଓ ଆଧୁନିକ ଉଭୟ ପାଇଁ ଦରକାର ଏବଂ ଏହାଥିଲେ ହିଁ କବିତା ଭଲ ହେବ । ଯେଉଁ ସମୟରେ ଆମେ ବଞ୍ଚୁଛୁ ସେ ସମୟର କଥାଟି ପଢ଼ିଲେ ସ୍ୱାଭାବିକ ଭାବେ ତାହା ଅଧିକ ଭଲ ଲାଗେ । ଆମେ ଯେମିତି ବୁଝୁଛୁ କବିଟିଏ ମଧ୍ୟ ସେପରି ବୁଝୁଛି ଏବଂ ଲେଖୁଛି । ତେଣୁ ପ୍ରାଚୀନଠାରୁ ଆଧୁନିକକୁ ଅଧିକ ଭଲପାଏ । ତା' ମାନେ ନୁହେଁ ପ୍ରାଚୀନ ଭଲ ଲାଗେନା । ଉଭୟ ସମାନ ଭାବରେ ଉତ୍କୃଷ୍ଟ ।

ପ୍ରଶ୍ନ: ଆଧୁନିକ ଓଡ଼ିଆ କବିତା ସମ୍ପର୍କରେ ଆପଣଙ୍କ ଅନୁଭବ ?

ଉତ୍ତର. ଆଧୁନିକ ଓଡ଼ିଆ କବିତା ବିଭିନ୍ନ ଆୟତନ ରହିଛି । ଆଧୁନିକ ଓଡ଼ିଆ କବିତା ସମ୍ପର୍କରେ ମୋର ଅନୁଭବ ବହୁତ ଭଲ । କବିତା ନିଜର ଗାରିମା ହରାଇ ନାହିଁ । ସେ ସମ୍ପୂର୍ଣ୍ଣ ଭାବେ ପ୍ରତିଷ୍ଠିତ ଓ ବଳିଷ୍ଠ ହୋଇପାରିଛି ।

ପ୍ରଶ୍ନ: ଓଡ଼ିଆ କବିତା ବ୍ୟକ୍ତି ଓ ସମାଜର କେତେ ନିକଟତର ହୋଇପାରିଛି ?

ଉତ୍ତର. ଓଡ଼ିଆ କବିତା ସାମାଜିକ ସଂଯୋଗ ସବୁ ସମୟରେ ଥିଲା, ବର୍ତ୍ତମାନ ବି ଅଛି । ଏ ସାମାଜିକ ପରିପ୍ରେକ୍ଷୀରେ ଜଟିଳତା ଆସିବା ସଙ୍ଗେ ସଙ୍ଗେ

କବିତାରେ ବି ଆସିଛି। ମୋର ମନେହୁଏ ଓଡ଼ିଆ କବିତାର ସମାଜ ସହିତ ସମ୍ପର୍କ ଅତି ଘନିଷ୍ଠ ଓ ଉଚ୍ଚକୋଟିର।

ପ୍ରଶ୍ନ: ଓଡ଼ିଶାରେ ଅନେକ ସାହିତ୍ୟ ପତ୍ରିକା ବାହାରୁଛି। ଆପଣଙ୍କ ମତରେ ସାହିତ୍ୟ ପତ୍ରିକା କିପରି ହେବା ଦରକାର ?

ଉତ୍ତର. ବୁଦ୍ଧିଦୀପ୍ତ, ମତାମତକୁ ପ୍ରଭାବିତ କରିବା ପାଇଁ ନିରପେକ୍ଷ ଆଲୋଚନାର ଅଭାବ ରହିଛି। କେବଳ ସାହିତ୍ୟ ପତ୍ରିକା କାହିଁକି ଅନ୍ୟାନ୍ୟ ପତ୍ରିକାରେ ମଧ୍ୟ ସାମାଜିକ, ରାଜନୈତିକ, ବିଜ୍ଞାନ ଭିତ୍ତିକ, ଅର୍ଥନୈତିକ ଆଦି ଆଲୋଚନାର ଆବଶ୍ୟକତା ରହିଛି। ଏହିସବୁ ଆଲୋଚନାକୁ ପତ୍ରିକାଗୁଡ଼ିକ ଗୁରୁତ୍ୱ ଦେବା ଉଚିତ୍। ବର୍ତ୍ତମାନ ସମାଜରେ ଯାହା ଘଟୁଛି, ସେ ସମ୍ପର୍କରେ ସାହିତ୍ୟିକମାନେ କିଛି ଆଲୋଚନା ଲେଖିବା ଦରକାର।

ପ୍ରଶ୍ନ: ବର୍ତ୍ତମାନ କ'ଣ ଲେଖୁଛନ୍ତି ?

ଉତ୍ତର. ବର୍ତ୍ତମାନ ୩ଟି କାମ ଏକା ସହ କରୁଛି। ଗୋଟିଏ ହେଲା "History of Oriya Nation"। ଦ୍ୱିତୀୟତଃ ମୋର ଦ୍ୱିତୀୟ ଉପନ୍ୟାସ 'ଜନ୍ମାଷ୍ଟମୀ'ର କାମ ସରିଆସିଲାଣି। ତୃତୀୟତଃ 'ସମାଲୋଚନା ଓ ସାହିତ୍ୟ ତତ୍ତ୍ୱ' ସମ୍ପର୍କରେ ଏକ ସଂକଳନ ଯାହାକି ସମଗ୍ର ପୃଥିବୀର ସାହିତ୍ୟ ରହିବ। ଏହି ସଂକଳନ ଚାରିଶହ ପୃଷ୍ଠାର ହେବ। ଏହା ସଂଗ୍ରହ ପରେ ଓଡ଼ିଆରେ ଅନୁବାଦ ହେବ।

ପ୍ରଶ୍ନ: ଓଡ଼ିଆ ସାହିତ୍ୟ ଏବଂ ଅନ୍ୟ ଦେଶ ବା ଭାଷାଭାଷୀ ସାହିତ୍ୟରେ କିପରି ପ୍ରଭେଦ ବା ସାମଞ୍ଜସ୍ୟ ଦେଖନ୍ତି ?

ଉତ୍ତର. ପ୍ରଭେଦ ହେଉଛି – ଓଡ଼ିଆ ସାହିତ୍ୟରେ ଓଡ଼ିଶାର ପରିସ୍ଥିତିକୁ ନେଇ ଲେଖାହୋଇଛି ଯାହାକି ସ୍ୱାଭାବିକ। ସାମଞ୍ଜସ୍ୟ ହେଉଛି ଦୃଷ୍ଟିଭଙ୍ଗୀରେ। ଆଜିକାଲି ଲେଖକମାନେ ନିଜ ସ୍ଥାନରେ ବା ନିଜ ପରିବେଶରେ ସୀମିତ ନୁହନ୍ତି। ଦୃଷ୍ଟିଭଙ୍ଗୀ ବ୍ୟାପକ ଏବଂ ପୃଥିବୀର ବିଭିନ୍ନ ଘଟଣା ସହିତ ଜଡିତ, ଯାହାକି ସବୁ ସାହିତ୍ୟରେ ରହିଛି।

ପ୍ରଶ୍ନ: ଅନୁବାଦ ସାହିତ୍ୟ ସମ୍ପର୍କରେ ଆପଣଙ୍କ ମତ କ'ଣ ?

ଉ. ଅନୁବାଦ ସାହିତ୍ୟର ଆବଶ୍ୟକତା ବହୁତ ରହିଛି। ବିଭିନ୍ନ ସାହିତ୍ୟରୁ ଅନୁବାଦ ହେବା ଦରକାର। ସାହିତ୍ୟର ବିଭିନ୍ନ ବିଭାଗର ଅନୁବାଦ ହେବା ଦ୍ୱାରା ସାହିତ୍ୟ ପରିପୁଷ୍ଟ ହେବ। ଇଂରାଜୀ ସାହିତ୍ୟ ୬୦ ପ୍ରତିଶତ କେବଳ

ଅନୁବାଦ । ଓଡ଼ିଆ ସାହିତ୍ୟ ବାହାରକୁ ଯିବାବେଳେ ବାଛି ବାଛି କରି ଯିବା ଦରକାର ।

ପ୍ରଶ୍ନ: ଓଡ଼ିଆ ସାହିତ୍ୟକୁ ବାହାରକୁ ନେବା ପାଇଁ ଆପଣ କେବେ ଚେଷ୍ଟା କରିଛନ୍ତି ?

ଉତ୍ତର. ହଁ, ନିଶ୍ଚୟ । ମୋର "History of Oriya Literature" ଗୋଟିଏ ଉଦ୍ୟମ । ଓଡ଼ିଆ ସାହିତ୍ୟ ଉପରେ ବହୁତ କାମ କରିଛି, ଯାହାକି ଓଡ଼ିଶା ପାଇଁ । ଏଥିରୁ କିଛି ମୁଁ ଇଂରାଜୀରେ ମଧ୍ୟ ଅନୁବାଦ କରିଛି ।





# ଅଧିକାଂଶ ଲେଖକ ନିର୍ଦ୍ଦିଷ୍ଟ ସ୍ଥାନରେ ସୀମିତ

## ଗଣେଶ୍ୱର ମିଶ୍ର

ଜଣେ ମାନବବାଦୀ ସାହିତ୍ୟର ସ୍ରଷ୍ଟା ଗଣେଶ୍ୱର ମିଶ୍ର ଅବସରପ୍ରାପ୍ତ ଇଂଲିଶ ପ୍ରଫେସର। ଇଂଲିଶ ଭାଷା ସାହିତ୍ୟ ଅଧ୍ୟୟନ ଓ ଅଧ୍ୟାପନା ସତ୍ତ୍ୱେ ସେ ଅକର୍ଷିତ ହୋଇଛନ୍ତି ଓଡ଼ିଆ ଭାଷା ସାହିତ୍ୟ ଆଡ଼କୁ। ଉଭୟ ଇଂଲିଶ (୨୫) ଓ ଓଡ଼ିଆ (୨୮) ଭାଷାରେ ଲେଖିଛନ୍ତି ୫୩ ଖଣ୍ଡ ପୁସ୍ତକ। ତନ୍ମଧ୍ୟରେ ରହିଛି ଉପନ୍ୟାସ, ଅନୁବାଦ, ଭ୍ରମଣ କାହାଣୀ ଓ ସମାଲୋଚନା ପୁସ୍ତକ। ତାଙ୍କ ଲେଖା ଇଂଲିଶ ସମେତ ଭାରତୀୟ ଭାଷାରେ ଅନୂଦିତ ହୋଇଛି। ସାହିତ୍ୟ ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡେମୀ ଓ ଅନ୍ୟ ଅନେକ ଅନୁଷ୍ଠାନରୁ ପୁରସ୍କୃତ। ଓଡ଼ିଆ ସାହିତ୍ୟ ଏକାଡେମୀର ସଭାପତି ଦାୟୀତ୍ୱ ମଧ୍ୟ ତୁଲାଇଛନ୍ତି ପ୍ରଫେସର ମିଶ୍ର। ତାଙ୍କର ସାହିତ୍ୟିକ ଜୀବନ ସମ୍ପର୍କରେ ତାଙ୍କ ସହ ହୋଇଥିବା ଅଳାପର କିୟଦଂଶ।

ପ୍ରଶ୍ନ: ଲେଖାଲେଖି କେବେଠାରୁ ଆରମ୍ଭ କଲେ ?

ଉତ୍ତର. ସୃଜନଶୀଳତା ସମସ୍ତଙ୍କର ଅଛି। ଲେଖିବା ଏକ ସ୍ୱାଭାବିକ କ୍ରିୟା। ସେଥିପାଇଁ ଉଦ୍ୟମ କରିବାକୁ ପଡେନି, କାରଣ ସମସ୍ତେ କହନ୍ତି, ଲେଖନ୍ତି ବା ନିଜକୁ ପ୍ରକାଶ କରନ୍ତି। କେତେଗୁଡ଼ିଏ ଆନୁଷଙ୍ଗିକ ପରିବେଶ ହୁଏତ ଜଣକୁ ଏକ ପ୍ରକାର ପ୍ରସ୍ତୁତ କରିବା ସୁଯୋଗ ଦିଏ। ପୁରୀ ପଥୁରିଆ ସାହିରେ ମୋର ଜନ୍ମ। ପିଲାଦିନରୁ ମୋ ଚତୁଃପାର୍ଶ୍ୱରେ ପଥର କାମ କରୁଥିବା ଲୋକଙ୍କୁ ଭେଟିଥିଲି। କିନ୍ତୁ ଆମ ଘରେ ବିଭିନ୍ନ ପର୍ବପର୍ବାଣିରେ ତାଳପତ୍ର ପୋଥି ପଢ଼ିବା ଏବଂ ତା'ର ସଂସ୍କୃତ ଉଚ୍ଚାରଣ ମୋ ଉପରେ ପ୍ରଭାବ ପକାଇଥିଲା। ଏସବୁ କବିତା ସହିତ ସମ୍ପର୍କିତ। ମୁଁ ତୃତୀୟ ଶ୍ରେଣୀରେ ପଢୁଥିଲି। ମୋର ମନେଅଛି, ଆମ ଘରେ ଆମ ଭାଇଭଉଣୀଙ୍କ ମଧ୍ୟରେ ହାତଲେଖା ପତ୍ରିକା 'ସଂଚୟିତା' ନାମରେ ଆମେ ପ୍ରକାଶ କରୁଥିଲୁ। 'ମହୋଦଧି' ନାମରେ ଆମର ସ୍କୁଲ ପତ୍ରିକାଟିଏ ବାହାରୁଥିଲା। ସେଥିରେ ଲେଖାଲେଖି କରିବା ପାଇଁ ଆମ ଶିକ୍ଷକମାନେ ଆମକୁ ଉତ୍ସାହିତ କରୁଥିଲେ। ମୀନାବଜାର, ଟୁଆଁଟୁଇଁ, ଶିଶୁରାଇଜ ଆଦିରେ ଲେଖି ମୁଁ ସ୍କୁଲରେ ପଢ଼ିଲାବେଳରୁ ଶିଶୁଲେଖାରେ ନାଁ କରିଥିଲି।

ପ୍ରଶ୍ନ: ପ୍ରକାଶିତ ଲେଖା ଦେଖି କିପରି ଲାଗୁଥିଲା ?

ଉତ୍ତର. ସ୍ୱାଭାବିକ ଭାବରେ ଉଲ୍ଲସିତ ହେଉଥିଲି। ଦୀର୍ଘଦିନର ଅପେକ୍ଷା ପରେ ପ୍ରକାଶିତ ଲେଖାକୁ ଦେଖି ଆନନ୍ଦିତ ହେଉଥିଲି। ନିଜ ଲେଖାର ପ୍ରକାଶିତ ରୂପ ଦେଖି ଆଜି ବି ତ ମନ ଉଲ୍ଲସିତ ହେଉଛି।

ପ୍ରଶ୍ନ: ପ୍ରଥମ ପ୍ରେରଣା କେଉଁଠୁ ପାଇଲେ ?

ଉତ୍ତର. ପରିବେଶରୁ।

ପ୍ରଶ୍ନ: ଆପଣ କହନ୍ତି କୃଷ୍ଣ ପ୍ରସାଦ ମିଶ୍ର ଆପଣଙ୍କୁ ଉତ୍ସାହିତ କରିଥିଲେ ଓ ପ୍ରେରଣା ଦେଇଥିଲେ ?

ଉତ୍ତର. ହଁ, ତାହା ସତ। ତେବେ କୃଷ୍ଣ ପ୍ରସାଦ ମିଶ୍ର ପୁରୀ କଲେଜ ମାଗାଜିନ୍‌ରେ ମୋ ଲେଖା ପଢ଼ି ମୋତେ ଡାକିଲେ ଏବଂ ମୋର ଲେଖାଟିଏ ଶୁଣିବାକୁ ଇଚ୍ଛାକଲେ। ସେତେବେଳେ ମୁଁ ତାଙ୍କୁ 'ସାମୁଦ୍ରିକ' ଉପନ୍ୟାସଟି ଶୁଣାଇଲି। ଏଥିରେ ନୋଳିଆମାନଙ୍କ ବିଷୟରେ ଉଲ୍ଲେଖ ଅଛି। ଏହା ଶୁଣି ସେ ତାକୁ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ଦ୍ୱାରା ପ୍ରକାଶିତ କଲେ। ସେତେବେଳେ ମୁଁ ଏମ୍‌ଏରେ ପଢୁଥିଲି। ଯଦିଓ ଉପନ୍ୟାସଟି ବିଏ ପଢ଼ିବାବେଳେ ଲେଖିଥିଲି। ତେବେ ଉପନ୍ୟାସ ପ୍ରକାଶିତ ରୂପ ମୋର ଲେଖନୀକୁ ଅଧିକ ମଜବୁତ କଲା।

ପ୍ରଶ୍ନ: ଆପଣ ସାହିତ୍ୟର ସବୁ ବିଭାଗରେ ଲେଖନୀ ଚାଳନା କରିଛନ୍ତି। କେଉଁ ବିଭାଗରେ ଲେଖିବାକୁ ଆପଣ ସହଜ ମନେକରନ୍ତି ?

ଉତ୍ତର. ପ୍ରତି ବିଭାଗ ପ୍ରତି ମୋର ଆକର୍ଷଣ ଅଛି। ଜଣେ ଲେଖକ ନିଜକୁ ବିଭିନ୍ନ ବିଭାଗରେ ପ୍ରକାଶିତ କରିବା ଏକ ସ୍ୱାଭାବିକ ପ୍ରକ୍ରିୟା ମୁଁ ଯେଉଁ ବିଭାଗରେ ଲେଖନୀ ଚାଳନା କରେ, ଆନ୍ତରିକତାର ସହିତ କରିଥାଏ ।

ପ୍ରଶ୍ନ: 'ମଧୁ ମିଶ୍ରଙ୍କ ମୃତ୍ୟୁ' କ'ଣ ଏକ ସତ୍ୟ ଘଟଣା ଉପରେ ଆଧାରିତ ?

ଉତ୍ତର. ଏହା ଏକ ସତ ଘଟଣା। ସାନ ପିଲା ଥିଲି, ମଧୁ ମିଶ୍ରଙ୍କର ବିଜୁଳି ଚଡକରେ ମୃତ୍ୟୁ ହୋଇଥିଲା। ଆଉ ଥରେ ଚଡକ ହେଲେ ସେ ବଞ୍ଚିବେ। ଏହି ବିଶ୍ୱାସରେ ତାଙ୍କ ଶବକୁ ରଖାଯାଇଥିଲା। ଗଳ୍ପଟିରେ ନିର୍ଦ୍ଦିଷ୍ଟ କୌଣସି ବିଷୟବସ୍ତୁ ନାହିଁ। ଅଛି ଗୋଟିଏ ଇମୋଶନ୍। ମୋର ପ୍ରିୟ ଗଳ୍ପଗୁଡ଼ିକ ଗୋଟିଏ ମୁଡ୍, ଚିତ୍ର, ଇମୋଶନ୍‌କୁ ନେଇ ହିଁ ରଚିତ।

ପ୍ରଶ୍ନ: ଲୋକଙ୍କ ମୁଡ୍, ଇମୋଶନକୁ ନେଇ ଗଳ୍ପ ଲେଖି ସମାଜକୁ ଆପଣ କି ବାର୍ତ୍ତା ଦେବାକୁ ଚାହାନ୍ତି ?

ଉତ୍ତର. ମୋର 'ଘର ବାହୁଡା' ଗଳ୍ପରେ ଭାଇମାନେ ମିଶି ଯୋଜନା କରୁଛନ୍ତି ନିଜର ପୁରୁଣା ଚାଳଘରକୁ ଭାଙ୍ଗି ସେଠାରେ ନୂଆ କୋଠାଘର ତିଆରି କରିବେ। ଏହି ଯୋଜନା କରିବାବେଳେ ସେମାନଙ୍କର ସ୍ମୃତିସବୁ ସେହି ଘର ସହ କିପରି ଜଡିତ ଅଛି, ସେମାନେ କିପରି ଅତୀତରୁ ବର୍ତ୍ତମାନକୁ ଫେରୁଛନ୍ତି, ତାହା ଦର୍ଶାଯାଇଛି। ଏଠାରେ ସ୍ଥୂଳ ଅର୍ଥରେ କାହାଣୀ ନାହିଁ କିନ୍ତୁ ସୂକ୍ଷ୍ମ ସ୍ତରରେ କାହାଣୀ ଅଛି। ମୋର ଅନେକ ଗଳ୍ପରୁ ପାଠକ କାହାଣୀ ଖୋଜିଛନ୍ତି। କିନ୍ତୁ ମୁଁ ସବୁବେଳେ ବିଷୟକୁ ନ ନେଇ ଚରିତ୍ରକୁ ଗୁରୁତ୍ୱ ଦେଇଛି। 'ସକାଳର ମୁହଁ'ର ଗୋଟିଏ ଚରିତ୍ର ଗୀତ ବୋଲି ବୋଲି ଯିବା ଆସିବା କରେ, ସେ ଗୋଟିଏ ହୋଟେଲରେ ଚାକର କାମ କରେ। ମନକୁ ଯୋଡି ଗୀତ ବୋଲେ। ଏହି ଗୀତରେ ପିଲାଟିର ଦୁଃଖ ଅଛି, ଅଥଚ ସେ ହାସ୍ୟାଭିନୟ କରି ନିଜ ଦୁଃଖକୁ ଭୁଲାଉଛି। ଏଥିରେ ରହିଛି ସବୁବେଳେ ସବୁ ମୁହୂର୍ତ୍ତରେ ଆନନ୍ଦର ଖୁସିରେ ରହିପାରିବାର ବାର୍ତ୍ତା।

ପ୍ରଶ୍ନ: ଆଜିର ଲେଖକମାନଙ୍କ ସମ୍ପର୍କରେ କ'ଣ କହିବେ ?

ଉତ୍ତର. ଲେଖକଙ୍କୁ ଫିଲ୍ଡୱାର୍କ କରିବା ଦରକାର। ଲୋକଙ୍କ ସହ ମିଶିବ, ତାଙ୍କଠାରୁ କାହାଣୀ ଆଣିବ, ତେବେ ତାହା ଜୀବନ୍ତ ଲାଗିବ। ଅଧିକ ପଢ଼ିବା ଦରକାର।

ବୁଢ଼ିମା' ମୁହଁରୁ ଶୁଣିଥିବା ଗପକୁ ଯଦି ଲେଖକ ସାହିତ୍ୟଭୁକ୍ତ କରିବ ତେବେ ତାହା ଏକ ସୁନ୍ଦର ଲେଖା ହେବ। ଅଧିକାଂଶ ଲେଖକ ଲିମିଟେଡ। ସେମାନେ ଭାବନ୍ତି ନିର୍ଦ୍ଦିଷ୍ଟ ଗୋଟିଏ ଦିଗରେ ଲେଖନୀ ଚାଳନା କଲେ ସେମାନେ ସଫଳତା ପାଇବେ।

ପ୍ରଶ୍ନ: ଏବେ କ'ଣ ଲେଖୁଛନ୍ତି ?

ଉତ୍ତର. ଜେ.ପି.ଦାସଙ୍କ ଉପରେ ଏକ ପୁସ୍ତକ ଲେଖୁଛି, କେଳୁଚରଣଙ୍କ ଉପରେ ଇଲିଆନା ସିତାରିସ୍ତିଙ୍କ ରଚିତ 'ଦ ମେକିଙ୍ଗ୍ ଅଫ ଏ ଗୁରୁ' ଇଂରାଜୀ ପୁସ୍ତକର ଅନୁବାଦ କରୁଛି ପିଲାଙ୍କ ପାଇଁ ପୁସ୍ତକ 'ଗଛ କହୁଛି କଥା' ଏବଂ ଆଉ ଦୁଇଟି ପୁସ୍ତକ ପିଲାଙ୍କ ପାଇଁ ଲେଖୁଛି ତା'ର ନାଁ ଦେଇନି। ମୁଁ ଏକାବେଳକେ ୪/୫ ଟି ପୁସ୍ତକ ଉପରେ କାମ କରେ।

ପ୍ରଶ୍ନ: ଏକାବେଳକେ ଏତେ କାମ ଧରନ୍ତି ଗଡ଼ବଡ଼ ହୁଏନି ?

ଉତ୍ତର. ନା। ଗୋଟିଏ ଗୋଟିଏ ପୁସ୍ତକ ଲେଖାରେ ଅନେକ ସମୟ ଲାଗିଥାଏ। ଗୋଟିଏ ସାରି ଆଉ ଗୋଟିଏ ଲେଖିବାର ଧୈର୍ଯ୍ୟ ରହେନି। ଏକାବେଳକେ ଆରମ୍ଭ କରିଥିବା କାମ କେଉଁଟା ଆଗ ତ କେଉଁଟା ପଛ ହୋଇ ସରେ।

ପ୍ରଶ୍ନ: ଆପଣ ସାହିତ୍ୟ ବ୍ୟତୀତ ଅନ୍ୟାନ୍ୟ ଅନେକ ବିଷୟରେ ମଧ୍ୟ ରୁଚି ରଖନ୍ତି, ସମୟ କେମିତି ହୁଏ ?

ଉତ୍ତର. ସମୟ ବିଶେଷ ଅପଚୟ କରେନି। ଅବସର ପରେ ତ ଅଧିକ ସମୟ ନିଜକୁ ବିଭିନ୍ନ କାର୍ଯ୍ୟକ୍ରମରେ ବ୍ୟସ୍ତ ରଖିବା ମୋ ପାଇଁ ଆହୁରି ସହଜ ହୋଇଯାଇଛି। ଜଣେ କ୍ରିଏଟିଭ ଲୋକର ବିଭିନ୍ନ ଆଗ୍ରହ ରହିବା ସ୍ୱାଭାବିକ। ଇଂଲଣ୍ଡରେ ରହିବା ସମୟରେ ସାଧାରଣ ଭାବରେ କେବଳ ପାଠପଢ଼ାରେ ମୁଁ ରହୁ ନ ଥିଲି। ଅନ୍ୟାନ୍ୟ ଆଗ୍ରହ ବି ମୋର ଥିଲା। ଯେମିତି ଗାଁ ଗାଁକୁ ଯାଇ ବୁଲି ଲୋକଙ୍କ ଜୀବନଶୈଳୀ ଜାଣିବା। ଏହି ଆଗ୍ରହ ବଡ଼ କଥା ନୁହେଁ, କିନ୍ତୁ ଜରୁରୀ। ଲେଖକର ସବୁ ଦିଗ ପ୍ରତି ଆଗ୍ରହ ରହିବା ନିତାନ୍ତ ଆବଶ୍ୟକ। କାରଣ ଏସବୁ ଭିତରେ ହିଁ ସାହିତ୍ୟ ରହିଛି। ଏଣୁ ସବୁ ଦିଗ ପ୍ରତି ରୁଚି ରହିବା ଜଣେ ଲେଖକର ଗୁଣ ହେବା ଦରକାର।





# ଉତ୍କର୍ଷ ଓ ଅପକର୍ଷ ବାଛିବାର ସାହସ କମ୍ ସମାଲୋଚକଙ୍କର ଅଛି

## ଡ଼କ୍ଟର ସୁରେନ୍ଦ୍ର କୁମାର ମହାରଣା:

ଓଡ଼ିଆ ସାହିତ୍ୟର ଆଲୋଚକ, ସମାଲୋଚକ ଡ଼କ୍ଟର ସୁରେନ୍ଦ୍ର କୁମାର ମହାରଣା। ଜନ୍ମ ୧୯୪୭ରେ ଅବିଭକ୍ତ କଟକ (ବର୍ତ୍ତମାନ ଜଗତସିଂହପୁର) ଜିଲାରେ। 'ଓଡ଼ିଆ ସାହିତ୍ୟର ଇତିହାସ'ଠାରୁ ଆରମ୍ଭକରି ସେ ଲେଖିଛନ୍ତି ଏକାଧିକ ସମାଲୋଚନା ପୁସ୍ତକ। ସମାଲୋଚନାକୁ ସାହିତ୍ୟର ଏକ ଧାରା ଭାବେ ଗ୍ରହଣ କରିଥିବା ଡ଼କ୍ଟର ମହାରଣାଙ୍କ ସହ ସଂକ୍ଷିପ୍ତ ଆଳାପ।

ପ୍ରଶ୍ନ: ଆପଣଙ୍କ ଲେଖକ ଜୀବନର ଆରମ୍ଭ କିପରି ?

ଉତ୍ତର. ମୁଁ ହାଇସ୍କୁଲରେ ପାଠ ପଢ଼ିବାବେଳେ ପାଠ୍ୟପୁସ୍ତକ ବାଦ୍ ଅନ୍ୟ ପୁସ୍ତକ ବି ପଢୁଥିଲି। ଗୋଟିଏ ପୁସ୍ତକରୁ ଓଡ଼ିଶା ବୁକ ଷ୍ଟୋରର ଠିକଣା ଟିପି ମୁଁ ନିଜେ ଲେଖିଥିବା 'ଏକାଙ୍କିକା ସମାରୋହ ସାରସଂଗ୍ରହ' ପାଣ୍ଡୁଲିପିକୁ ଡାକ ଯୋଗେ ତାଙ୍କ ପାଖକୁ ପଠାଇ ଦେଲି। ଛାତ୍ର ଜୀବନରେ ମୋ ତଳ ଶ୍ରେଣୀରେ ପଢୁଥିବା ପିଲାଙ୍କୁ ମୁଁ ଟିଉସନ କରୁଥିଲି। ସେମାନଙ୍କ ମଧ୍ୟରୁ ଜଣେ ମୋତେ 'ଏକାଙ୍କିକା ସମାରୋହ' ନାମକ ପୁସ୍ତକଟି ଆଣି ମୋତେ ଦେଇଥିଲା। ସେଥିରେ ସ୍ଥାନୀତ ଏକାଙ୍କିକାଗୁଡ଼ିକ ଉପରେ ଉପରୋକ୍ତ ଆଲୋଚନା ପୁସ୍ତକଟି ଲେଖିବ କଟକର ଓଡ଼ିଶା ବୁକ୍ ଷ୍ଟୋର ପଠାଇଦେଲି । ଏହା ପାଠ କରି ଓଡିଶା ବୁକ୍‌ଷ୍ଟୋରର ସ୍ୱତ୍ୱାଧିକାରୀ ମୋତେ ପତ୍ର ମାଧ୍ୟମରେ ପୁସ୍ତକ ପ୍ରକାଶନର ସମ୍ମତି ଜଣାଇଲେ ଏବଂ ଆଉ କିଛି ଲେଖାଥିଲେ ତାହା ମଧ୍ୟ ପଠାଇବାକୁ କହିଲେ। ପରବର୍ତ୍ତୀ ସମୟରେ ମୁଁ 'ଗଳ୍ପଶ୍ରୀ ସାରସଂଗ୍ରହ' ପ୍ରସ୍ତୁତ କରି ପଠାଇଲି। ଦୁଇଟିଯାକ ପୁସ୍ତକ ସେ ପ୍ରକାଶ କରି ମୋ ପାଖକୁ ୫ଟି ଲେଖାଏଁ କପି ପଠାଇଲେ। ସେ ପର୍ଯ୍ୟନ୍ତ ସେ ମୋତେ ଦେଖି ନଥିଲେ। ମୋର ଭୟ ଥିଲା କାଳେ ମୋତେ ସେ ଦେଖିଦେଲେ ଛୋଟ ପିଲା କହି ମୋ ପୁସ୍ତକ ଛାପିବେ ନାହିଁ। ଏଣୁ ପୁସ୍ତକ ପ୍ରକାଶ ପରେ ତାଙ୍କୁ ଯାଇ ଦେଖାକଲି। ସେ ମଧ୍ୟ ଆଶ୍ଚର୍ଯ୍ୟ ହେଲେ ମୋ ପରି ଛୋଟ ପିଲାଟିଏ ଏପରି ଆଲୋଚନା ଲେଖିପାରେ।

ପ୍ରଶ୍ନ: ପ୍ରକାଶିତ ପୁସ୍ତକ ଦେଖି କିପରି ଲାଗିଲା ?

ଉତ୍ତର. ଖୁବ୍ ଆନନ୍ଦିତ ହେଲି। ତା'ପରଠାରୁ ମୋ କଲମ ଆଉ ସ୍ଥିର ରହିନି।

ପ୍ରଶ୍ନ: ଅନ୍ୟ କୌଣସି ଦିଗରେ ଲେଖନୀ ଚାଳନାର ଚେଷ୍ଟା କରିଥିଲେ ?

ଉତ୍ତର. ନା, ଅନ୍ୟ କିଛି ଲେଖିନାହିଁ କି ଚେଷ୍ଟା ବି କରିନି। କେବଳ ଆଲୋଚନାରେ ହିଁ ମନ ଦେଇଛି।

ପ୍ରଶ୍ନ: ଭବିଷ୍ୟତରେ ଜଣେ ସୁପ୍ରତିଷ୍ଠିତ ଆଲୋଚକର ପରିଚୟ ପାଇବେ ବୋଲି ଛାତ୍ର ଜୀବନରୁ ଆଶା ବାନ୍ଧିଥିଲେ କି ?

ଉତ୍ତର. ନା, ମୁଁ ସେତେବେଳେ ସାହିତ୍ୟଜଗତକୁ ଏତେଗୁଡ଼ିଏ ସମାଲୋଚନା ପୁସ୍ତକ ଦେଇପାରିବି ଆଶା କରି ନ ଥିଲି। ସ୍ନାତକୋତ୍ତର ଅଧ୍ୟୟନ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିବା ସମୟରେ ସାରଳା ସାହିତ୍ୟ ଓ ପଞ୍ଚସଖା ସାହିତ୍ୟ ପ୍ରତି ଅଧିକ ଆକୃଷ୍ଟ ହୋଇଥିଲି। ଅନେକ ଆଲୋଚନା ସାରଳା ଓ ପଞ୍ଚସଖା

ସାହିତ୍ୟ ଉପରେ ମୋ ଦ୍ୱାରା ଲିଖିତ। ଏପର୍ଯ୍ୟନ୍ତ ମୋର ୨୬ଟି ଆଲୋଚନା ପୁସ୍ତକ ପ୍ରକାଶିତ; ସେଥି ମଧ୍ୟରେ ସାହିତ୍ୟ ଏକାଡେମୀ ଦ୍ୱାରା ୪ଟି ମନୋଗ୍ରାଫ୍ ପ୍ରକାଶିତ। ତାନ୍ତ୍ରିକ ବୌଦ୍ଧଧର୍ମ ଉପରେ ଡକ୍ଟରେଟ ଲାଭ କରିଛି। ଗବେଷଣା ନିବନ୍ଧଟି ନୂଆ ଦିଲ୍ଲୀର ଏକ ପ୍ରତିଷ୍ଠିତ ପ୍ରକାଶକ ପ୍ରକାଶ କରିଛନ୍ତି।

ପ୍ରଶ୍ନ: ଆପଣ କୌଣସି ଦୈବୀଶକ୍ତିରେ ବିଶ୍ୱାସ କରିନ୍ତି କି ?

ଉତ୍ତର. ହଁ, ଅନେକ ଥର ମୋ ସହିତ ଏଭଳି ଘଟିଛି ଯାହା ମୋତେ ଲେଖିବାକୁ ପ୍ରେରଣା ଯୋଗାଏ, ମୋର ପରମ ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ କରୁଣା ମୋ ପ୍ରତି ରହିଛି।

ପ୍ରଶ୍ନ: ଆପଣ କେଉଁ ମୁଖ୍ୟ ଉଦ୍ଦେଶ୍ୟ ନେଇ ଲେଖାଲେଖି କରନ୍ତି ?

ଉତ୍ତର. ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବା ଏବଂ ସେଥିରୁ ମିଳୁଥିବା ଆନନ୍ଦକୁ ସମସ୍ତଙ୍କ ମଧ୍ୟରେ ବାଣ୍ଟିବା। ଜଣେ ସମାଲୋଚକ ଭାବରେ ଓଡ଼ିଆ ସଂସ୍କୃତି ଓ ସାହିତ୍ୟକୁ ଚିହ୍ନି ଚିହ୍ନାଇବା ମୋର ଉଦ୍ଦେଶ୍ୟ ବା ଲକ୍ଷ୍ୟ।

ପ୍ରଶ୍ନ: ଏ ଦିଗରେ କେତେ ସଫଳ ହୋଇଛନ୍ତି ?

ଉତ୍ତର. ସଫଳତାର ପଥ ଖୁବ୍ ଲମ୍ବା। ମୁଁ କେତେଦୂର ଅଗ୍ରସର ହୋଇଛି ତାହା ପାଠକ କହିବେ ଏବଂ ଭବିଷ୍ୟତ କହିବ।

ପ୍ରଶ୍ନ: ଆମ ସାହିତ୍ୟରେ କ'ଣ ଅଭାବ ରହୁଛି ?

ଉତ୍ତର. ସମକାଳୀନ ସମୟରେ କଥାକୁ ଆନ୍ତରିକତାର ସହିତ ହୃଦୟଙ୍ଗମ କରି ଏବଂ ଏହାକୁ ଅନୁଭୂତି ଓ ଅନୁଭବର ପୁଟ ଦେଇ ସାହିତ୍ୟ ସୃଷ୍ଟି କଲେ ନିଶ୍ଚୟ ତାହା ସମସ୍ତଙ୍କୁ ଭଲ ଲାଗିବ। ଅନେକ ବହି ଅଛି ପଢ଼ିବା ଭଳି ନୁହେଁ।

ପ୍ରଶ୍ନ: ଆମ ସାହିତ୍ୟରୁ ଉତ୍କର୍ଷ ଅପକର୍ଷ ବାଛିଦେବା ଠିକ୍ ହୁଅନ୍ତା କି ?

ଉତ୍ତର. ଉତ୍କର୍ଷ ଅପକର୍ଷ ବାଛିବାର ସତ୍‌ସାହସ ଖୁବ୍ କମ୍ ସମାଲୋଚକଙ୍କର ଥାଏ। ପରିସ୍ଥିତି ପରିବେଶକୁ ଚାହିଁ ଏବେ ଅନେକ ଅସାହିତ୍ୟକୁ ମଧ୍ୟ ସାହିତ୍ୟ ଭାବେ ଉଲ୍ଲେଖ କରାଯାଉଛି। ତେବେ କାଳ ସେସବୁର ସମାଧାନ ଆପେ କରିଦେବ। ତାକୁ କାଳ ହାତରେ ଛାଡନ୍ତୁ ସେ ବାଛିଦେବ କିଏ ସାହିତ୍ୟିକ କିଏ ନୁହେଁ।

ପ୍ରଶ୍ନ: ବର୍ତ୍ତମାନ କ'ଣ ଲେଖୁଛନ୍ତି ?

ଉ.	ଓଡ଼ିଆ ସାହିତ୍ୟର ଇତିହାସର ପରବର୍ତ୍ତୀ ପରିବର୍ଦ୍ଧିତ, ପରିମାର୍ଜିତ ସଂସ୍କରଣ ପାଇଁ ବ୍ୟସ୍ତ ଅଛି। ୨୦୧୦ ମସିହାରେ ପାଠକେ ଓଡ଼ିଆ ସାହିତ୍ୟର ଇତିହାସର ନୂତନ ମୁଦ୍ରଣ ପାଇଯିବେ ବୋଲି ଆଶା କରୁଛି।

ପ୍ରଶ୍ନ:	ଓଡ଼ିଶା ସାହିତ୍ୟର ଇତିହାସ ଲେଖିବାବେଳେ ଆପଣ କିପରି ସମସ୍ୟାର ସମ୍ମୁଖୀନ ହୋଇଛନ୍ତି ?

ଉତ୍ତର.	କିଛି ଲେଖକଙ୍କୁ ଯୋଗାଯୋଗ ସତ୍ତ୍ୱେ ଏବଂ କିଛି ଲେଖକଙ୍କୁ ପୁସ୍ତକରେ ସ୍ଥାନିତ କରିବାର ଇଚ୍ଛା ଥାଇ ମଧ୍ୟ ସେମାନଙ୍କ ସମ୍ପର୍କରେ ତଥ୍ୟ ପାଇ ନ ପାରିବାରୁ ସେମାନଙ୍କୁ ଉଲ୍ଲେଖ କରିବାରୁ ବଞ୍ଚିତ ହେଉଛି। ଯଥେଷ୍ଟ ବିବରଣୀ ନ ପାଇପାରିବା ଗୋଟିଏ ବଡ଼ ସମସ୍ୟା। ଯଦି 'ସାହିତ୍ୟାୟନ' ମାଧ୍ୟମରେ କିଛି ଲେଖକଙ୍କୁ ମୁଁ ପାଇଯାଏ ତେବେ ସେମାନଙ୍କୁ ଉଲ୍ଲେଖ କରିବାକୁ ମୋ ପାଇଁ ସହଜ ହେବ।

ପ୍ରଶ୍ନ:	ଆପଣ ବୌଦ୍ଧ ସଂସ୍କୃତି ଉପରେ ପୁସ୍ତକ ରଚନା କରି ସାରିଛନ୍ତି। ପାଠକୀୟ ପ୍ରତିକ୍ରିୟା କିପରି ?

ଉତ୍ତର.	ଏହା ପଢ଼ିବା ପରେ ପାଠକ ଏବଂ ପ୍ରକାଶକ ଜୈନ, ଶୈବ, ଶାକ୍ତ ଇତ୍ୟାଦି ଅନ୍ୟ ସଂସ୍କୃତି ଉପରେ ମଧ୍ୟ ପୁସ୍ତକ ଲେଖିବାକୁ ଅନୁରୋଧ କରିଛନ୍ତି।

ପ୍ରଶ୍ନ:	ଲେଖକଙ୍କ ପାଇଁ ଆପଣଙ୍କ ବାର୍ତ୍ତା ?

ଉତ୍ତର.	ଏଭଳି ସାହିତ୍ୟ ସୃଷ୍ଟି ହେଉ ଯାହା ଉତ୍ତରପିଢ଼ିଙ୍କ ପାଇଁ ପ୍ରେରଣାର ଉତ୍ସ ହେବା ସହ ପାଠକଙ୍କୁ ପ୍ରଭାବିତ କରିପାରିବ।





# ନାଟ୍ୟକାର, କଳାକାର, ନିର୍ଦ୍ଦେଶକ ଓ ନାଟ୍ୟପ୍ରେମୀ ଏକାତ୍ମ ହେବା ଜରୁରୀ

## ଡ଼ଃ ଶୈଳେଶ୍ୱର ନନ୍ଦ:

ନାଟକକୁ କୁହାଯାଏ ପଞ୍ଚମ ବେଦ। ଭରତ ମୁନି ଥିଲେ ନାଟ୍ୟ ସାହିତ୍ୟର ସ୍ରଷ୍ଟା। ନାଟକକୁ ସାହିତ୍ୟର ଅନ୍ୟତମ ଅଙ୍ଗ ଭାବେ ଗ୍ରହଣ କରାଯାଇଥିଲେ ମଧ୍ୟ ବିଭିନ୍ନ କାରଣରୁ ନାଟ୍ୟ ରଚନାର କ୍ଷେତ୍ର ସୀମିତ ହୋଇଯାଇଛି। ଓଡ଼ିଆ ନାଟ୍ୟ ସାହିତ୍ୟକୁ ଯେଉଁ କେତେଜଣ ନାଟ୍ୟକାରଙ୍କର ଅବଦାନ ରହିଛି ସେମାନଙ୍କ ମଧ୍ୟରେ ଡ଼ଃ ଶୈଳେଶ୍ୱର ନନ୍ଦ ଅନ୍ୟତମ। ୧୯୬୪ ମସିହାରୁ ନାଟ୍ୟ ସାହିତ୍ୟରେ ଲେଖନୀ ଚାଳନା କରିଆସୁଥିବା ଡ଼ଃ ନନ୍ଦ ୨୫ରୁ ଅଧିକ ନାଟକ, ଏକାଧିକ ବେତାର, ଟେଲି ନାଟକ ଓ ଏକାଙ୍କିକା ରଚନା କରି ଓଡ଼ିଆ ନାଟ୍ୟ ସାହିତ୍ୟକୁ ସମୃଦ୍ଧ କରିଛନ୍ତି। ଏତଦ୍ ବ୍ୟତୀତ ସେ ଓଡ଼ିଆ କଥା ସାହିତ୍ୟରେ ଲେଖନୀ ଚାଳନା କରି ୫ଟି ଉପନ୍ୟାସ ଓ ଦୁଇଟି ସଂକଳନ ମଧ୍ୟ ସୃଷ୍ଟି କରିଛନ୍ତି।

ପ୍ରଶ୍ନ: ଡ଼ଃ ନନ୍ଦ ନାଟକ ଆଡ଼କୁ ବେଶି ଢ଼ଳିଲେ କାହିଁକି ?

ଉତ୍ତର. ସ୍ରଷ୍ଟା ତା'ର ସୃଷ୍ଟିକୁ ଏଠି ଦୃଶ୍ୟକାବ୍ୟ ରୂପେ ମଞ୍ଚରେ ଦେଖି ଆନନ୍ଦ ବିହ୍ୱଳିତ ହୁଏ। ଦର୍ଶକ, ସମାଲୋଚକ ତଥା ସମାଜର ପ୍ରତିକ୍ରିୟାକୁ ଖୁବ୍ ନିକଟରୁ ଅନୁଭବ କରେ, ଯାହାକି ନାଟ୍ୟକାର ଜୀବନକୁ ସାର୍ଥକ କରେ। ଏହାହିଁ ମୋତେ ନାଟକ ରଚନା ପ୍ରତି ଅନୁପ୍ରେରିତ କରିଥିଲା। ତା'ଛଡା ସାହିତ୍ୟର ଅନ୍ୟ ବିଭାଗରେ ମଧ୍ୟ ମୁଁ ଲେଖନୀ ଚାଳନା କରିଛି।

ପ୍ରଶ୍ନ: ନାଟକ ଲେଖିବା ପୂର୍ବରୁ କିପରି ପ୍ରସ୍ତୁତ କରନ୍ତି ?

ଉତ୍ତର. ନାଟକଟିଏ ଲେଖିବା ପାଇଁ ୩ଟି ପର୍ଯ୍ୟାୟରେ ପ୍ରସ୍ତୁତ କରାଯାଏ। ପ୍ରଥମେ ଚିନ୍ତା କରାଯାଏ କ'ଣ ଲେଖିବି। କିଛି ନୂଆ କଥାକୁ ଲେଖିବା ପାଇଁ ସବୁବେଳେ ଇଚ୍ଛା ଥାଏ। ତା'ପରେ କିପରି ଲେଖିବି ଅର୍ଥାତ୍ କିପରି ତାକୁ ସଂଳାପ, ସଙ୍ଗୀତ ଓ ପରିବେଶରେ ପ୍ରକାଶ କରିବି। ଦ୍ୱିତୀୟ ପର୍ଯ୍ୟାୟରେ ଦୃଶ୍ୟ ସଂଯୋଜନା ଭଲ ନ ଲାଗିଲେ ପୁଣି ବଦଳାଏ ମନ ଶାନ୍ତି ହେଲା ଯାଏ। ଶେଷରେ ମଞ୍ଚସ୍ଥ କରିବାର ଆୟୋଜନ କରାଯାଏ। ରିହରସାଲ ସମୟରେ ଦୃଶ୍ୟସବୁରେ ଥିବା ଶୂନ୍ୟସ୍ଥାନକୁ ପୁଣି ଭରି ଦିଆଯାଏ ଓ ନାଟକ ପୂର୍ଣ୍ଣାଙ୍ଗ ରୂପ ନିଏ ଓ ମଞ୍ଚସ୍ଥ ହୁଏ ସ୍ୱୟଂ ସମ୍ପୂର୍ଣ୍ଣ ହୋଇ।

ପ୍ରଶ୍ନ: ନାଟକଟିଏ ଉତ୍ତୁରିବା ପାଇଁ କେତେ ସମୟ ନିଏ ?

ଉତ୍ତର. ମଞ୍ଚନାଟକ ଲେଖିବାକୁ ବେଶି ସମୟ ନ ଲାଗିଲେ ବି ଚିନ୍ତା କରିବା ଆଉ ରୂପ ଦେବା ବା ପୂର୍ଣ୍ଣାଙ୍ଗ କରିବାକୁ ଅତିକମ୍‌ରେ ଛ'ମାସ ଲାଗିଥାଏ। କିନ୍ତୁ ମଞ୍ଚସ୍ଥ ହେବା ପରେ ବି ବେଶ୍ ଅନେକ ଦିନ ଅପେକ୍ଷା କରିବାକୁ ପଡେ ପୁସ୍ତକ ଆକାରରେ ଆତ୍ମପ୍ରକାଶ କରିବାକୁ। ଏ କ୍ଷେତ୍ରରେ ପ୍ରକାଶକଙ୍କ ଦୟା ଓ ଅନୁକମ୍ପାକୁ ପ୍ରତୀକ୍ଷା କରାଯାଏ।

ପ୍ରଶ୍ନ: ଆପଣଙ୍କର କେତୋଟି ନାଟକ ମଞ୍ଚସ୍ଥ ଓ କେତୋଟି ପ୍ରକାଶିତ ?

ଉତ୍ତର. ଏ ଯାବତ୍ ମୋର ୨୫ଟି ନାଟକ ମଞ୍ଚସ୍ଥ ହୋଇସାରିଛି। ମାତ୍ର ୧୮ଟି ନାଟକ ପୁସ୍ତକ ଆକାରରେ ପ୍ରକାଶିତ ହୋଇପାରିଛି। ଏତଦ୍‌ବ୍ୟତିତ ବେତାର ନାଟକ, ଏକାଙ୍କିକା ଆଦି ପ୍ରାୟ ୧୫ଟି ଏଯାବତ୍ ଅପ୍ରକାଶିତ। ପାଣ୍ଡୁଲିପି ଆକାରରେ ମହଜୁଦ୍।

ପ୍ରଶ୍ନ: ନିଜ ସୃଷ୍ଟିରୁ ମଞ୍ଚାସୀନ ଦେଖି କେମିତି ଲାଗେ ?

ଉତ୍ତର. ଖୁବ୍ ଭଲ ଲାଗେ। ଚାରାଟିଏ ଲଗାଇ ପାଣିଦେଇ ବଢ଼େଇ ସେଥିରେ ଫୁଲ ଫୁଟିଲେ, ଫଳ ଧରିଲେ ଯେମିତି ଆନନ୍ଦ ଠିକ୍ ସେମିତି ନାଟକଟି ସର୍ବାଙ୍ଗ ସୁନ୍ଦର ହେଲେ ମନ ଆନନ୍ଦରେ ନାଚିଯାଏ। ସ୍ରଷ୍ଟା ନିଜର ସୃଷ୍ଟିକୁ ନିଜ ଆଖିରେ ଦେଖେ ଓ ଦର୍ଶକମାନଙ୍କ ପସନ୍ଦ ଭିତରେ ଆତ୍ମତୃପ୍ତି ଲାଭ କରେ।

ପ୍ରଶ୍ନ: 'ସଂଗ୍ରାମ' ନାଟକରେ ଆପଣ ଲୀଳା ମୁହଁରେ ମଦର ମେରୀଙ୍କ ଉଦାହରଣ ଦେଇ କୁମାରୀ ମାତୃତ୍ୱକୁ ସହଜରେ ଗ୍ରହଣ କରିବା ଉଚିତ ବୋଲି କୁହାଇଛନ୍ତି। ଯେଉଁ ସମ୍ପର୍କକୁ ସମାଜ ବିରୋଧ କରେ ଆପଣ ତାକୁ ସହଜ ଭାବରେ ଏବଂ ସମ୍ମାନର ସହ ଗ୍ରହଣ କରିଛନ୍ତି କିପରି ?

ଉତ୍ତର. ସମାଜରେ ଏମିତି ଅନେକ ଘଟଣା ଘଟେ ଯାହା ହୁଏତ ଅନୁଚିତ। ଭୁଲ୍ ଠିକ୍‌ର ହିସାବ କରି ବସିଲେ ଆମେ ଏକ ନିର୍ଜନ ମରୁଭୂମିରେ ନିଜକୁ ଏକୁଟିଆ ପାଉ। ଉତ୍ତର ମିଳେନା। ମୁଁ ସବୁବେଳେ ଏ ପ୍ରକାର ଅବସ୍ଥା ଭିତରେ ସକାରାତ୍ମକ ଚିନ୍ତାଧାରା ଓ ସମାଧାନ ଖୋଜେ। ନ ହେଲେ ହୁଏତ ମୋର ସେ ନାରୀ ଚରିତ୍ର କେବଳ ପାଗଳିନୀ ହେବନି ବରଂ ମୋତେ ପଚାରିବସିବ କୁହନ୍ତୁ ସ୍ରଷ୍ଟା ମୋର କ'ଣ ଭୁଲ ? ଏଣୁ ସେମାନଙ୍କୁ ପତିତା ବା ଗଣିକାର ରୂପ ଦେବା ଅପେକ୍ଷା ବରଂ ତାଙ୍କୁ ସାମାଜିକ ନ୍ୟାୟ ଦେବା ମୋର ଲକ୍ଷ୍ୟ।

ପ୍ରଶ୍ନ: ଆପଣ ମଧ୍ୟ ଜଣେ ଅଭିନେତା। ଅଭିନେତା ହେବା ପରେ ନାଟ୍ୟକାର ହେଲେ ନା ପ୍ରଥମେ ନାଟ୍ୟକାର ?

ଉତ୍ତର. ନାଟକ ରଚନା ପୂର୍ବରୁ ମୁଁ ଅଭିନୟ କରୁଥିଲି। ମେଡିକାଲ ଛାତ୍ର ଜୀବନରୁ ଜଣେ ଚରିତ୍ର ଅଭିନେତା ଭାବେ ମଞ୍ଚ, ବେତାର ଓ ଦୂରଦର୍ଶନ କଳାକାର ଭାବେ ମୁଁ ମୋର ନିଜସ୍ୱ ଆସନ ଖୋଜି ନେଇଛି। ଅଭିନୟ ପ୍ରତି ଆଗ୍ରହ ବଢ଼ିବାରୁ ନାଟକ ରଚନାରେ ନିଜକୁ ନିୟୋଜିତ କଲି। ନିଜ ନାଟକରେ ଏବେ ବି ମୁଁ ଅଭିନୟ କରୁଛି।

ପ୍ରଶ୍ନ: ଆପଣ ମଧ୍ୟ ଉପନ୍ୟାସ ଓ ଗଳ୍ପ ଲେଖିଛନ୍ତି। କଥା ସାହିତ୍ୟ ପ୍ରତି ମନ ବଳିଲା କିପରି ?

ଉତ୍ତର. ନାଟକ ଲେଖିବାରେ ମୁଁ ନିଶ୍ଚୟ ଆତ୍ମତୃପ୍ତି ପାଇଥାଏ କିନ୍ତୁ ନାଟକଟିଏ ଲେଖିଲେ ତ ମନ ଭରେନା। ମଞ୍ଚସ୍ଥ ହେବା ପାଇଁ ଖୋଜାଯାଏ କଳାକାରଙ୍କୁ। ପୁଣି ହଲ ବୁକିଂ, ଭଲ ନିର୍ଦ୍ଦେଶକ, ସଙ୍ଗୀତକାର, ମଞ୍ଚ ପରିଚାଳନା ଓ ସର୍ବୋପରି କଳାକାରଙ୍କୁ ସମୟ ଦେବା ଏସବୁ ବେଳେ ବେଳେ ହତୋତ୍ସାହିତ କରିଥାଏ।

ପୁଣି ନାଟକ ପୁସ୍ତକ ବାଛିବା ପାଇଁ ପ୍ରକାଶକମାନଙ୍କର ଏ କି ପ୍ରକାର ଅନିଚ୍ଛା ଦେଖିଲେ ମନ ମଉଳିଯାଏ। ଏସବୁ ନାଟକ ରଚନାକୁ ପଛକୁ ଟାଣିନେବା ସ୍ୱାଭାବିକ। ଏଣୁ ଗଳ୍ପ ଓ ଉପନ୍ୟାସ ଲେଖିବାକୁ ମନସ୍ଥ କଲି। ବିଦେଶରେ ରହଣି ସମୟରେ ମୁଁ ୨ଟି ଉପନ୍ୟାସ ଲେଖି ପ୍ରକାଶିତ କଲି ଓ ତାହା ମଧ୍ୟ ବେଶ୍ ଆଦୃତ ହେଲା ସମାଲୋଚକମାନଙ୍କ ଦ୍ୱାରା। ଏଣୁ ପରେ ପରେ ଆଉ ଦୁଇଟି ଉପନ୍ୟାସ ଓ ଦୁଇଟି ଗଳ୍ପ ସଂକଳନ ଲେଖି ପ୍ରକାଶ କଲି।

ପ୍ରଶ୍ନ: ଆପଣ 'ଅନ୍ୱେଷା', 'ବ୍ୟତିରେକ' ଓ 'ତପ୍ତବୈଶାଖ'ରେ ନାରୀ ଚରିତ୍ରକୁ ପ୍ରାଧାନ୍ୟ ଦେଇଛନ୍ତି। କିନ୍ତୁ କେଉଁ ଉପନ୍ୟାସଟି ଆପଣଙ୍କୁ ସବୁଠାରୁ ବେଶି ଆତ୍ମତୃପ୍ତି ଦେଇଛି।

ଉତ୍ତର. ମହାଭାରତର କର୍ଣ୍ଣ ଚରିତ୍ର ମୋତେ ଖୁବ୍ ଭଲ ଲାଗିଥିଲା। ଏଣୁ ତାକୁ ବିଭିନ୍ନ ମହାଭାରତର କଥାବସ୍ତୁରୁ ପଢ଼ି ନିଜେ ଲେଖି ବସିଲି 'ଅନନ୍ୟ' ଉପନ୍ୟାସ। ଏଥିରେ କର୍ଣ୍ଣଙ୍କୁ ମହାଭାରତର ଶ୍ରେଷ୍ଠ ଚରିତ୍ର କରି ମୁଁ ଗଢ଼ିପାରିଛି ଓ ଆଜି ଦୁନିଆରେ ବହୁ ବିଷାଦଗ୍ରସ୍ତ ଯୁବଗୋଷ୍ଠିଙ୍କୁ କର୍ଣ୍ଣ ପରି ସକାରାତ୍ମକ ହେବାର ନିର୍ଦ୍ଦେଶ ଦେଇପାରିଛି। ଆଜକୁ ଅନେକଦିନ ତଳେ ୧୯୭୨ ମସିହାରେ ମୋ ରଚିତ ନାଟକ ଅନନ୍ତ ଆକାଶର ନୀଳିମାରେ କର୍ଣ୍ଣ ଚରିତ୍ରର ଏ ମହନୀୟତା ମୁଁ ପ୍ରତିପାଦନ କରିଥିଲି ଆଉ ତାହା ମେଣ୍ଟାଇଦେଲି।

ପ୍ରଶ୍ନ: କେଉଁ କଥା ବସ୍ତୁ ଉପରେ ନାଟକ ଲେଖିବାକୁ ପସନ୍ଦ କରନ୍ତି ?

ଉତ୍ତର. ସାମାଜିକ ସମସ୍ୟାକୁ ନେଇ ତା'ର ସମାଧାନ ଆଣିବାରେ ମୁଁ ଚେଷ୍ଟିତ। ପୁଣି ପ୍ରତ୍ୟେକ ନାଟକରେ ଥାଏ ଗୋଟେ ମେସେଜ ବା ସନ୍ଦେଶ। ମୋ ପାଇଁ ସମସ୍ୟାର ସମାଧାନ ସବୁବେଳେ ସକାରାତ୍ମକ, ସାମାଜିକ ନାଟକ ଛଡା ପୌରାଣିକ ନାଟକ ଭାବେ ଶ୍ରୀଜଗନ୍ନାଥ ସଂସ୍କୃତିକୁ ନେଇ ଦାରୁବ୍ରହ୍ମ ମୁଁ ରଚନା କରିଛି। ଭାରତୀୟ ଇତିହାସକୁ ନେଇ ଜାହାନ୍ନାରା, ଆର୍ନ୍ତଜାତିକ ଇତିହାସକୁ ନେଇ 'ପିରାମିଡ୍' ରଚନା କରିଛି। ଏହାଛଡା କେତୋଟି ହାସ୍ୟରସାତ୍ମକ ନାଟକ ବି ରଚନା କରିଛି। ଏହା ସହିତ ପ୍ରାୟ ୪ଟି ବିଜ୍ଞାନଭିତ୍ତିକ ନାଟକ ମଧ୍ୟ ରଚନା କରିଛି।

ପ୍ରଶ୍ନ: ଓଡ଼ିଆ ନାଟକ ରଚନା ସଂଖ୍ୟା କମ୍। ଏଥିପାଇଁ ଦାୟୀ କିଏ ?

ଉତ୍ତର. ଦାୟୀ ଏଇ ସମାଜ, ଦର୍ଶକ ତଥା ଗ୍ରାହକ ଓ ନାଟକର ସ୍ରଷ୍ଟା ବା ନାଟ୍ୟକାର ଓ ଏହା ସହିତ କଳାକାରମାନଙ୍କର ବୀତସ୍ପୃହତା। ପ୍ରକାଶକମାନଙ୍କର ଭିନ୍ନ

ଦୃଷ୍ଟି ସର୍ବୋପରି ନାଟକର ବିକାଶ ଦିଗରେ ରାଜ୍ୟ  ସରକାର ଓ କଳାପ୍ରେମୀ ଜନସାଧାରଣ ଉଦାସୀନ ହେବା ସବୁଠାରୁ ବେଶି ଅନ୍ତରାୟ। ନାଟ୍ୟକାର, କଳାକାର ଓ ନାଟ୍ୟପ୍ରେମୀ ଜନସାଧାରଣ ଏକାତ୍ମ ହୋଇ ଆଗ୍ରହ ପ୍ରକାଶ କଲେ ଓଡ଼ିଆ ନାଟକ ବିଶ୍ୱ ନାଟ୍ୟଧାରାରେ ନିଜସ୍ୱ ସ୍ୱତନ୍ତ୍ର ଆସନ ହାସଲ କରିବାକୁ ସମର୍ଥ ହେବ। ଏଠି ଉଚ୍ଚକୋଟୀର ନାଟ୍ୟକାର, କଳାକାର ଓ ନିର୍ଦ୍ଦେଶକ ଅଛନ୍ତି କେବଳ ଆବଶ୍ୟକ ସମନ୍ୱୟ ଓ ସଂହତି।





# 'ଯକ୍ଷ' ମୋ ଭିତରର ବିବେକ

## ପ୍ରଫେସର ସଂଘମିତ୍ରା ମିଶ୍ର:

ପ୍ରଫେସର ସଂଘମିତ୍ରା ମିଶ୍ର। କବିତା, ସମାଲୋଚନା, ଫିଚର ପୁଣି ନାଟକ ଆଦି କ୍ଷେତ୍ରରେ ଲେଖନୀ ଚାଳନା କରି ନିଜକୁ ଓଡ଼ିଆ ସାହିତ୍ୟର ଅନ୍ୟତମ ସ୍ରଷ୍ଟା ଭାବେ ପ୍ରତିପାଦିତ କରିଛନ୍ତି। ସାରସ୍ୱତ ସାଧନା ପାଇଁ ତାଙ୍କୁ ମିଳିଛି ରାଜ୍ୟ ଓ ରାଜ୍ୟ ବାହାରର ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ସମ୍ମାନ ଓ ସ୍ୱୀକୃତି। ସମାଲୋଚନା, ପ୍ରବନ୍ଧ ଓ ଫିଚର ଲେଖାରେ ଅଧିକ ଆତ୍ମସନ୍ତୋଷ ଲାଭ କରୁଥିବା ଶ୍ରୀମତୀ ମିଶ୍ରଙ୍କ ଲେଖା ବିଶେଷ କରି ଓଡ଼ିଆ ଭାଷା ପ୍ରତି ଅଧିକ ଦାୟବଦ୍ଧତା।

ପ୍ରଶ୍ନ. ଲେଖାଲେଖି କେବେଠୁ ଓ କାହିଁକି ?

ଉତ୍ତର. ଘରେ ନନା ଗୀତ ଲେଖୁଥିଲେ । ନାନୀ ମଧ୍ୟ ଗୀତିକବିତା, ଭଜନ, ଶିଶୁଗୀତ ଓ ନାଟକ ଲେଖୁଥିଲା । ତେଣୁ ମୁଁ ଆଗ୍ରହରେ ପିଲାଦିନୁ ଛନ୍ଦ କବିତା ଲେଖୁଥିଲି । ବାହାଘର ଗୀତ ବହୁତ ଲେଖିଛି । ସଚେତନ ଭାବେ ୧୯୬୮-୬୯ରେ ମୋର କବିତା ଖୋର୍ଦ୍ଧା କଲେଜରେ ମୁଖପତ୍ର 'ପ୍ରତୀକ' ଓ ସାହିତ୍ୟ ସଂସଦର ମୁଖପତ୍ର 'ଧୂଳିମୁଠାଏ'ରେ ବାହାରିଥିଲା । କାହିଁକି ଲେଖିଲି ଆଜି ନୁହେଁ, କେବେ ବି କହିପାରିବି ନାହିଁ ।

ପ୍ରଶ୍ନ. ପ୍ରାୟ ସବୁ ବିଭାଗରେ ଲେଖନୀଚାଳନା କରିଛନ୍ତି, କେଉଁଥିରେ ଅଧିକ ସନ୍ତୁଷ୍ଟ ?

ଉତ୍ତର. ନା, ଉପନ୍ୟାସ ଲେଖିନି । ଗଳ୍ପ କେତୋଟି ଛପା ହୋଇଛି ଯାହା । ତେବେ କବିତାରେ ମୁଁ ନିଜକୁ ଆବିଷ୍କାର କରେ । ପ୍ରବନ୍ଧ/ସମାଲୋଚନା ଲେଖି ଅଧିକ ସନ୍ତୋଷ ପାଏ । ଫିଚର ମୋତେ ବେଶ୍ ଲୋକପ୍ରିୟ କରିଛି । ଖବରକାଗଜରେ ଛୋଟିଆ ଫିଚରଟିଏ ଛପାଗଲେ ମୁଁ ଯେଉଁ ପାଠକୀୟ ଆଦର ପାଉଛି ତାହା ମୋର ଆତ୍ମବିଶ୍ୱାସ ବଢ଼ାଇଛି ।

ପ୍ରଶ୍ନ. 'ଯକ୍ଷ ପ୍ରଶ୍ନ' ଖୁବ୍ ଚର୍ଚ୍ଚିତ, ଏହା ବନ୍ଦ କଲେ କାହିଁକି ?

ଉତ୍ତର. 'ଯକ୍ଷ ପ୍ରଶ୍ନ' ୧୯୯୭ ଶେଷରୁ ବାହାରିଲା ପ୍ରାୟ ୨୦୦୭ ପର୍ଯ୍ୟନ୍ତ । ୬୦ଟି 'ଯକ୍ଷ ପ୍ରଶ୍ନ' ଏକାଠି କରି ଅଗ୍ରଦୂତ ଛାପିଛନ୍ତି । ୬୨ଟି ଏକାଠି କରି 'ଗ୍ରନ୍ଥମନ୍ଦିର' ଛାପିଛନ୍ତି । ବନ୍ଦ ହୋଇନି ଯକ୍ଷପ୍ରଶ୍ନ ତାହା ଆତ୍ମବିଶ୍ୱାସର ଚାବିକାଠିଇ ଓ ସମୟର ଡେଣା ସଂକଳନରେ ଭିନ୍ନଭାବରେ ଆତ୍ମପ୍ରକାଶ କରିଛି । ଯକ୍ଷ ତ ଏବେ ଆହୁରୀ ମନୁଆ ହୋଇଯିବଣି । ସେ ମୋ କଥା ମାନିବ କାହିଁକି ?

ପ୍ରଶ୍ନ. 'ଯକ୍ଷ ପ୍ରଶ୍ନ'ର ବିଷୟ ଓ ଚରିତ୍ର ମାନଙ୍କୁ କେଉଁଠୁ ପାଉଥିଲେ ?

ଉତ୍ତର. ଯକ୍ଷ ମୋ ଭିତରର ବିବେକ/ମୂଲ୍ୟବୋଧ ଯାହା ଅନେକ ଜିଜ୍ଞାସା ସମନ୍ୱିତ । ସମାଜ ସହିତ ସଂସର୍ଗ, ସଂଘର୍ଷ ଓ ସମନ୍ୱୟରୁ ଏହିଭଳି ଅଗଣିତ ପ୍ରଶ୍ନ ଆସେ ଯାହାର ଉତ୍ତର ମୋତେ ଅଜଣା । ତେଣୁ ଯକ୍ଷ ସହିତ କଥୋପକଥନ ମାଧ୍ୟମରେ ମୁଁ ନିଜ ସହିତ ଯୁକ୍ତି କରେ । ଏ ଚରିତ୍ରମାନେ ମୋ ଚାରିପାଖରେ, ମୋ ଭିତରର ଆଉ ସେମାନଙ୍କ ଆଚରଣ ତଥା ଉଚ୍ଚାରଣ ଭିତରେ ମୁଁ ହିଁ

ବାରମ୍ବାର ଦର୍ପଣରେ ମୋ ମୁହଁ ଦେଖେ। ଜଣେ ସାଧାରଣ ମଣିଷ କେତେ ସାଲିସ୍ କରେ, କେତେ ବିଦ୍ରୋହ ଭାଷାରେ ପ୍ରକାଶିତ ହେବା ପୂର୍ବରୁ ସତ୍ତା ହରାଏ, ତାହା ହିଁ ଯକ୍ଷପ୍ରଶ୍ନର ବକ୍ତବ୍ୟ।

ପ୍ରଶ୍ନ. ଯକ୍ଷ ଆପଣଙ୍କୁ କିପରି ଘାରୁଥିଲା ?

ଉତ୍ତର. ଯକ୍ଷ ମୋର ସଚେତନ ଅନ୍ତରାତ୍ମା, ଯାହା ବେଳେ ବେଳେ ମୋତେ ଅସ୍ତବ୍ୟସ୍ତ କରେ। ଲେଖିବାକୁ ଉଚ୍ଚାଟ କରେ। ବେଳେ ବେଳେ ଗୋଟିଏ ଘଣ୍ଟାରେ ମୁଁ ଗୋଟିଏ ଯକ୍ଷପ୍ରଶ୍ନ ମଧ୍ୟ ଲେଖିଛି। ପୁଣି କେବେ କେବେ ଲେଖିବା ଆରମ୍ଭ କରି ଶେଷ କରିପାରିନି। ଚିରି ଦେଇଛି ମନକୁ ପାଇନି ବୋଲି। ଏ ମୋ ଅସହାୟତା ନୁହେଁ, କାଗଜ କଲମକୁ ଯୋଡୁଥିବା ଗୋଟିଏ ଗୋଟିଏ ଶବ୍ଦ ପାଇଁ ଶବ୍ଦ ସ୍ରଷ୍ଟାଙ୍କ ନିକଟରେ ଆଣ୍ଠୁମାଡି ପ୍ରାର୍ଥନା କରୁଥିବା ପ୍ରତ୍ୟେକ ସୃଷ୍ଟିଶୀଳ ମଣିଷର ଅସହାୟତା।

ପ୍ରଶ୍ନ. ତୁଳନାତ୍ମକ ସାହିତ୍ୟର ଆବଶ୍ୟକତା କେତେ ?

ଉତ୍ତର. ଭାରତର ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟ ଅନୁବାଦ ଜରିଆରେ ଓଡିଆ ପାଠକ ପାଖରେ ପହଞ୍ଚୁଛି। ତୁଳନାତ୍ମକ ସାହିତ୍ୟପ୍ରତି ଆଗ୍ରହ ବଢୁଛି। ରାଷ୍ଟ୍ରଭାଷା ହିନ୍ଦୀ ସହିତ ଯେକୌଣସି ପ୍ରାନ୍ତୀୟ ଭାଷା ତୁଳନା କଲେ ଉଭୟ ଭାଷା ପାଇଁ ତାହା ଶୁଭଙ୍କର। ମୋର ମାତୃଭାଷା ଓଡ଼ିଆରେ ରଚିତ ନାଟକଗୁଡିକ ସଂଖ୍ୟା ଦୃଷ୍ଟିରୁ ଊଣା ହୋଇପାରନ୍ତି ମାତ୍ର ଗୁଣାତ୍ମକ ଦୃଷ୍ଟିରୁ ହିନ୍ଦୀ ନାଟକ ସହିତ ସମକକ୍ଷ। ଏହା ମୁଁ ପ୍ରମାଣ କରିଦେଇଛି। ବିଶେଷକରି ଉଭୟ ଭାଷାରେ ମିଥ୍ ଓ ପ୍ରତୀକ ନାଟକଗୁଡିକର ଅଦ୍ଭୁତ ସାମ୍ୟ ବିଦ୍ୟମାନ।

ପ୍ରଶ୍ନ. ନାଟକର ପାଠକ କମ୍, ବଢ଼ିବ କେମିତି ?

ଉତ୍ତର. ନାଟକ ପାଠ୍ୟ ହେବା ଯଥେଷ୍ଟ ନୁହେଁ ବରଂ ଅଭିନୀତ ହେବା ହିଁ ନାଟକର ସାଫଲ୍ୟ। ଯୁଗ ଯୁଗ ଧରି ନାଟକର ପାଠକ ସଂଖ୍ୟା ସାହିତ୍ୟର ଅନ୍ୟ ବିଭାଗର ପାଠକ ସଂଖ୍ୟାଠାରୁ ଊଣା ଥିଲା। ଦେଖନ୍ତୁ ପୂଜାସଂଖ୍ୟା ପତ୍ରିକାମାନଙ୍କରେ ଗପ, କବିତା, ପ୍ରବନ୍ଧ, ଫିଚର ସହିତ ନାଟକର ଶତକଡା ହିସାବ କଲେ ନାଟକର ସ୍ଥାନ ସ୍ପଷ୍ଟ ହେବ। ସାହିତ୍ୟର ଅନ୍ୟ ସମସ୍ତ ବିଭାଗ ସହିତ କ'ଣ ପାଠକର ଐକ୍ୟ ସ୍ଥାପିତ ହୋଇପାରିଛି ? ମୁଁ ତ ଭାବୁଛି ସାମାଜିକ ଜୀବନ ଏପରି କି ପାରିବାରିକ ଜୀବନର ଐକ୍ୟ ବିପନ୍ନ ହେବାକୁ ବସିଲାଣି। ନାଟକ କିଭଳି ଦର୍ଶକ/ପାଠକ ସହିତ ଐକ୍ୟ ସ୍ଥାପନ କରିବ ସେ ବିଷୟରେ ମୋର ନିର୍ଦ୍ଦିଷ୍ଟ

ମନ୍ତବ୍ୟ ନାହିଁ। ତେବେ ଆଜି ଯେଉଁ ନାଟକମାନ ଅଭିନୀତ ହେଉଛି ସେଗୁଡ଼ିକ ଯେ ଖୁବ୍ ପ୍ରଭାବଶାଳୀ ଏକଥା ଆପଣ ନାଟକ ଦେଖିଲେ ହିଁ ଜାଣିପାରିବେ।

ପ୍ରଶ୍ନ. ଆପଣଙ୍କ କବି ଜୀବନ କେମିତି ?

ଉତ୍ତର. କବି ଜୀବନ ତ ଭିନ୍ନ ଜୀବନ ନୁହେଁ। ସମାଜ ସହିତ କେତେ ସମ୍ପୃକ୍ତ ଓ କେତେ ବିଚ୍ଛିନ୍ନ ହେଲେ କବିତାଟିଏ ଉତୁରିଆସେ, ତା'ର ଭାଗମାପ ଦେବା ମଧ୍ୟ ସମ୍ଭବ ନୁହେଁ। ତେବେ ଆଜି ମଧ୍ୟ ମୁଁ କବିତା ଲେଖେ। ମୋର ତିନିଟି କବିତା ପୁସ୍ତକ ପ୍ରକାଶିତ। 'ମମତାର ଉପପାଦ୍ୟ', 'ନିଜର ଭାବିଲା ପରେ' ଓ 'ବୋଉ ଓ ଅନ୍ୟାନ୍ୟ କବିତା'।ପତ୍ରିକାମାନଙ୍କରେ ପ୍ରକାଶିତ କବିତା ଯେତକ ଅଛି ଆଉ ଦୁଇଟି ବହି ହୋଇପାରେ। କିନ୍ତୁ ଛପା ନ ହୋଇ ରହିଥିବା ଆବୃତ୍ତି କବିତା ସଂଖ୍ୟାରେ ଅଧିକ। ମୁଁ କବିତା ପଢ଼ିବାକୁ/ ଆବୃତ୍ତି କରିବାକୁ ଭଲପାଏ। ଅଜି ମଧ୍ୟ କବିତା ପାଠୋତ୍ସବରେ ଯୋଗଦେଇ ଆନନ୍ଦିତ ହୁଏ।

ପ୍ରଶ୍ନ. ନିଶା, ପେସା, ପରିବାର-ସମନ୍ୱୟ ରହେ କିପରି ?

ଉତ୍ତର. ଅଭ୍ୟାସ ପରେ ଦ୍ୱିତୀୟ ପ୍ରକୃତି। ଦୀର୍ଘଦିନ ଅଭ୍ୟାସ ଫଳରେ ସବୁ ଚାଲେ। ବେଶ୍ କଷ୍ଟ ପଡ଼େ। ତେବେ ନିଜକୁ ବୁଝାଇଦିଏ ଯେ କୌଣସି କାମ ଛାଡି ଆଉ କେଉଁ ଦିଗକୁ ମାଡିଚାଲିଲେ ଅଧିକ କ'ଣ ହେବ। ଚାକିରି ମୋର ଅର୍ଥନୈତିକ ଦମ୍ଭ ଦେଇଛି। ସାମାଜିକ ପ୍ରତିଷ୍ଠା ଓ ସମ୍ମାନ ଦେଇଛି। ସର୍ବୋପରି ମୋ ଜୀବିକା ମୋ ଜୀବନର ବାଧକ ନୁହେଁ, ପରିପୂରକ ହୋଇଛି।

ପ୍ରଶ୍ନ. ଆପଣ ଆପଣଙ୍କର ଜୀବନୀ ଲେଖିଛନ୍ତି ? କେଉଁ ଆଗ୍ରହରେ ତାହା କରିଛନ୍ତି ?

ଉତ୍ତର. ମୋ ବାପାଙ୍କ ଜୀବନୀର ନାମ ରଖିଛି ଇତିହାସର ହଜିଲାଖିଅ ଏହି ନାମରୁ ହିଁ ଆପଣ ଜାଣଇପାରିବେ ତାର ବ୍ୟକ୍ତିତ୍ୱର ବୈଚିତ୍ର୍ୟ, ଦେଶ ପାଇଁ ୨୪ବର୍ଷ ବନ୍ଦ ମୁସଲମାନ ନାଁରେ ଲଣ୍ଡନରେ ରହି ସେଠାରୁ ଭାରତର ସ୍ୱାଧୀନତା ଆନ୍ଦୋଳନକୁ ସେ ପରିପୁଷ୍ଟ କରିଥିଲେ ମୁଁ ତାଙ୍କର ପରିଣତ ବୟସର ସନ୍ତାନ। ଏହା ମୋର ପିତୃଋଣ ସ୍ୱୀକାରମାତ୍ର।

ପ୍ରଶ୍ନ. ସମ୍ମାନ ଓ ପୁରସ୍କାରରେ ନିଜକୁ କେମିତି ଖୋଜନ୍ତି ?

ଉତ୍ତର. ସମ୍ମାନ ପୁରସ୍କାର ମୋତେ କେବେ ଅଭିଭୂତ କରିନାହିଁ। ଏପରି କି ମୁଁ ସେ ମାନପତ୍ର ସବୁ ଏକାଠି କରି ଗୋଟେ ଫାଇଲରେ ରଖିଛି। ପିଲାମାନଙ୍କୁ

କହିଛି ଏସବୁ ବାହାରକୁ କାଢ଼ିବନି। ବନ୍ଧାଇ କାନ୍ଥରେ ଝୁଲାଇବନି। କେହି କେବେ ଆଗ୍ରହରେ ସମ୍ମାନ ଦେଲେ ତା'ଠୁ ଆଗ୍ରହରେ ତାହା ମୁଁ ଗ୍ରହଣ କରିଛି। ସମ୍ମାନ ପାଇଲେ ଆବିଷ୍କାର କରାଯିବ, ଏମିତି ତ କିଛି ନିୟମ ନାହିଁ।

ପ୍ରଶ୍ନ. ଓଡ଼ିଆ ସାହିତ୍ୟ ପାଇଁ ଏବେ କ'ଣ ନିହାତି ଜରୁରୀ ?

ଉତ୍ତର. ଓଡ଼ିଆ ସାହିତ୍ୟ ପାଇଁ ବର୍ତ୍ତମାନ ଦରକାର ଭଲ ପାଠକ, ରୁଚି ସମ୍ପନ୍ନ ଲେଖା, ତ୍ରୁଟିଶୂନ୍ୟ ପତ୍ରପତ୍ରିକା, ସରଳ ବ୍ୟାକରଣ ଓ ଜୀବିକା ସହିତ ସମନ୍ୱିତ ହେବାର ଲକ୍ଷ୍ୟ। ସର୍ବୋପରି ଶିକ୍ଷାବ୍ୟବସ୍ଥାରେ ଓଡ଼ିଆ ଭାଷା ପ୍ରତି ଅଧିକ ଦାୟବଦ୍ଧତା।





# କବିତା ମୋ ହୃଦୟର ସ୍ପନ୍ଦନ,
# ନାଟକ ମୋର ପ୍ରାଣ

## ଡଃ ଉପେନ୍ଦ୍ର ନାୟକ:

**ଡଃ** ଉପେନ୍ଦ୍ର ନାୟକ ଶିଶୁ ସାହିତ୍ୟଠାରୁ ଆରମ୍ଭ କରି ଗଳ୍ପ, କବିତା, ଉପନ୍ୟାସ, ନାଟକ ସବୁଠିକୁ ପରିବ୍ୟାପ୍ତ ତାଙ୍କର ସୃଷ୍ଟି । ଗୀତି କବିତା ରଚନାରେ ମଧ୍ୟ ସେ ସିଦ୍ଧହସ୍ତ । ସବୁ ସତ୍ତ୍ୱେ ସେ ନିଜକୁ ଅଧିକ ସହଜ ମନେକରନ୍ତି କବିତାରେ, ନାଟକ ତାଙ୍କୁ ଦେଇଛି ଅନନ୍ୟ ତୃପ୍ତି । ହୃଦୟର ସ୍ପନ୍ଦନ ଓ ନାଟକ ମୋର ପ୍ରାଣ ।

ପ୍ରଶ୍ନ: ସାହିତ୍ୟ ସହ ସମ୍ପର୍କ କେବେଠାରୁ ?

ଉତ୍ତର. ମୋ କୈଶୋରରୁ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଆସିଛି। ହାଇସ୍କୁଲରେ ପଢୁଥିବାବେଳେ ମୁଁ କବିତା ଲେଖା ଆରମ୍ଭ କରିଥିଲି। ଅଷ୍ଟମ ଶ୍ରେଣୀରେ ହାତଲେଖା ପତ୍ରିକାର ଦାୟିତ୍ୱ ନେଇଆସିଥିଲି। 'ମନପବନ' ପତ୍ରିକାରେ ଶିଶୁ କବିତା ଲେଖୁଥିଲି। ଛାତ୍ର ଜୀବନରୁ ମୁଁ ସାହିତ୍ୟ ସହିତ ନିବିଷ୍ଟ ଭାବରେ ଜଡ଼ିତ।

ପ୍ରଶ୍ନ: ଶିଶୁ ସହିତ୍ୟରୁ ଆପଣଙ୍କ ଲେଖାଲେଖି ଆରମ୍ଭ। ଶିଶୁ ସାହିତ୍ୟକୁ ଛାଡ଼ି ସାହିତ୍ୟର ଅନ୍ୟାନ୍ୟ ବିଭାଗରେ ଅଧିକ ମନୋନିବେଶ କଲେ କିପରି ?

ଉତ୍ତର. ପ୍ରଥମେ ଅଧିକ ଶିଶୁ ସାହିତ୍ୟ ରଚନା କରୁଥିଲି। ତାହା ଓଡ଼ିଶାର ପ୍ରତ୍ୟେକ ପ୍ରତିଷ୍ଠିତ ଶିଶୁ ସାହିତ୍ୟ ପତ୍ରିକାରେ ପ୍ରକାଶ ପାଉଥିଲା। ଶିଶୁ ସାହିତ୍ୟ ରଚନା ନିମନ୍ତେ ମୁଁ ବିଭିନ୍ନ ଅନୁଷ୍ଠାନରୁ ସମ୍ମାନିତ ଓ ପୁରସ୍କୃତ ହୋଇଛି। ମୁଁ ଶିଶୁ ସାହିତ୍ୟ ରଚନାରୁ ଅବ୍ୟାହତି ନେଇନାହିଁ। ତେବେ ଶିଶୁ ସାହିତ୍ୟ ସହିତ ଏହା ମଧ୍ୟରେ ମୁଁ ଅନେକ କବିତା, ନାଟକ, ଗଳ୍ପ ଆଦି ଲେଖି ପାଠକୀୟ ଶ୍ରଦ୍ଧା ହାସଲ କରିଛି। ମୋର ଏଯାବତ୍ ୧୫ ଶିଶୁ ସାହିତ୍ୟ ପୁସ୍ତକ ପ୍ରକାଶ ପାଇଥିବାବେଳେ ଆହୁରି ଅନ୍ୟୂନ ୫୦ଟି ଶିଶୁ ସାହିତ୍ୟ ପାଣ୍ଡୁଲିପି ଅପ୍ରକାଶିତ ଅବସ୍ଥାରେ ରହିଛି।

ପ୍ରଶ୍ନ: ଆପଣ ଏବେ ଅଧିକ କବିତା ଓ ନାଟକ ରଚନାରେ ମନୋନିବେଶ କରିଛନ୍ତି ?

ଉତ୍ତର. ସାହିତ୍ୟର ବିଭିନ୍ନ ବିଭାଗ ପ୍ରତି ମୋର ଆଦର ରହିଛି। ଛାତ୍ରାବସ୍ଥାରୁ ନାଟକ ପ୍ରତି ମୁଁ ମୋହାବିଷ୍ଟ। ଯାତ୍ରା, ନାଟକ ଆଦି ଦେଖିବା ଏବଂ ସ୍କୁଲରେ ପଢୁଥିବା ବେଳୁ ହିଁ ମୁଁ ନାଟକ ରଚନା କରିଛି। ଏଯାବତ୍ ମୋର ୧୮ଟି ନାଟକ ପ୍ରକାଶିତ ଏବଂ ଅନ୍ୟୂନ ୩୦ଟି ନାଟକ ଅପ୍ରକାଶିତ ହୋଇ ରହିଛି। କବିତା ରଚନା ମୋର ଅନ୍ୟ ଏକ ଦିଗ। ପ୍ରାଣର ଅନେକ ଅକୁହା ସ୍ପନ୍ଦନ କବିତାରେ ଆପେ ଆପେ ରୂପାୟିତ ହୋଇଥାଏ। ପ୍ରେମ, ପ୍ରଣୟ, କାରୁଣ୍ୟ ଏବଂ ମୋ କୋମଳ ପ୍ରାଣର ଭାବାବେଗ କେବଳ ମୋ କବିତାରେ ରୂପାୟିତ ହୋଇନାହିଁ। ସାମାଜିକ ଭାବାବୋଧ, ଆଶାବାଦ ଏବଂ ଜୀବନବାଦ ତଥା ମାନବତାବାଦର ସ୍ୱର ମୋ କବିତାରେ ଭିନ୍ନ ଭିନ୍ନ ସମୟରେ ଅନୁରଣିତ ହୋଇଥାଏ।

ପ୍ରଶ୍ନ: ଆପଣଙ୍କ କବିତାରେ ପ୍ରେମ ଓ ଜାତୀୟତାବାଦର ସ୍ୱର ଦେଖିବାକୁ ମିଳେ। ଏଥିରେ ସମନ୍ୱୟ ରକ୍ଷା କରନ୍ତି କିପରି ?

ଉତ୍ତର. ମୋ ବିବେଚନାରେ ପ୍ରେମଠାରୁ ବଡ଼କଥା କିଛି ନାହିଁ। ସେ ପ୍ରେମ ମାନବୀୟ ପ୍ରେମ ହୋଇପାରେ, ଦେଶପ୍ରେମ, ଜାତିପ୍ରେମ ହୋଇପାରେ, ବିଭୁପ୍ରେମ

ହୋଇପାରେ ଏବଂ ବିଶ୍ୱପ୍ରେମ ହୋଇପାରେ। ପ୍ରେମ ସମ୍ପର୍କିତ କବିତା ରଚନା କବିର ଏକ ନିଜସ୍ୱ ଆବେଗରୁ ହିଁ ସୃଷ୍ଟି ହୋଇଥାଏ। ଲଭ୍ ପୋଏମ୍ସ ଆର୍ ଦ ବେଷ୍ଟ ପୋଏମ୍ସ। ଏହା ସମଗ୍ର ବିଶ୍ୱ ସାହିତ୍ୟରେ ହିଁ ପ୍ରତିପାଦିତ ହୋଇପାରିଛି। କବିଟିଏ କବିତାରେ ପ୍ରେମ କିରପାରେ, କବିତାରେ ବି ବିପ୍ଳବ କରିପାରେ। ତେଣୁ ସମାଜର ନାନାଦି ଦୋଷତ୍ରୁଟି, ହାନିଲାଭ, ଦୁର୍ନୀତି, ଭ୍ରଷ୍ଟାଚାର ବିରୋଧରେ ମଧ୍ୟ ମୁଁ କବିତା ଲେଖି ମୋର କବି କର୍ମ ଯଥାରୀତି ସମ୍ପାଦନ କରିଛି।

ପ୍ରଶ୍ନ: ଗୀତି କବିତା ପ୍ରତି ମନ ବଳାଇଲେ କେମିତି ?

ଉତ୍ତର. ମୁଁ ସଙ୍ଗୀତକୁ ଭଲପାଏ। ନିଜେ ଗୀତ ନ ଗାଇଲେ ମଧ୍ୟ ଗୀତ ମୋତେ ଆନନ୍ଦ ଦିଏ। ତେଣୁ ମନର ଭାବାବେଗ ଗୀତି କବିତାରେ ଲେଖି ହୋଇଯାଏ।

ପ୍ରଶ୍ନ: ଆପଣଙ୍କ କବିତା ଭଳି ଉପନ୍ୟାସ 'ତ୍ରୟୋଦଶୀର ଜହ୍ନ', 'ରକ୍ତାକ୍ତ ମୟୂରୀ' ଓ 'ଫୁଲବନ ଜଳିଗଲା ପରେ'ରେ ମଧ୍ୟ ପ୍ରେମ, ବିରହ, ହତାସା ରହିଥିବାବେଳେ ଗଳ୍ପଗୁଡ଼ିକରେ କିନ୍ତୁ ସେଭଳି କିଛି ଘଟାଇ ନାହାନ୍ତି। ଏ ବିଷୟରେ କିଛି କହିବେ କି ?

ଉତ୍ତର. ଉପନ୍ୟାସର ବ୍ୟାପ୍ତି ସାଧାରଣତଃ ଗଳ୍ପଠାରୁ ବେଶ୍ ପ୍ରଶସ୍ତ ହୋଇଥାଏ। ତେଣୁ ମୋ ଉପନ୍ୟାସରେ ପ୍ରେମ, ପ୍ରଣୟ, ବିରହ ଓ ହତାସା ପ୍ରତିଫଳିତ ହୋଇ କଥାବସ୍ତୁକୁ ବେଶ୍ ପ୍ରଭାବଶାଳୀ କରିପାରିଛି। ଗଳ୍ପଗୁଡ଼ିକରେ ସମାଜର ନିଛକ ଚିତ୍ର ପ୍ରତିଫଳିତ ହୋଇଛି ଏଇ ଆମରି ଚାରିପାଖର ଚରିତ୍ରମାନେ। ଉପନ୍ୟାସ ଏବେ ଲେଖୁନି। କବିତା ଓ ନାଟକ ରଚନାରେ ସମୟ ସବୁ ଅତିବାହିତ ହୋଇଯାଉଛି। ମୋ ଗଳ୍ପରେ ମଧ୍ୟ ପ୍ରେମ, ପ୍ରଣୟ ଓ କାରୁଣ୍ୟ ଯଥାରୀତିରେ ଅଙ୍କିତ ହୋଇଛି।

ପ୍ରଶ୍ନ: ଆପଣ ସାହିତ୍ୟର ସବୁଦିଗରେ ନିଜକୁ ସହଜ ମନେକରନ୍ତି ?

ଉତ୍ତର. ସାହିତ୍ୟର ସବୁ ଦିଗରେ ଲେଖନୀ ଚାଳନା କରିଥିଲେ ମଧ୍ୟ ବିଶେଷକରି କବିତାରେ ମୁଁ ନିଜକୁ ବେଶି ସହଜ ଭାବେ ପ୍ରକାଶ କରିପାରେ। କବିତା ବ୍ୟତୀତ ନାଟକ ରଚନା କରି ବିଶେଷ ଆମୋଦିତ ଓ ଆନନ୍ଦିତ ହୋଇଥାଏ।





# ଚେତନା ଓ ଉପଲବ୍ଧିର ବିଭିନ୍ନ ସୋପାନ ଦେଇ କାବ୍ୟ ଭାବନାର ଗତି

**ପ୍ରତିଭା ଶତପଥୀ:**

'ଅସ୍ତଜହ୍ନର ଏଲିଜି' ଠାରୁ ଆରମ୍ଭ କରି 'ସାହାଡା ସୁନ୍ଦରୀ' ପର୍ଯ୍ୟନ୍ତ ସେ ଲେଖିଛନ୍ତି ଅନେକ କବିତା। ତାଙ୍କ କବିତାରେ ବିଷାଦର ଭାବନା ଯେଭଳି ପରିସ୍ଫୁଟ, ପୌରାଣିକ ଚରିତ୍ର ଠିକ୍ ସେହିଭଳି ରୂପାୟିତ। ତାଙ୍କର କାବ୍ୟ ଚେତନା ସମ୍ପର୍କରେ ହୋଇଥିବା ଆଳାପର କିୟଦଂଶ...

ପ୍ରଶ୍ନ: 'ଅସ୍ତଜହ୍ନର ଏଲିଜି'ରେ ବିଷାଦ ଭାବନା ସହ ସୌନ୍ଦର୍ଯ୍ୟ ଚେତନାର ସମ୍ମିଶ୍ରଣ ଘଟିଛି। ଏହା କିପରି ସମ୍ଭବ ହେଲା ?

ଉତ୍ତର. ଏମିତିରେ ମୋ କବିତା ତ ବିଷାଦବୋଧର ପ୍ରତିଫଳନ ରହିଛି-ରହିଛି ମଧ୍ୟ ଉଜ୍ଜୀବନ ଆଶାବାଦର। ଆଶା ଓ ବିଷାଦ ପରସ୍ପରଠାରୁ ଅବିଚ୍ଛିନ୍ନ ହୋଇ ରହିଛନ୍ତି। ତା' ଭିତରେ ଲୁଚିଛପି ସୁନ୍ଦରତା ରହିବ ହିଁ ରହିବ। ସମ୍ମିଶ୍ରଣର ବାଗ ମୁଁ ନିଜେ ଜାଣେନା।

ପ୍ରଶ୍ନ: ଆପଣଙ୍କ କବିତାରେ ପ୍ରକୃତି ସହିତ ତଲ୍ଲୀନତାବୋଧ ସ୍ପଷ୍ଟ ବାରିହୁଏ। ଏହା କିପରି ସମ୍ଭବ ହୋଇଛି ?

ଉତ୍ତର. ମୋର ଜନ୍ମ କଟକସହର ହସ୍ପିଟାଲରେ। ୪ବର୍ଷ ବୟସ ପର୍ଯ୍ୟନ୍ତ ବିତିଛି କୋରାପୁଟ ସହର ମାଳରେ। ୧୬ ବର୍ଷ ବୟସଯାଏ ସତ୍ୟଭାମାପୁରରେ, ସେଇ ମୋ ଗାଆଁ। ତା'ପରେ ରେଭେନ୍‌ସା ହଷ୍ଟେଲ ଓ ସହର। ପ୍ରକୃତିର ବୀଜ ମୋ ଭିତରେ ପଲ୍ଲବିତ ହେଉଥାଏ ଅହରହ।

ପ୍ରଶ୍ନ:

ଉତ୍ତର. ୧୯୭୬ରେ ରଚିତ 'ସାହାଡ଼ା ସୁନ୍ଦରୀ' କବିତାଟି ନିଜ ଭିତରର ଏକ ଶୁଦ୍ଧସତ୍ତା ପ୍ରତି ଉଦ୍‌ବୋଧନ। ଜୀବନର ବାସ୍ତବ ସତ୍ୟକୁ ଆଜି ଏ ବୟସରେ କିଛି କିଛି ବୁଝିଲାପରି ମନେହେଉଛି। ତେବେ ସତ୍ୟ ଯେ ଆପେକ୍ଷିକ। 'ସାହାଡ଼ା ସୁନ୍ଦରୀ' ରଚନାକାଳରେ ହୁଏତ ସତ୍ୟ ସହ ପରିଚୟ ଘଟିଛି।

ପ୍ରଶ୍ନ: ଆପଣଙ୍କ ଅନେକ କବିତାରେ ଅଭିବ୍ୟକ୍ତିର ସୂକ୍ଷ୍ମତା ସମାନ ଦିଶୁଥିଲେ ମଧ୍ୟ ଭିନ୍ନ ଓ ଅନନ୍ୟ। ଗୋଟିଏ କଲମରୁ ଏ ଭିନ୍ନତା କିପରି ସମ୍ଭବ ?

ଉତ୍ତର. 'ମହାମେଘ' ୧୯୮୮ରେ ପ୍ରକାଶିତ ଓ 'କହି ନ ହେଲେ' ୨୦୦୬ରେ ପ୍ରକାଶିତ। ଯା' ଭିତରେ ଦୀର୍ଘ ଅଠରବର୍ଷର ବ୍ୟବଧାନ-ଚେତନା ଓ ଉପଲବ୍‌ଧିର ବିଭିନ୍ନ ସୋପାନ ଦେଇ କାବ୍ୟଭାବନା ଗତି କରିଥାଏ ଅବାରିତ। ଯଦି ଅଭିବ୍ୟକ୍ତି ଭିନ୍ନତା ଓ ଅନନ୍ୟତା କିଛି ବି ନ ଥାନ୍ତା, ମୁଁ ସେଗୁଡ଼ିକ ଲେଖିଥାନ୍ତି କାହିଁକି ? ମୂଳ କଥା, ଯାହା ଲେଖିଲେ ବି ଆହୁରି ଅନେକ ବାକି ରହିଗଲା ଭଳି ଲାଗେ।

ପ୍ରଶ୍ନ: ଅନେକ ପୌରାଣିକ ଚରିତ୍ରମାନଙ୍କୁ ନେଇ ଆପଣ କବିତା ଲେଖିଛନ୍ତି। କବିତା ଲେଖିବା ପାଇଁ ସେମାନଙ୍କ ପ୍ରତି ନଜର ପକାଇଲେ ନା ସେମାନେ ଆପେ ଉତୁରି ଆସିଲେ ?

ଉତ୍ତର. ପୌରାଣିକ ଚେତନା ଆପେ ଉତୁରି ଆସିନାହିଁ। ପୁରାଣର ସଂସ୍କାର କବିର ସଚେତନ ମାନସରେ ବିଦ୍ୟମାନ ଥାଏ। ସମକାଳର ପ୍ରାସଙ୍ଗିକତାକୁ ନେଇ ପ୍ରକଟ ହେବାକୁ ଅପେକ୍ଷା କରିଥାଏ। ଏହି ସଂଯୋଗ କବିର ମାନସଭୂମିରେ ସଂଘଟିତ ହୁଏ। 'ଶବରୀ' ସତ୍ତାଠାରେ ମୁଁ ନିଜକୁ ଆରୋପିତ କରିଛି ଓ ଶବରୀର ସତ୍ତା ମୋଠାରେ ଅନ୍ତଃପ୍ରବେଶ କରିଛନ୍ତି, ଯେ ଉଭୟଟା ବୋଧେ ସଂଘଟିତ ହୋଇଛି 'ଶବରୀ' କାବ୍ୟରେ।

ପ୍ରଶ୍ନ: କବିତା ପାଇଁ ଆପଣଙ୍କୁ କି ପ୍ରକାର ସାଧନା କରିବାକୁ ପଡିଛି ?

ଉତ୍ତର. ଜୀବନପଥରେ ଗୋଟେ ସମୟ ଆସିଲା, ମୁଁ କାବ୍ୟଭାବନା ଭିତରେ ବୁଡ଼ିଗଲି। ତନ୍ମଧ୍ୟରୁ ଉଠିପାରିଲି ନାହିଁ ବା ଉଠିଆସିବାକୁ ଚାହିଁଲି ନାହିଁ। ତା' ପରେ ସାଧ୍ୟମତେ ଭାରତୀୟ କବିତା ସମେତ ଦେଶବିଦେଶର କବିତା ପଢ଼ିବାର ଝୁଙ୍କ ବଢ଼ିଲା। ଲେଖିବାର ଆଗ୍ରହକୁ ମାନିନେବାକୁ ହେଲା। ଏହାକୁ ଆପଣ 'ସାଧନା' କହିପାରନ୍ତି।

ପ୍ରଶ୍ନ: ବର୍ତ୍ତମାନ ସମୟ ଓଡ଼ିଆ ସାହିତ୍ୟ ଜଗତରେ କେଉଁଭଳି ସ୍ମରଣୀୟ ହୋଇରହିବ ବୋଲି ଆପଣ ଭାବୁଛନ୍ତି ?

ଉତ୍ତର. ବର୍ତ୍ତମାନ ସମୟ ଆମ ସାହିତ୍ୟରେ ଏକ ଘଡ଼ିସନ୍ଧି କାଳ। ଓଡ଼ିଆ ଭାଷା ପ୍ରତି ଅନାଦର ବଢ଼ିଚାଲିଛି। ପଠନର ସ୍ପୃହା ସଂଖ୍ୟାଗତ ଭାବେ ହ୍ରାସ ପାଇଲେ ମଧ୍ୟ ଗୁଣଗତ ଭାବେ ତିଷ୍ଠି ରହିଛି। ବର୍ତ୍ତମାନ ସମୟ ସାହିତ୍ୟ ସୃଜନର ଏକ ସଚେତନ ସ୍ରୋତ ରୂପେ ସ୍ମରଣୀୟ ହୋଇ ରହିବ ବୋଲି ଆଶା କରାଯାଉ।





# କ୍ଲିଷ୍ଟତା ସୃଜନଧର୍ମୀ ଚେତନାର ପରିପନ୍ଥୀ

## ନୃସିଂହ କୁମାର ରଥ:

ନୃସିଂହ କୁମାର ରଥ ଷାଠିଏ ଦଶକର ଅନ୍ୟତମ କାବ୍ୟ ପ୍ରତିଭା । ଜୀବନରେ ବହୁବିଧ ନିବିଡ ଅନୁଭୂତି ତାଙ୍କ କବିତାରେ ଆବେଗଧର୍ମୀ ଭାଷା ଓ ଭାବରେ ରୂପାନ୍ୱିତ । ଜୀବନ ପ୍ରତି ତାଙ୍କର ଦୃଷ୍ଟିଭଙ୍ଗୀ ତୀବ୍ର ଏବଂ ଶାଣିତ । ଆଧୁନିକ ନାଁରେ ଦୁର୍ବୋଧତାର ସେ ଘୋର ବିରୋଧୀ । ବୋଧଗମ୍ୟ ଭାଷା ସହିତ ଗୀତିମୟତାର ସମନ୍ୱୟରେ ଶ୍ରୀ ରଥଙ୍କର କବିତା ଋଦ୍ଧିମନ୍ତ । ତାଙ୍କ ସହ ହୋଇଥିବା ଆଳାପର କିଛି ଅଂଶ ।

ପ୍ରଶ୍ନ: ଆପଣଙ୍କ ସାହିତ୍ୟ ଜୀବନର ଅୟମାରମ୍ଭ କିପରି ?

ଉତ୍ତର. ଜୀବନର ଦୁଃଖାନୁଭୂତିରୁ ମୋର ସାହିତ୍ୟ ଜୀବନର ଆରମ୍ଭ। ମୋର ପ୍ରଥମ କବିତା ୧୯୫୪ ମସିହା ରବିବାର ପ୍ରଜାତନ୍ତ୍ରରେ ପ୍ରକାଶ ପାଇଥିଲା।

ପ୍ରଶ୍ନ: ଜୀବନକୁ ବହୁବିଧ ଅନୁଭୂତିକୁ ଆପଣ ଆପଣଙ୍କ କାବ୍ୟରେ ଆବେଗଧର୍ମୀ ଭାଷା ଓ ଭାବରେ ଫୁଟାଇ ପାଠକକୁ କିଛି ସମୟ ପାଇଁ ବାନ୍ଧିଦିଅନ୍ତି ନିଜ କାବ୍ୟ ଜଗତରେ; ଏହା କିପରି ହୁଏ ?

ଉତ୍ତର. ଏହା ସମ୍ଭବ ହୁଏ ପାଠକଙ୍କ ପ୍ରତି ଗଭୀର ଶ୍ରଦ୍ଧା ଏବଂ ଆତ୍ମୀୟବୋଧରୁ। ମୋର ନିଜସ୍ୱ ଅନୁଭୂତିରୁ ପାଠକଙ୍କ ପାଖରେ କିଛି ବଖାଣିବା/କହିଯିବା ପାଇଁ ଅତିଶୟ ଆଗ୍ରହ ଏହାର ଅନ୍ୟତମ କାରଣ।

ପ୍ରଶ୍ନ: ଆପଣଙ୍କ କାବ୍ୟ କବିତାରେ ଅନେକ ସ୍ଥାନରେ ମଣିଷପଣିଆର ଝଲକ ବାରିହୁଏ। ଏ ସମ୍ପର୍କରେ କ'ଣ କହିବେ ?

ଉତ୍ତର. ମଣିଷ ଭିତରେ ଅମଣିଷପଣିଆ ଏତେ ଅଧିକ ଦେଖିଛି ଯେ ସବୁବେଳେ ସବୁସ୍ଥାନରେ ମଣିଷପଣିଆକୁ ନିବିଡ ଭାବରେ ଖୋଜିଚାଲିଛି। ସମ୍ବେଦନଶୀଳ ମଣିଷଟିଏ ପାଖରେ ମୁଁ ନିଜକୁ ସମର୍ପିଦେଇଛି।

ପ୍ରଶ୍ନ: ଆପଣଙ୍କ ରଚିତ ୧୯୬୦ର 'ମରୁଦୂର୍ବା' ଏବଂ ବର୍ତ୍ତମାନ ଶେଷ ପ୍ରକାଶିତ ପୁସ୍ତକ 'ପ୍ରତିଧ୍ୱନି ଜଗତରୁ' ମଧ୍ୟରେ ତଫାତ କ'ଣ ?

ଉତ୍ତର. 'ମରୁଦୂର୍ବା' ଠାରୁ 'ପ୍ରତିଧ୍ୱନି ଜଗତରୁ' ଅନେକ ଦୂର। କିନ୍ତୁ ଏହି ଦୂରତା ଭିତରେ ମୋର ଅନୁସନ୍ଧିତ୍ସା ସବୁବେଳେ ଅପୂରଣ ହୋଇ ରହିଛି।

ପ୍ରଶ୍ନ: ଆପଣଙ୍କ କବିତାରେ ଗଭୀର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଜଟିଳ ଜୀବନର ଆବେଗ ଆଦି ରହିଛି। ଆପଣ ଶିଶୁମାନଙ୍କ ପାଇଁ ସହଜ ସରଳ କବିତା ଲେଖି ପାରିଛନ୍ତି କିପରି ?

ଉତ୍ତର. ଶିଶୁମାନଙ୍କ ପାଇଁ ଲେଖିଲା ବେଳେ ମୁଁ ଶିଶୁର ମାନସିକତାକୁ ପ୍ରାଧାନ୍ୟ ଦେଇଥାଏ। ଗୋଟିଏ ଶିଶୁକୁ ବୁଝିବା ପାଇଁ ମୁଁ ନିଜେ ଶିଶୁ ହୋଇଯାଏ ଓ ସଂପୃକ୍ତ କବିତାର ଭାବ ସହିତ ଭାଷା ସ୍ୱତଃପ୍ରବୃତ୍ତ ଭାବେ ଆସିଥାଏ। ଏହି ଅଭିନ୍ନତା ମତେ ଶିଶୁ ମାନସିକତାରେ ଆଚ୍ଛନ୍ନ କରି ରଖିଥାଏ କିଛି କାଳ ପାଇଁ।

ପ୍ରଶ୍ନ: କବିତା ଆପଣଙ୍କୁ କ'ଣ ଦେଇଛି ?

ଉତ୍ତର. ଆତ୍ମବିଶ୍ଲେଷଣ ଓ ଗଭୀର ସାନ୍ଦ୍ର ଜୀବନାନୁଭୂତି, ନିବିଡ ଦ୍ୱନ୍ଦ୍ୱରୁ ମୁକ୍ତି, ଜୀବନକୁ ଅନ୍ୱେଷଣ କରି ନାନା ତତ୍ତ୍ୱ ଆହରଣ କରିବାର ସହଜ ପନ୍ଥା କବିତାରୁ ମିଳିଛି।

ପ୍ରଶ୍ନ: କବିତାରେ ବ୍ୟବହୃତ ହେଉଥିବା କ୍ଲିଷ୍ଟ ଓ ଦୁର୍ବୋଧ ଶବ୍ଦ ସମ୍ପର୍କରେ କ'ଣ କହିବେ ?

ଉତ୍ତର. କବିତା ଦୁର୍ବୋଧ ହେବାର କୌଣସି କାରଣ ନାହିଁ। କବି ଜଣେ ମଣିଷ ଓ କବିତାର ଆଭିମୁଖ୍ୟ ମଣିଷ ହୋଇଥିବାରୁ, ଭାବପ୍ରକାଶରେ କୌଣସି କ୍ଲିଷ୍ଟତା ଓ ଦୁର୍ବୋଧତା ରହିବା ଅନାବଶ୍ୟକ। ଏହା ସୃଜନଧର୍ମୀ ଚେତନାର ପରିପନ୍ଥୀ।

ପ୍ରଶ୍ନ: ଆପଣଙ୍କ କବିତାରେ ଗୀତିମୟତା ସର୍ବଦା ବଜାୟ ଥାଏ। ଆପଣ କ'ଣ ମାନସିକ ସ୍ତରରେ ଗୀତିମୟତା ଭିତରେ ହିଁ କବିତାକୁ ରଖିବାକୁ ସ୍ଥିର କରିଥାନ୍ତି କି ?

ଉତ୍ତର. ଗୀତିମୟତା କବିତାର ପ୍ରାଣ। ଏହି ଗୀତିମୟତା ନ ଥିଲେ ଉଭୟ ଛନ୍ଦ ଓ ମୁକ୍ତ କବିତା କଠିନ କର୍କଶଧର୍ମୀ, ଗଦ୍ୟରେ ପରିଣତ ହେବ ଏବଂ ପାଠକୀୟ ଅବେଗ ଓ ଆବେଦନ ହରାଇ ବସିବ।

ପ୍ରଶ୍ନ: ଆପଣ ଇଂଲିଶ ଲିଟରେଚରରେ ଥାଇ ଓଡ଼ିଆ ଲିଟ୍‌ରେଚରକୁ ଏତେ ସୁନ୍ଦର ଭାବରେ ହୃଦ୍‌ବୋଧ କରିପାରିଛନ୍ତି ଏବଂ ଭାବକୁ ସୁନ୍ଦର ସହଜ ସରଳ ଭାବରେ ବ୍ୟକ୍ତ କରିପାରନ୍ତି, ଏହା ସମ୍ଭବ କିପରି ?

ଉତ୍ତର. ଇଂଲିଶ ହେଉ ବା ଓଡ଼ିଆ ହେଉ, ସାହିତ୍ୟର ଆଭିମୁଖ୍ୟ ଗୋଟିଏ। ଏହି ଆଭିମୁଖ୍ୟକୁ ଏକାନ୍ତ ନିଜସ୍ୱ ଭାବରେ ପ୍ରକାଶ କରିବା ପାଇଁ ମୁଁ ଆପ୍ରାଣ ଚେଷ୍ଟା କରିଛି। ମୋ ପାଇଁ ସାହିତ୍ୟ ଓ ସାହିତ୍ୟାନୁଭୂତି ଏକାନ୍ତ ବ୍ୟକ୍ତିଗତ।

ପ୍ରଶ୍ନ: ନୂଆ କବିଙ୍କୁ କ'ଣ କହିବେ ?

ଉତ୍ତର. ନିବିଡ ଜୀବନାନୁଭୂତିର ଆହରଣ ଓ ଅଧ୍ୟୟନ। ଏହି ଦୁଇଟି ଥିଲେ କବିତାର ନିଜସ୍ୱ ସୃଷ୍ଟି ସମ୍ଭାରକୁ ସମୃଦ୍ଧ କରିପାରିବ। ଏହା ହିଁ ନୂତନ କବିମାନଙ୍କୁ ମୋର ଆବେଦନ।

ପ୍ରଶ୍ନ: ଆପଣ ସାହିତ୍ୟର ଅନ୍ୟ ଦିଗରେ ଲେଖନୀ ଚାଳନା କରିନାହାନ୍ତି କାହିଁକି ?

ଉତ୍ତର. ଲେଖିଛି ହେଲେ ଗଳ୍ପ ୫ଟି ଆଉ ପ୍ରବନ୍ଧ ୧୦ଟି। ସେ ସବୁ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ କିନ୍ତୁ ପୁସ୍ତକ ହୋଇନାହିଁ।





# କବିତା ପାର୍ଥିବ, ପୁଣି ଅପାର୍ଥିବ

## ସୌଭାଗ୍ୟ କୁମାର ମିଶ୍ର:

ଓଡ଼ିଆ ସାହିତ୍ୟର ଅନ୍ୟତମ କବି ସୌଭାଗ୍ୟ କୁମାର ମିଶ୍ର। ୧୯୪୧ ମସିହାରେ ବ୍ରହ୍ମପୁରଠାରେ ଜନ୍ମଗ୍ରହଣ କରିଥିବା ଏହି ସାରସ୍ୱତ ସାଧକଙ୍କର ଇତି ମଧ୍ୟରେ ପ୍ରକାଶ ପାଇଛି ୧୦ଟି କବିତା ପୁସ୍ତକ। ତନ୍ମଧ୍ୟରେ ରହିଛି ଆତ୍ମନେପଦୀ, ମଧ୍ୟପଦଲୋପି, ନଈ ପହଁରା, ଅନ୍ଧ ମହୁମାଛି, ବଜ୍ରଯାନ, ମଣିକର୍ଣ୍ଣିକା, ଦ୍ୱାସୁପର୍ଣ୍ଣା, ଅନ୍ୟତ୍ର, ଚରାଚର, ଉଜ୍ଜୟିନୀ। ଏହାଛଡା ଘୁଣପୋକ, ଦୁର୍ଗ, ତରଙ୍ଗର ସ୍ୱର ନାମରେ ତିନୋଟି ଅନୁବାଦ ପୁସ୍ତକ ମଧ୍ୟ ପ୍ରକାଶ ପାଇଛି। ବିଷୁବ ମିଳନ, ଓଡ଼ିଶା ସାହିତ୍ୟ ଏକାଡ଼େମୀ, କେନ୍ଦ୍ରସାହିତ୍ୟ ଏକାଡ଼େମୀ, ଓଡ଼ିଶା ରାଜ୍ୟପାଳ ସମ୍ମାନ ଭଳି କେତୋଟି ମର୍ଯ୍ୟାଦାସମ୍ପନ୍ନ ପୁରସ୍କାର ମିଳିଛି ତାଙ୍କୁ। ଏତଦ୍‌ବ୍ୟତୀତ ସେ ପାଇଛନ୍ତି ଆୟୋଓ୍ୱା ବିଶ୍ୱବିଦ୍ୟାଳୟ ଫେଲୋଶିପ୍, କେନ୍ଦ୍ର ସରକାର ସଂସ୍କୃତି ବିଭାଗ ସିନିୟର ଫେଲୋଶିପ୍। ଶ୍ରୀ ମିଶ୍ରଙ୍କ ସହ ଆଳାପର କିୟଦଂଶ...

ପ୍ରଶ୍ନ: କବିଟିଏ ହେବାର ପ୍ରେରଣା ପାଇଲେ କେଉଁଠୁ ?

ଉତ୍ତର. ନବମ ଶ୍ରେଣୀରେ ପଢ଼ିଲାବେଳୁ ମୁଁ କବିତା ଲେଖିଆସୁଛି। ପ୍ରଥମେ ପ୍ରଥମେ ଲେଖିଲି ପାରମ୍ପରିକ ଛନ୍ଦରେ। ରାଗରାଗିଣୀରେ ବାନ୍ଧୁଥିଲି ମୋ ଉଚ୍ଚାରଣକୁ। ମୋ ସାନଭାଇ ଓ ମୁଁ ଗୀତ ଶିଖୁଥିଲୁ। ସେଇ ଗୀତ ଗାଇବାରୁ ମୁଁ କବିତା ଭିତରକୁ ଆସିଲି। ମୋ ପ୍ରଥମ ଛାପା ହୋଇଥିବା କବିତା ନୂଆ ଢ଼ଙ୍ଗର ଥିଲା। କଲେଜରେ ମୁଁ କବି ଗୁରୁପ୍ରସାଦ ମାହାନ୍ତିଙ୍କ ସଂସ୍ପର୍ଶରେ ଆସିଲି। 'ନୂତନ କବିତା' ପଢ଼ିଲି। ସେ ସମୟର କବିତା ପାଇଁ ଆମର ଆଗ୍ରହ ଓ ଉତ୍ସାହ କଥା ମନେପକାଇଲେ ଏବେ ଆଶ୍ଚର୍ଯ୍ୟ ଲାଗୁଛି। ମୋ କବିତା ପତ୍ରପତ୍ରିକାରେ ନିୟମିତ ଛାପା ହେଲା। ଆଇ.ଏ ପଢ଼ିଲାବେଳେ ମତେ ରବିବାର ପ୍ରଜାତନ୍ତ୍ରର ଶ୍ରେଷ୍ଠ କବି ପୁରସ୍କାର ମିଳିଗଲା। ତା' ପରେ କବିତା ନ ପଢ଼ି ନ ଲେଖି ଦିନଟିଏ ବି କଟୁନଥିଲା। ମୋ ଅଧ୍ୟାପକ ଜୀବନ ଆରମ୍ଭରେ କିଛି ବଛାବଛା କବିତା ଏକାଠି କରି 'ଆତ୍ମନେପଦୀ' ପ୍ରକାଶ କଲି।

ପ୍ରଶ୍ନ: କବିତା କହିଲେ ଆପଣ କ'ଣ ବୁଝନ୍ତି ?

ଉତ୍ତର. ଏମିତି ପ୍ରଶ୍ନ ନପଚାରିଲେ କ'ଣ ଚଳିବନି ? କିଏ ବା କହିପାରିଛି ବା କହିପାରିବ କବିତା କ'ଣ ? ବହୁ କବି, ଲେଖକ କବିତାର ସଂଜ୍ଞା ଦେବାକୁ ଚେଷ୍ଟା କରିଛନ୍ତି। କିନ୍ତୁ କୌଣସିଟି ସମ୍ପୂର୍ଣ୍ଣ ନୁହେଁ, ସନ୍ତୋଷଜନକ ନୁହେଁ। ହେବା ବି ଅସମ୍ଭବ। କବିତା ପାର୍ଥିବ, ମନୁଷ୍ୟକୃତ। ସମାଜ ଗଢ଼ିଥିବା ଭାଷାରେ ତିଆରି। ପୁଣି ତା' ଅପାର୍ଥିବ। ସେଥିରେ ଏମିତି ଏକ ଶକ୍ତି ସଞ୍ଚରିଯାଏ ଯାହା ଆମକୁ ଉଲ୍ଲସିତ କରେ। ଆମ ଚେତନାକୁ ଚମକାଇ ଦିଏ। ଜୀବନକୁ ନୂଆ ନୂଆ ରୂପରେ ଆଣି ଠିଆ କରାଏ ଆମ ଆଗରେ। ଏହାର ସ୍ୱଭାବ ଚରିତ୍ର ବର୍ଣ୍ଣନାକୁ ଆମ ଭାଷା ଅସମର୍ଥ, ଯଦିଓ ଏହାର ଉପସ୍ଥିତି ବାରିହୁଏ। ତେବେ ବାରିଲାବେଳକୁ ତା'ଦ୍ୱାରା ଆପ୍ଲୁତ ହୋଇଯିବାକୁ ପଡ଼େ। କବିତା ଏଇ ଶକ୍ତିର ନାଆଁ।

ପ୍ରଶ୍ନ: ଆଧୁନିକ କବିତାର ସ୍ୱାତନ୍ତ୍ର୍ୟ କ'ଣ ?

ଉତ୍ତର. କବିତା ତ କବିତା ! କିନ୍ତୁ, ଆଧୁନିକତାର କେତେଗୁଡ଼ିଏ ବିଭବ ଅଛି, ଯେମିତି ସହରୀ ସଭ୍ୟ ମଣିଷର ଚେତନା, ପରମ୍ପରା ବିରୋଧରେ ବିଦ୍ରୋହ, ଆବେଗର ନିୟନ୍ତ୍ରିତ ପ୍ରକାଶ, ଶୈଳୀ ସଚେତନତା, ଜୀବନ ପ୍ରତି ଦୃଷ୍ଟିର ତୀକ୍ଷ୍ଣତା, ନୂଆ କିଛି ଗଢ଼ିବାର ଆଗ୍ରହ ଇତ୍ୟାଦି। ମୋ ଦୃଷ୍ଟିରେ ଆଧୁନିକ କବି ତା' କବିତାର

ଅବବୋଧନରେ, ରସସ୍ୱାଦନରେ ପାଠକ ଏକ ସକ୍ରିୟ ଭୂମିକା ନେଉ ବୋଲି ଚାହେଁ। ପାଠକକୁ ଏକ ରକମ ବାଧ୍ୟ କରେ। ସେଥିପାଇଁ କବିତା ବୁଝିବା, ନବୁଝିବା ଗୋଟାଏ ସମସ୍ୟା ହୋଇ ଦେଖାଦିଏ। ଯେଉଁ କବିତା ପାଖକୁ ପାଠକକୁ ବାରମ୍ବାର ଆସିବାକୁ ପଡ଼େ ତା' ହିଁ ଭଲ କବିତାବୋଲି ମୁଁ ମନେ କରେ। ଏଠି 'ଆଧୁନିକ' ଶବ୍ଦଟି ପୂରା ଅକାମି ହୋଇଯାଇପାରେ।

ପ୍ରଶ୍ନ: ଆପଣଙ୍କର 'ଆତ୍ମନେପଦୀ' ଓ 'ଉଜ୍ଜୟିନୀ' ମଧ୍ୟରେ ତଫାତ୍ କ'ଣ ?

ଉତ୍ତର. ମୋର ପ୍ରଥମ କବିତା ସଂକଳନ 'ଆତ୍ମନେପଦୀ'ରେ ଏକ ପ୍ରକାର ଉଚ୍ଛ୍ୱାସଭାବ ଥିଲା। ମୁଁ ମୋ ରାସ୍ତା ଖୋଜୁଥିଲି। ସଂକଳନର କେତେକ କବିତାରେ ନିଜସ୍ୱ ସ୍ୱରକୁ ଖୋଜିବାର, ଭାଷାକୁ ସଂଯତ ଓ ମାର୍ଜିତ କରିବାର ଚେଷ୍ଟା ବେଶ୍ ସ୍ପଷ୍ଟ। ଆଉ ମୋର ଏ ଯାଏ ଶେଷ ସଂକଳନ 'ଉଜ୍ଜୟିନୀ'ରେ ସେ ଆକୁଳ ଭାବ ନାହିଁ। ସତେ ଯେମିତି ମୁଁ ଯାହା କହିବାକୁ ଯାଉଛି, ତା' ଉପରେ ମୋ କାବ୍ୟ ଚେତନା ସମୁଚିତ ନିୟନ୍ତ୍ରଣ ଜାରି କରିଛି।

ପ୍ରଶ୍ନ: ଓଡ଼ିଆ କବିତାର ପାଠକ ଅଭାବ କି ?

ଉତ୍ତର. କେହି କେହି ପାଠକର ଅଭାବ କଥା ଉଠାଇଥାନ୍ତି। ତେବେ ଯେଉଁମାନଙ୍କର କବିତାରେ ରୁଚି ଅଛି ସେମିତି ଏକ ନିର୍ଦ୍ଦିଷ୍ଟ ପାଠକଗୋଷ୍ଠୀ ନିଶ୍ଚୟ ଅଛନ୍ତି। ମୁଁ ରୁଚି କଥା କହୁଛି। ଏ ରୁଚି ସହଜରେ ନଷ୍ଟ ହୋଇଯାଏନି।

ପ୍ରଶ୍ନ: ଆପଣଙ୍କ ସାହିତ୍ୟ ଜୀବନର ସ୍ମରଣୀୟ ଘଟଣା କ'ଣ ?

ଉତ୍ତର. ସ୍ମରଣୀୟ ଘଟଣା ? ଆଚ୍ଛା, ଅନେକ ତ ଘଟିଛି। ବହୁତ ଦିନ ତଳେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଯାଇଥିଲି। ସେଠି ହଠାତ୍ ନିଷ୍ପତ୍ତି ହେଲା ଯେ ଓଡ଼ିଆ ଓ ଇଂଲିଶ୍ ଉଭୟ ବିଭାଗରେ ଗୋଟିଏ ମିଳିତ ପାଠଚକ୍ର ହେବ। ସେଥିରେ ଅନ୍ୟ କାର୍ଯ୍ୟକ୍ରମ ଭିତରେ ମୋ କବିତା ଉପରେ ଗୋଟିଏ ପ୍ରବନ୍ଧ ପଢ଼ାଯିବ। ଯେଉଁ ଯୁବକ ପ୍ରବନ୍ଧ ପଢ଼ିଲେ ସେ ମୋର ଗୁଡ଼ିଏ କବିତା କଣ୍ଠସ୍ଥ କରିଥିଲେ। ସେଗୁଡ଼ିକ ସେ ଅନର୍ଗଳ ଆବୃତ୍ତି କରି ମୋତେ ଆଶ୍ଚର୍ଯ୍ୟ ଚକିତ କରିଦେଲେ। ମୋ ସାଙ୍ଗରେ ଓଡ଼ିଶା ବାହାରର କେତେଜଣ ଅଧ୍ୟାପକ ବି ଥିଲେ। କବିତା ପ୍ରତି ଏତେ ନିବିଡ଼ ଓ ଘନିଷ୍ଠ ଆକର୍ଷଣ, ଯାହା ସେ ଯୁବକ ପ୍ରଦର୍ଶନ କଲେ, ତା' ମୁଁ କ୍ୱଚିତ୍ ଦେଖିଛି।





# କବିତା ମୋ ସଂସାର

## ବ୍ରଜନାଥ ରଥ:

**କା**ବ୍ୟ ପୁରୁଷ ବ୍ରଜନାଥ ରଥ। କେବଳ କାବ୍ୟ ଓ କବିତାରେ ନିଜକୁ ନିମଜ୍ଜିତ କରି ଲେଖନୀ ଚାଳନା କରି ଆସୁଥିବା ଏହି ସାରସ୍ୱତ ସାଧକ କବିତାକୁ ଭାବନ୍ତି ତାଙ୍କର ସଂସାର। କହନ୍ତି ସାହିତ୍ୟର କବିତା ସଂସାର ଛାଡି ଅନ୍ୟ ସଂସାରରେ ପଶି ନିଜ ସଂସାରକୁ ଉଜାଡି ଦେବି କାହିଁକି ? ୧୯୩୬ ମସିହାରେ ଜନ୍ମ ଗ୍ରହଣ କରିଥିବା ବ୍ରଜନାଥ ଏବେ ନିଜ ଜନ୍ମସ୍ଥାନ ବାଲେଶ୍ୱରରେ ସାଧନା ମଗ୍ନ। 'ମନର ମାନଚିତ୍ର' କବିତା ସଂକଳନ ପାଇଁ ତାଙ୍କୁ ୧୯୮୪ରେ ମିଳିଛି ସାହିତ୍ୟ ଏକାଡେମୀ ପୁରସ୍କାର। ତେବେ ସେ ଅନୁଭବ କରନ୍ତି 'ହେ ମହା ଜୀବନ' ତାଙ୍କର ସାର୍ଥକ ସୃଷ୍ଟି।

ପ୍ରଶ୍ନ. ଆପଣ ଗତ ଷାଠିଏ ବର୍ଷ ଧରି କବିତା ଲେଖୁଛନ୍ତି, କାହା ପାଇଁ ଏବଂ କ'ଣ ପାଇଁ କବିତା ଲେଖନ୍ତି ?

ଉ. ୧୯୪୭ ମସିହାରୁ ଆଜି ପର୍ଯ୍ୟନ୍ତ ମୁଖ୍ୟତଃ ମୁଁ କବିତା ହିଁ ଲେଖିଆସୁଛି। ଲେଖେ ନିଜେ ଆନନ୍ଦ ପାଇବା ସଙ୍ଗେ ସଙ୍ଗେ ପାଠକଙ୍କୁ ମୋ ସହ ଏକାତ୍ମ କରିବା ପାଇଁ। ନିଜକୁ ପ୍ରକାଶ କରି ଆନନ୍ଦ ପାଏଁ, 'ଆନନ୍ଦାତ୍ ହିଁ, ଇମାନି ଭୂତାନି ଜୟତେ।'

ପ୍ରଶ୍ନ. ଆଞ୍ଚଳିକ ଭାଷାମଧ୍ୟରେ ଓଡ଼ିଆ କବିତାର ସ୍ଥାନ କେଉଁଠି ?

ଉତ୍ତର. ଜାତୀୟ ଓ ଆନ୍ତର୍ଜାତିୟ କବିତାର ସ୍ଥାନ ତୁଳନାରେ ଆମ ସାମ୍ପ୍ରତିକ ଓଡ଼ିଆ କବିତାର ସ୍ଥାନ କୌଣସି ଗୁଣରେ କମ୍ ନୁହେଁ। (ଅବଶ୍ୟ ସବୁ କବିଙ୍କ କବିତା ନୁହେଁ)

ପ୍ରଶ୍ନ. ସାହିତ୍ୟ ସମାଜର ପ୍ରତିବିମ୍ବ ତେବେ ଜଣେ ସାହିତ୍ୟିକର ଭୂମିକା କ'ଣ ହେବା ଉଚିତ୍ ?

ଉତ୍ତର. ଜଣେ ସାହିତ୍ୟିକର ଏହି ସ୍ଥାନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥାଏ। ସାହିତ୍ୟର ଛବି ସର୍ବଦା ଗଠଣମୂଳକ ରହିବା ଉଚିତ୍। କାରଣ ସାହିତ୍ୟ ସମାଜ ଏବଂ ବ୍ୟକ୍ତି ଉପରେ ସକାରାତ୍ମକ ଭାବ ପକାଇଲେ ହିଁ ସମାଜ ସହିତ ସାହିତ୍ୟ ଚାଲିପାରିବ। ଯେଉଁମାନେ ମୋ ସୃଷ୍ଟିକୁ ଭଲପାଆନ୍ତି ବା ନ ପାଆନ୍ତି, ସେମାନେ କହିବେ ମୋର ସାହିତ୍ୟର ପ୍ରଭାବ (କୁପ୍ରଭାବ ଓ ସୁପ୍ରଭାବ ଉଭୟ) କେତେବେଳେ ପ୍ରତ୍ୟକ୍ଷ ଏବଂ କେତେବେଳେ ପରୋକ୍ଷ ଭାବେ ସମାଜ ଉପରେ କିଭଳି ପଡୁଛି।

ପ୍ରଶ୍ନ. 'ମନର ମାନଚିତ୍ର' ପୁସ୍ତକ ପାଇଁ ଆପଣ ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିବାବେଳେ ଆପଣଙ୍କ ରଚିତ 'ଲଘୁ ଶତକ' ଖୁବ୍ ଲୋକପ୍ରିୟତା ପାଇଥିଲା ତେବେ କେଉଁଟିକୁ ଆପଣ ନିଜର ଶ୍ରେଷ୍ଠକୃତିବୋଲି ଭାବନ୍ତି ?

ଉତ୍ତର. ମୋର 'ମନର ମାନଚିତ୍ର' କବିତା ସଂକଳନ ୧୯୮୪ରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଥିଲା। ମୋର ପ୍ରଥମ କାବ୍ୟଗ୍ରନ୍ଥ 'ମରୁ ଗୋଲାପ' ଆଜକୁ ୪୮ ବର୍ଷ ତଳେ ପ୍ରକାଶିତ ହୋଇ ବେଶ୍ ପାଠକୀୟ ଆଦୃତୀ ପାଇପାରିଥିଲା। ସାମାଜିକ ବ୍ୟଙ୍ଗକୁ ଆଧାରକରି ରଚିତ ମୋର 'ଲଘୁ ଶତକ' ଖୁବ୍ ଲୋକପ୍ରିୟତା ହାସଲ କରିଥିଲା ସତ, ତେବେ 'ହେ ମହା ଜୀବନ' ମୋର ଏକ ସାର୍ଥକ ସୃଷ୍ଟି ବୋଲି ମୁଁ ଅନୁଭବ କରେ।

ପ୍ରଶ୍ନ. ଭଲ କବିତା ସ୍ୱତନ୍ତ୍ର ଭାବେ ଲେଖାଯାଏ ନା ଲେଖି ହୋଇଯାଏ ?

ଉତ୍ତର. ପ୍ରତ୍ୟେକ କବି ନିଜ ଜୀବନରେ ନାନା ଭାବ ଅନୁଭବକୁ ନେଇ ଏବଂ ହୃଦୟର ଅନୁଭବକୁ ନେଇ ଅନେକ କବିତା ଲେଖିଥାନ୍ତି, କିନ୍ତୁ ସବୁ କବିତା ଭଲ ବା ଶ୍ରେଷ୍ଠ କବିତା ହୋଇ ନ ପାରେ। ଭଲ କବିତାଟିଏ ଲେଖିବା ପାଇଁ ଜଣେ କବି ଇଚ୍ଛାକରି ଲେଖି ବସିଲେ ବି ଲେଖିପାରିବ ନାହିଁ। ତାହା କେତେବେଳେ ଲେଖି ହୋଇଯିବ କବି ନିଜେବି ଜାଣିପାରିବ ନାହିଁ। ଜାଣିଲା ବେଳକୁ ଲେଖାହୋଇ ସାରିଥିବ। ଏହା ସୃଜନକର୍ମର ଏକ ଗୋପନ ରହସ୍ୟ ହୋଇ ରହିଛି ଚିରକାଳ।

ପ୍ରଶ୍ନ. ଅନ୍ୟ ସାହିତ୍ୟିକମାନେ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରୁଥିବାବେଳେ ଆପଣ କେବଳ କବିତାରେ ମନଦେଲେ କାହିଁକି ?

ଉତ୍ତର. କବିତା ମୋର ସଂସାର। ମୁଁ ଜାଣିଛି ଅନ୍ୟ ସଂସାରରେ ପଶିଲେ ମୋ ସଂସାର ଉଜୁଡ଼ିଯିବ। ସବୁ ସଂସାରକୁ ସମ୍ଭାଳିବା ପାଇଁ ମୋର ଶକ୍ତି ନାହିଁ, ସମ୍ବଳ ନାହିଁ, ସମୟ ବି ନାହିଁ।

ପ୍ରଶ୍ନ. ମାତୃଭାଷାର ସୁରକ୍ଷା, ପ୍ରଚାର ଓ ପ୍ରସାର ପାଇଁ କ'ଣ କରାଯିବା ଉଚିତ୍ ?

ଉତ୍ତର. ମାତୃଭାଷା, ମା'ର କ୍ଷୀରଭଳି ଏହା ଆମପାଇଁ ଏକାନ୍ତ ଉପଯୋଗୀ ଏବଂ ଆମର ପ୍ରଥମେ ଆବଶ୍ୟକ। ତା'ପରେ ଅମୁଲ ଠାରୁ ଆରମ୍ଭ କରି ଅନ୍ୟ ଯାହା କିଛି ପିଆଯାଇପାରେ। କିନ୍ତୁ ଆଜି ଅଧିକାଂଶ ଶିକ୍ଷିତ ଓ ସଂଭ୍ରାନ୍ତ ବର୍ଗ ମାତୃଭାଷାକୁ ଯେଉଁଭଳି ହେୟ ଦୃଷ୍ଟିରେ ଦେଖୁଛନ୍ତି, ତାହା ମାତୃଘାତୀ ସନ୍ତାନର କାର୍ଯ୍ୟ ବ୍ୟତିତ ଅନ୍ୟକିଛି ନୁହେଁ।

ପ୍ରଶ୍ନ. ଜଣେ ସ୍ରଷ୍ଟାର ସଫଳତା କେଉଁଠି ଥାଏ ?

ଉତ୍ତର. ଜଣେ ସତ୍‌ସ୍ରଷ୍ଟାର ସବୁଠୁ ବଡ଼ ପୁଞ୍ଜି ହେଉଛି ତା'ର ସମ୍ବେଦନଶୀଳ ଚିତ୍ତବୃତ୍ତି, ଜିଜ୍ଞାସୁ ମନୋଭାବ, ସ୍ୱାଭିମାନ ଓ ଆତ୍ମବିଶ୍ୱାସ। ଏ ଚାରୋଟିର ଅଭାବ ହେଲେ ସ୍ରଷ୍ଟା ସଫଳ ହୋଇପାରିବ ନାହିଁ।

ପ୍ରଶ୍ନ. ଅପଣଙ୍କ ପ୍ରତିଷ୍ଠିତ 'ବିଶ୍ୱତାରା ଓଡ଼ିଆ ଗବେଷଣା ଗ୍ରନ୍ଥାଗାର' ସମ୍ପର୍କରେ କିଛି କୁହନ୍ତୁ ?

ଉତ୍ତର. ପିଲାଟି ଦିନରୁ ପଢ଼ିବା ଓ ଲେଖିବା ସହିତ ବିଭିନ୍ନ ବହି ଓ ପତ୍ର-ପତ୍ରିକା ସଂଗ୍ରହ କରିବାରେ ଅଭିଭୂତି ରହିଆସିଛି। ଯାହାର ଫଳଶ୍ରୁତି ହେଉଛି ଏହି

ଗ୍ରନ୍ଥାଗାର। ପ୍ରାୟ ଷାଠିଏ ବର୍ଷରୁ ଅଧିକ କାଳ ଧରି ମୁଁ ହଜାର ହଜାର ବହି ଓ ପତ୍ରପତ୍ରିକା କିଣି ଓ ସଂଗ୍ରହ କରି ରଖିଥିଲି। ଜୀବନରେ ଯାହା କିଛି ସଞ୍ଚୟ କରିଥିଲି ସେହି ଅର୍ଥରେ ମୁଁ ଗୋଟିଏ ତ୍ରିତଳ ଗୃହ ନିର୍ମାଣ କରି ତହିଁରେ ମୋର ପରଲୋକଗତ ପିତା ବିଶ୍ୱନାଥ ରଥ ଓ ମାତା ତାରାମଣିଙ୍କ ସ୍ମୃତିରେ ଏହାକୁ ଗତ ଜାନୁଆରୀ (୨୦୦୮)ରେ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିଛି। ୨୦୦୭ରେ ଗୃହ ପ୍ରତିଷ୍ଠା ଉତ୍ସବରେ ମୋର ପ୍ରିୟବନ୍ଧୁ ମନୋଜ ଦାସ ଯୋଗ ଦେଇଥିଲେ। ଏହି ଗ୍ରନ୍ଥାଗାରରେ ବହୁ ଓଡ଼ିଆ ପତ୍ର ପତ୍ରିକା ଯଥା–ଡଗର, ଆସନ୍ତାକାଲି, ନବରବି, କୁଙ୍କୁମ, ଅଗ୍ରଣୀ, ସମାବେଶ, କବିତା, କାବ୍ୟ, ଅନାମ, ବେଳା, ଆଭା, ନିଆଁଖୁଣ୍ଟା, ଟୁଆଁଟୁଇଁ, ମାନସ, ମୌସୁମୀ, ପ୍ରଭାତୀ, ସ୍ୱରୂପ, ଆରତି, ଦିଗନ୍ତ, କଳନା, ତରଙ୍ଗ, ଶଙ୍ଖ, ଚତୁରଙ୍ଗ, ଗଳ୍ପଘର, ଶିଶୁଲେଖା, ମନପବନ, ଅଗ୍ନିବାଣୀ, ଝଙ୍କାର, ଅଭିଯାତ୍ରୀ ଇତ୍ୟାଦି ସହ ବହୁ ସ୍ମରଣୀକା, ସ୍ମାରକଗ୍ରନ୍ଥ ଏବଂ ଅଧୁନା ପ୍ରକାଶ ପାଉଥିବା ପତ୍ର-ପତ୍ରିକା ମଧ୍ୟ ସଂରକ୍ଷିତ ହୋଇଛି। ଇଂଲିଶ, ବଙ୍ଗଳା ଓ ହିନ୍ଦୀ ଭାଷାର ପୁସ୍ତକମାନ ମଧ୍ୟ ରହିଛି। ମୁଖ୍ୟତଃ ଓଡ଼ିଆ ଭାଷା ସାହିତ୍ୟର ଗବେଷକମାନଙ୍କ ପାଇଁ ଏହି ଗ୍ରନ୍ଥାଗାର ଉଦ୍ଦିଷ୍ଟ। ମୋ ଜୀବନରେ ଏକ ସ୍ୱପ୍ନକୁ ସଫଳ କରିପାରିଥିବାରୁ ଏବଂ ଏହାଦ୍ୱାରା ମୋ ପ୍ରିୟ ମାତୃଭାଷା-ସାହିତ୍ୟର କିଞ୍ଚିତ୍ ସେବା କରିପାରିଥିବାରୁ ମୁଁ ଆନନ୍ଦିତ। ଏଥିପାଇଁ ନିଜକୁ ଧନ୍ୟ ମନେ କରୁଛି।





# ତିଆରି ହେଉଥିବା କବିତା ପ୍ରାଣହୀନ କଣ୍ଢେଇ

## ନୃସିଂହ ତ୍ରିପାଠି:

ଓଡ଼ିଆ କାବ୍ୟ ସାହିତ୍ୟରେ ଅନ୍ୟତମ ଧୂରୀଣ ସାଧକ କବି ନୃସିଂହ ତ୍ରିପାଠୀ। କବିତାକୁ ଭଲ ପାଉଥିବା, ନିଜର କରିଥିବା ଏହି ସାଧକ କିନ୍ତୁ ଗଳ୍ପ ଲେଖନ୍ତି, ଉପନ୍ୟାସ ଲେଖିବାର ଆଗ୍ରହ ଜାହିର କରନ୍ତି। ଏଯାବତ୍ ପ୍ରକାଶିତ ହୋଇଛି ତାଙ୍କର ସାତଟି କବିତା ସଂକଳନ ଓ ତିନିଟି କ୍ଷୁଦ୍ର ଗଳ୍ପ ସଂକଳନ। ସାହିତ୍ୟ ପାଇଁ ଅନେକ ସମ୍ମାନର ଅଧିକାରୀ ହୋଇଥିବା କବିଙ୍କର ଇଚ୍ଛା ସମାଲୋଚକମାନେ କବିତା କ୍ଷେତ୍ରରେ ଯେତେଟା କମ୍ ହସ୍ତକ୍ଷେପ କରିବେ ସେତେ ଭଲ। ତାଙ୍କ ସହ ହୋଇଥିବା ଆଳାପର କିଛି ଅଂଶ।

ପ୍ରଶ୍ନ: କିପରି ହେଲା ସାହିତ୍ୟ ଜୀବନର ଆରମ୍ଭ ?

ଉତ୍ତର. ମୋ ସାହିତ୍ୟର ଆରମ୍ଭ କବିତାରୁ। ନବମ ଶ୍ରେଣୀରେ ପାଠ ପଢ଼ିଲାବେଳରୁ କବିତା ଲେଖା ଆରମ୍ଭ।

ପ୍ରଶ୍ନ: ପ୍ରଥମେ କେଉଁ ପ୍ରକାର କବିତା ଲେଖୁଥିଲେ ?

ଉତ୍ତର. ଜାତୀୟ କବି ବୀରକିଶୋରଙ୍କ ଦ୍ୱାରା ଅନୁପ୍ରେରିତ ହୋଇ ତାଙ୍କ ପରି ଜାତୀୟତାବାଦୀ କବିତା ଲେଖିଲି।

ପ୍ରଶ୍ନ: ପରବର୍ତ୍ତୀ ସମୟରେ ଏହି ଧାରାରେ ପରିବର୍ତ୍ତନ ଆସିଲା କିପରି ?

ଉତ୍ତର. କଲେଜକୁ ଆସିବା ବେଳକୁ ମୁଁ ଅନୁଭବ କଲି ମୋ ରଙ୍ଗରେ କବିତା ଅଛି। କବିତା ନ ଲେଖିଲେ, ନ ପଢ଼ିଲେ ଆଉ ମୁଁ ରହିପାରେ ନାହିଁ। ମୋ ଭିତରେ କବିତାର ଭାବ ଏତେ ମାତ୍ରାରେ ସଞ୍ଚିତ ହେଲା ଯେ, ମୁଁ ଅନେକଙ୍କ କବିତା ପଢ଼ିଲି ଏବଂ ମୁଁ ବାଧ୍ୟ କବିତା ଲେଖାରେ ନିମଗ୍ନ ହେଲି।

ପ୍ରଶ୍ନ: କବିତା ଲେଖିଲାବେଳେ କିପରି ନିମଗ୍ନ ହୁଅନ୍ତି ?

ଉତ୍ତର. ଜଣେ ମଣିଷର ଆତ୍ମାରୁ ଅନ୍ୟ ମଣିଷମାନଙ୍କ ଆତ୍ମାକୁ ଛୁଇଁଲା ପରି କିଛି ନିଛକ ଜୀବନ କଥାରେ ଆତ୍ମସ୍ଥ ହୁଏ ଯାହା ବୁଦ୍ଧି ଦ୍ୱାରା ସମ୍ଭବ ନୁହେଁ।

ପ୍ରଶ୍ନ: ଆପଣ କାହିଁକି କବିତା ଲେଖନ୍ତି ?

ଉତ୍ତର. କବିତାରେ ଯେତେ ତଲ୍ଲୀନତା ଆସେ, କବି ମଣିଷଟି ସେତିକି ଖାଣ୍ଟି ହୋଇଯାଏ।

ପ୍ରଶ୍ନ: କବି ମଣିଷଟି ଖାଣ୍ଟି ହୋଇଯାଏ ମାନେ ?

ଉତ୍ତର. ମଣିଷ ଯେତେବେଳେ ତା'ର ବାହ୍ୟ ଆଡମ୍ବର ପ୍ରତି ବୀତସ୍ପୃହ ହୁଏ, ଅନ୍ୟକୁ ପଛରେ ପକାଇ ଆଗେଇ ଯିବାର ଲାଳସାରୁ ବିରତ ରହେ, ଗୋଟିଏ କଥାରେ ଅନ୍ୟମାନଙ୍କ ସହ ଦରଦୀ ହୋଇ ସରଳ ସହଜ ଭାବରେ ବଞ୍ଚିବାକୁ ଭଲପାଏ।

ପ୍ରଶ୍ନ: ଆପଣଙ୍କ 'ଶୂନ୍ୟ ରମଣ' ଚର୍ଯ୍ୟାପଦ ଦର୍ଶନ ଆଧାରିତ, ଏହି ରଚନାର ଉଦ୍ଦେଶ୍ୟ କ'ଣ ?

ଉତ୍ତର. ଶୂନ୍ୟରମଣ ଚର୍ଯ୍ୟାପଦ ଦର୍ଶନକୁ ନେଇ ଏବଂ ସେହି ଭାବାବେଗରେ ଉତୁରି ଆସିଥିବା କେତୋଟି କବିତା । ଚର୍ଯ୍ୟାପଦ ଦର୍ଶନର ମୂଳତତ୍ତ୍ୱ ହେଲା ଦେହ ଏକ ମନ୍ଦିର ଏବଂ ଏଠାରେ ସମସ୍ତ ସାଧନା ସଫଳ ଭାବରେ କରାଯାଇପାରେ, ଯାହାଦ୍ୱାରା ମଣିଷ ଏକ ଉତ୍ତରିତ, ଶାନ୍ତ ଏବଂ ନିର୍ଲିପ୍ତ ଅବସ୍ଥାରେ ନିଜକୁ

ପାଏ । ଏହି ସାଧନାରେ ନାରୀର ମଧ୍ୟ ଭୂମିକା ଥାଏ ଏବଂ ଅଧିକାଂଶ ସମୟରେ ସାଧକ ବାହାରର ନାରୀ ଅପେକ୍ଷା ନିଜ ଭିତରର ନାରୀକୁ ଆବିଷ୍କାର କରେ । ଜଗତର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଯୋଗଯୁକ୍ତ ହେବା, ଏକାକୀ ହେବା, ମିଶିଯିବା । ମିଶିଯିବା ଯୋଗରେ ଅହଂକାରୀ ଏକକରେ ସେହି ତୃପ୍ତି ନ ଥାଏ । ଯେହେତୁ ଚର୍ଯ୍ୟାପଦର ସାଧକ କବିମାନେ ସାଙ୍କେତିକ ଭାଷାରେ ଏହି ଭାବ ଏବଂ ଯୋଗଯୁକ୍ତ ହେବା ପଦ୍ଧତିକୁ ବର୍ଣ୍ଣନା କରିଛନ୍ତି, ଯାହା ସାଧାରଣ ପାଠକ ଲାଗି ବୋଧଗମ୍ୟ ହୁଏନାହିଁ । ମନେକରନ୍ତୁ କାହ୍ନୁପାଙ୍କ ଏକ ଉକ୍ତି: "କାହ୍ନୁ କପାଳୀ ଯୋଗୀ ପ୍ରବିଷ୍ଟ ଆଚାରେ / ଦେହ ନଅରୀ ବିହରଇ ଏକାକାରେ ।" ଏଥିରୁ ପାଠକ ବିଶେଷ କିଛି ଠଉରାଇ ପାରିବନି ।

ପ୍ରଶ୍ନ: ଅନେକେ କହନ୍ତି ଲେଖା ସହଜ, ଏହା କ'ଣ ସତ ?

ଉତ୍ତର. କବିତା ଲେଖାଯାଏନା, କବିତା ଜନ୍ମନିଏ । ଏବେ ବେଶି କବିତା ତିଆରି ହେଉଛି, ସେଗୁଡ଼ିକ ସବୁ ପ୍ରାଣ ନ ଥିବା କଣ୍ଢେଇ ।

ପ୍ରଶ୍ନ: କବିତା ଉପରେ ଆଲୋଚକଙ୍କ ହସ୍ତକ୍ଷେପ ହେବା ଉଚିତ କି ?

ଉତ୍ତର. ଆଲୋଚକମାନେ ସାହିତ୍ୟିକ, ବୁଦ୍ଧିଆ ଯାଦୁଗର । କବିତାରେ ଯାହା ନ ଥାଏ ତାକୁ ଅଛି ବୋଲି କହନ୍ତି ଓ କବିତାରେ ଯାହାଥାଏ ତାକୁ ଧରି ପାରନ୍ତି ନାହିଁ । ଏମାନେ ଯେତେ କମ୍ ହସ୍ତକ୍ଷେପ କରିବେ, ସେତେ ଭଲ ।

ପ୍ରଶ୍ନ: କବିତାର ପାଠକଙ୍କ ସମ୍ପର୍କରେ ଆପଣଙ୍କ ମତ କ'ଣ ?

ଉତ୍ତର. କବିତାକୁ ଖୁବ୍ କମ୍ ଲୋକ ଶ୍ରଦ୍ଧାର ସହିତ ପଢ଼ନ୍ତି-ସେମାନେ କବିମାନଙ୍କ ବାବଦରେ ଜାଣନ୍ତି ଖବରକାଗଜରୁ-ଅମୁକ ବରିଷ୍ଠ କବି ଅମୁକ ପୁରସ୍କାର ପାଇଲେ, ଅମୁକ କବିଙ୍କ ସଭାପତିତ୍ୱରେ ଅମୁକ ସଭା । ଥରେ ଟ୍ରେନରେ ଦୀର୍ଘ ଯାତ୍ରା କରୁଥାଏ ଜଣେ ଅଣଓଡ଼ିଆ ସାହିତ୍ୟପ୍ରେମୀ ମୋ ସହଯାତ୍ରୀ ଥିଲେ । କହିଲେ ମୁଁ ଓଡ଼ିଆ କବି କେତେଜଣଙ୍କୁ ଜାଣେ- ଜୟନ୍ତ ମହାପାତ୍ର, ରୋମାକାନ୍ତ ରଥ୍ ଏଣ୍ଡ ସୀତାକାଣ୍ଟ ମହାପାତ୍ର । ମୁଁ ପଚାରିଲି, ଆପଣ ସେମାନଙ୍କ କବିତା ବା ତା'ର ଅନୁବାଦ ପଢ଼ିଛନ୍ତି । ସେ କହିଲେ, ଖବରକାଗଜରୁ ବୁକ୍ ରିଭ୍ୟୁ ପଢ଼ିଛି ତ !

ପ୍ରଶ୍ନ: ଆପଣ କ'ଣ ଭଲ କବିତା ଲେଖିଛନ୍ତି ଭାବୁଛନ୍ତି ?

ଉତ୍ତର. ନାହିଁ, ଏଯାବତ୍ ଏମିତି କିଛି ଲେଖିନାହିଁ ଯାହାକୁ ପଢ଼ି କହିପାରିବି ବାଃରେ ନୃସିଂହ ତ୍ରିପାଠୀ ।

ପ୍ରଶ୍ନ: ତେବେ ଆପଣଙ୍କ ସାତଟା ସଂକଳନରେ କ'ଣ ଲେଖିଛନ୍ତି ?

ଉତ୍ତର. ଜୀବନ୍ତ କବିତାକୁ ଜନ୍ମ ଦେବାକୁ ପ୍ରାଣପଣେ ଚେଷ୍ଟା କରିଛି । ଅଶୀ ମସିହାରେ ଆମ ଭାଷାରେ କିଛି ଦଳିତ କବିତା ପ୍ରଥମେ ମୋ ଦ୍ୱାରା ଜନ୍ମ ନେଇଥିଲାବୋଲି ମୋର ଧାରଣା କିନ୍ତୁ ଧାରଣା ଭୁଲ ବି ହୋଇପାରେ । ଚର୍ଯାପଦ ଆଧାରିତ କେତେ ଆତ୍ମିକ କବିତା 'ଶୂନ୍ୟ ରମଣ' ସଂକଳନରେ ଆତ୍ମଯାତ ହେଉଛନ୍ତି । ଏଗୁଡ଼ିକ ନିଆରା ଭାବର କବିତା, କେହି ବୁଝିଲେ ହେଲା ।

ପ୍ରଶ୍ନ: ଗପକୁ ଆସିଲେ କାହିଁକି ?

ଉତ୍ତର. ନବଲିପିରେ ଗୋଟିଏ ସମୟରେ ମୁଁ ସମ୍ପାଦକୀୟ ଲେଖୁଥିଲି । ସେ ସମ୍ପାଦକୀୟଗୁଡ଼ିକ ପଢ଼ି କେତେକ ପାଠକ ବନ୍ଧୁ ମୁଁ ଗଦ୍ୟ ଲେଖିଲେ ଭଲ ହେବ ବୋଲି ମତ ଦେଲେ । କେତେବେଳେ କେଉଁ ଗପ ପଢ଼ି, ମୁଁ ନିଜେ ଗପ ଲେଖିବା ଅରମ୍ଭ କରିଥିଲି ତାହା ବି ମନେ ନାହିଁ । ୧୯୮୫ ମସିହାଠାରୁ ମୁଁ ଗପ ଲେଖୁଛି କିନ୍ତୁ ଖୁବ୍ କମ୍ ଗପ ଲେଖିଛି ।

ପ୍ରଶ୍ନ: କମ୍ କହୁଛନ୍ତି ଅଥଚ ତିନୋଟି ଗଳ୍ପ ପୁସ୍ତକ ବଜାରରେ ?

ଉତ୍ତର. ୨୫ ବର୍ଷ ମଧ୍ୟରେ ମାତ୍ର ତିନୋଟି ପୁସ୍ତକ ବେଶି ନୁହେଁ ।

ପ୍ରଶ୍ନ: କବିତା/ଗଳ୍ପ କେଉଁଥିରେ ଆତ୍ମସନ୍ତୁଷ୍ଟି ପାଆନ୍ତି ?

ଉତ୍ତର. କବିତାରେ । ବାସ୍ତବ ଭାବରେ ପ୍ରାଣରେ ମୁଁ ଜଣେ କବି । ଗପ ଲେଖିଲାବେଳେ କବିତା ମଧ୍ୟ ବିଭିନ୍ନ ରୂପରେ ଗଳ୍ପକୁ ଚାଲିଆସନ୍ତି । କବିତା ଢ଼ଙ୍ଗରେ ବର୍ଣ୍ଣନା, ରୂପକଳ୍ପ, ପ୍ରତୀକବାଦୀ ଆଦି ବିଶେଷ ଭାବରେ କାବ୍ୟିକ ବର୍ଣ୍ଣନା ଗପକୁ ଚାଲିଆସେ ।

ପ୍ରଶ୍ନ: ଆପଣଙ୍କ ଗଳ୍ପରେ ଅନେକ ଚରିତ୍ର ଜୀବନ୍ତ !

ଉତ୍ତର. ବଞ୍ଚିଥିବା ଚରିତ୍ରମାନଙ୍କୁ, ଏଠାରେ ଘଟିଥିବା ଘଟଣା ସମୂହକୁ ନେଇ ମୋ ଗଳ୍ପ ପ୍ରଭାବିତ । 'ବ୍ରହ୍ମୋତ୍ରୀ ମହାନ୍ତିଙ୍କ ପ୍ରେମିକା', 'ମଲାବେଳକୁ ରମାକାନ୍ତ ରଥ', 'ଦିନେ ରାତିରେ ଭିକାରୀ ବଳ' ଇତ୍ୟାଦି ଗଳ୍ପରେ ଜୀବନ୍ତ ଚରିତ୍ର । ଗାୟକ, କବିମାନଙ୍କୁ ନେଇ ଏକ ଭାବ ବାତାବରଣ ତିଆରି କରିଛି । ସେଗୁଡ଼ିକୁ ପଢ଼ି ମୋ ଗପର ଜୀବନ୍ତ ଚରିତ୍ରମାନେ ମଧ୍ୟ ଉତ୍ତମ ପ୍ରତିକ୍ରିୟା ଦେଇଛନ୍ତି ।

ପ୍ରଶ୍ନ: କବିତା/ଗଳ୍ପ କେଉଁଥିରେ ଆଗକୁ ନିଷ୍ଠା ରଖିବେ ?

ଉତ୍ତର. ଉଭୟରେ, ବର୍ତ୍ତମାନ ଉପନ୍ୟାସ ମଧ୍ୟ ଲେଖିବାକୁ ଇଚ୍ଛା ଅଛି, ସମୟ ହେଲେ ଲେଖିବି ।



# ଗାଁ ମୋର ଚେତନା

## ମନୋରମା ବିଶ୍ୱାଳ(ମହାପାତ୍ର)

**ସୁ**ବର୍ଣ୍ଣରେଖାରୁ ସାଳନ୍ଦୀ, ଗାଁ ପୋଖରୀର ପାଣିଶିଉଳିଠାରୁ ଗଙ୍ଗଶିଉଳି ଯାହାଙ୍କ କବିତାକୁ ଆଚ୍ଛନ୍ନ କରିଛି, ସେ ହେଉଛନ୍ତି କବୟିତ୍ରି ମନୋରମା ବିଶ୍ୱାଳ(ମହାପାତ୍ର)। ତାଙ୍କ କବିତାରେ ଗାଁ ମାଟିର ବାସ୍ନା ମହ ମହ। ଗାଁ, ନଦୀପଠା, ପୋଖରୀଘାଟ ଓ ଗାଁର ମଉଜ ପ୍ରତି ତାଙ୍କର ଅଫୁରନ୍ତ ଆସକ୍ତି। ପେସା (ଅଧ୍ୟାପନା)ର ଚାପରେ ଗାଁ ଛାଡି ସହରକୁ ଆସିଥିବା ଏହି କବୟିତ୍ରି କିନ୍ତୁ ଅଭୀପ୍ସା ରଖନ୍ତି 'ଆଉ ଥରେ ଜନ୍ମ ନେବି କବି ହୋଇ ଆସନ୍ତା ଜନ୍ମରେ, ଏଇ ଗାଁରେ।'

ପ୍ରଶ୍ନ: ଆପଣଙ୍କ ଆଦ୍ୟ ପ୍ରେରଣା କିଏ ?

ଉତ୍ତର. ନିଜ ଗାଁ 'ଜଗାଇ'ର ପ୍ରାକୃତିକ ପରିବେଶ, ଭଦ୍ରକର ସାଳନ୍ଦୀ ନଈ ମୋ କାବ୍ୟ ଚେତନାର ଆଦ୍ୟ ପ୍ରେରଣା। ତା'ଛଡା କବିତାକୁ ଭଲ ପାଉଥିବା ମୋ ବାପାଙ୍କର ଉତ୍ସାହ ମୋ କବି ଜୀବନର ଆଦ୍ୟ ପ୍ରେରଣା।

ପ୍ରଶ୍ନ: ବ୍ୟକ୍ତି ମନୋରମା ଯେତେବେଳେ କବି ମନୋରମାରେ ରୂପାନ୍ତରୀତ ହେଲେ ସେତେବେଳେ ଏହି ରୂପାନ୍ତରୀଣ ପ୍ରକ୍ରୀୟାଟି କିପରି ଭାବରେ ପ୍ରଭାବିତ କରିଥିଲା ।

ଉତ୍ତର. ବ୍ୟକ୍ତିସତ୍ତା ଏବଂ କବିସତ୍ତା ଦୁଇଟାଯାକ ଜଣେ କବି ଭିତରେ ବିଦ୍ୟମାନ ଥାଏ। ମୋର ବ୍ୟକ୍ତିସତ୍ତା ଯେତେବେଳେ କବିସତ୍ତାରେ ରୂପାନ୍ତରୀତ ହୋଇଯାଏ, ମୁଁ ସେତେବେଳେ ଆଉ ଜଣେ କିଏ ହୋଇଯାଏ । ଜାଗତିକ ଜୀବନର ସବୁ ଜଞ୍ଜାଳ ସେତେବେଳେ ତୁଚ୍ଛ ହୋଇଥାଏ। ସେହି ଅନ୍ୟମନସ୍କତା ବା ରୂପାନ୍ତରୀଣ ପ୍ରକ୍ରୀୟା ମୋତେ ସବୁବେଳେ ପ୍ରଭାବିତ କରିଥାଏ ।

ପ୍ରଶ୍ନ: ଆପଣଙ୍କ ଅନେକ କବିତାରେ ସାଳନ୍ଦୀର ବର୍ଣ୍ଣନା ରହିଛି, ଏହାର କାରଣ ?

ଉତ୍ତର. ମୋ ପିଲାଦିନର ନଈ ସୁବର୍ଣ୍ଣରେଖା। କୈଶୋର ଏବଂ ଯୌବନର ସଙ୍ଗିନୀ ଥିଲା ସାଳନ୍ଦୀ। ଭଦ୍ରକରେ ପଢୁଥିବାବେଳେ ସାଳନ୍ଦୀ ମୋ ଚେତନାକୁ ସମ୍ପୂର୍ଣ୍ଣ ଭାବରେ ଆବୋରି ବସିଥିଲା। ଏବେ ମଧ୍ୟ ସାଳନ୍ଦୀ ମୋ ଅବଚେତନ ମନରେ ଲୁଚି ରହିଥିବାର ମୁଁ ଅନୁଭବ କରେ।

ପ୍ରଶ୍ନ: ଆପଣଙ୍କ କବିତାରେ ମାନବୀୟ ଆବେଦନ ଭରପୂର ଥାଏ। ଆପଣ ବି ବାରମ୍ବାର କୁହନ୍ତି 'ଆଉ ଥରେ ଜନ୍ମ ନେବି କବି ହୋଇ ଆସନ୍ତା ଜନ୍ମରେ, ଏଇ ଗାଁରେ' କାହିଁକି ?

ଉତ୍ତର. 'ଆଉ ଥରେ ଜନ୍ମିବି ମୁଁ କବି ହୋଇ ଆସନ୍ତା ଜନ୍ମରେ' – ଏହା କେବଳ ମୋ ଆତ୍ମାର କଥା ନୁହେଁ। ସବୁ କବିଙ୍କର ଏଇ ଇଚ୍ଛାଥାଏ। କାରଣ ଶବ୍ଦର ପ୍ରତିମା ନିର୍ମାଣ କରିବା ପାଇଁ କେବଳ ଗୋଟିଏ ଜନ୍ମ କାହିଁକି, ସାତ ଜନ୍ମବି ପର୍ଯ୍ୟାପ୍ତ ନୁହେଁ।

ପ୍ରଶ୍ନ: ଆପଣଙ୍କର ମଲ୍ଲିକାଅପା, କାଦମ୍ବିନୀ, ଅପିନାନୀ, ହେମଅପା ଆଦି ନାରୀ ଚରିତ୍ରଗୁଡିକ ବ୍ୟବହାର, ବିଷାଦ ଓ ବଢୋରତାରେ କବି ସତ୍ତାର କେତେ ପାଖାପାଖି ?

ଉତ୍ତର. ମଲ୍ଲିକାଅପା, କାଦମ୍ବିନୀ, ଅପିନାନୀ, ହେମଅପା ଆଦି ନାରୀ ଚରିତ୍ର ମୋ କବିତାର ଜଣେ ଜଣେ ଔଜଲ୍ୟମୟୀ ନାରୀ। ସେମାନେ ମୋ କବି ସତ୍ତାକୁ ବହୁ ଭାବରେ ପ୍ରଭାବିତ କରିଛନ୍ତି। ମୋ ଚାରିପାଖରେ ଆତଯାତ ହେଉଥିବା ନାରୀ ଚରିତ୍ରସେମାନେ।

ପ୍ରଶ୍ନ: ଓଡ଼ିଆ ସାହିତ୍ୟକୁ କେଉଁ ବିଷୟଟି ଅଧିକ ପରିପୁଷ୍ଟ କରିପାରିଛି ବୋଲି ଆପଣ ଭାବୁଛନ୍ତି ?

ଉତ୍ତର. ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିବାରେ ଆମ ଲୋକସାହିତ୍ୟ ଅବଦାନକୁ ଅସ୍ୱୀକାର କରିହେବ ନାହିଁ।

ପ୍ରଶ୍ନ: ଆଧୁନିକ କବିତା ପ୍ରତି ପାଠକର ଆକର୍ଷଣ କମ୍, ଏହା ସତ୍ୟ କି ?

ଉତ୍ତର. ଆଧୁନିକ କବିତା ଜୀବନ ସହ ଅଙ୍ଗୀକାରବଦ୍ଧତାରେ ବିଶ୍ୱାସ କରେ। ଆଜିର କବି ପାଖରେ ତାହାହିଁ ଗୁରୁତ୍ୱପୂର୍ଣ୍ଣ। ଏବର କବିତା ସରଳ, ସ୍ୱଳ୍ପଭାଷୀ ଏବଂ ସୂଚନାତ୍ମକ। ତେଣୁ ଆଧୁନିକ କବିତା ପ୍ରତି ପାଠକର ଆକର୍ଷଣ କମି ଯାଉନାହିଁ ବରଂ ପାଠକ ଧୀରେ ଧୀରେ ଏ ନେଇ ସଚେତନ ହେଉଛି।

ପ୍ରଶ୍ନ: ଆପଣଙ୍କ ଲେଖାରେ ବଙ୍ଗଳା ଓ ହିନ୍ଦୀ ସାହିତ୍ୟର ପ୍ରଭାବ ଦେଖାଯାଏ। ଏ ସମ୍ପର୍କରେ ଆପଣଙ୍କ ମତ କ'ଣ ?

ଉତ୍ତର. ମୋର ଅନେକ କବିତା ବହି ବଙ୍ଗଳା, ହିନ୍ଦୀ, ଇଂରାଜୀ, କନ୍ନଡ, ଉର୍ଦ୍ଦୁ ଏବଂ ତାମିଲରେ ଅନୂଦିତ ହୋଇଛି। ମୁଁ ବଙ୍ଗଳା ସାହିତ୍ୟରେ ଶ୍ରେଷ୍ଠ ପ୍ରତିଭା ରବିନ୍ଦ୍ରନାଥଙ୍କୁ ପଢ଼ିବା ସଙ୍ଗେ ସଙ୍ଗେ ବିଶ୍ୱର ଅନ୍ୟାନ୍ୟ ଲେଖକଙ୍କୁ ମଧ୍ୟ ପଢ଼ିଛି। ତେବେ ମୋ କବିତାର ଅନ୍ତଃସ୍ୱର ଭିନ୍ନ। ମାଟି, ମଣିଷ ଏବଂ ସମ୍ପର୍କ ଏହି ତିନୋଟି କଥା ମୋ କବିତାରୁ ବାରି ହୋଇପଡେ। ସେଥିରେ ଆଉ କାହାର ପ୍ରଭାବ କେବେ ପଡିବାର ମୁଁ ବିଶ୍ୱାସ କରେ ନାହିଁ।

ପ୍ରଶ୍ନ: ଆପଣ ଅନେକ ଦେଶ ବିଦେଶ ଭ୍ରମଣ କରି ସାହିତ୍ୟ ସଭାରେ ଯୋଗଦେଇଛନ୍ତି। ସେହିସବୁ ଦେଶର ସାହିତ୍ୟ ସମ୍ପର୍କରେ ଆପଣଙ୍କ ଧାରଣା କ'ଣ ?

ଉତ୍ତର. ମୁଁ ବିଦେଶର ବହୁ ବିଶ୍ୱବିଦ୍ୟାଳୟ ଦ୍ୱାରା ନିମନ୍ତ୍ରିତ ହୋଇ ଗ୍ରୀସ୍, ଲଣ୍ଡନ, ସ୍ୱିଡେନ୍ ଏବଂ ନ୍ୟୁୟର୍କ ଯାଇଛି। ସେଠାକାର ଜୀବନ ଏବଂ ସାହିତ୍ୟ ସମ୍ପର୍କରେ ଜାଣିବାର ସୁଯୋଗ ପାଇଛି। ତେବେ ମୋର ଧାରଣା ଯେ, ଓଡ଼ିଆ ସାହିତ୍ୟ ସେମାନଙ୍କ ସାହିତ୍ୟଠାରୁ ଯଥେଷ୍ଟ ଉର୍ଦ୍ଧ୍ୱରେ।

ପ୍ରଶ୍ନ: ଆପଣଙ୍କ ଲେଖାରେ ନିଜ ଗାଁ ପ୍ରତି ଅଧିକ ମୋହ ବାରି ହୋଇ ପଡେ। ଏ ସମ୍ପର୍କରେ କ'ଣ କହିବେ ?

ଉତ୍ତର. ମୋର ପ୍ରାୟ ପ୍ରତ୍ୟେକ କବିତାରେ ଗାଁର ଅନୁଭବ ଅଧିକ ସ୍ପଷ୍ଟ। ମୋର ପିଲାଦିନ କଟିଥିଲା ପାଣିଶିଉଳି ଫୁଟୁଥିବା ଗାଁରେ। ସେଇ ଗାଁ ମୋ ପରମ୍ପରା, ସ୍ମୃତି ଏବଂ ସଂସ୍କୃତି ସହ ଯୁକ୍ତ ହୋଇ ଏବେ ମଧ୍ୟ ରହିଛି। ତାହାକୁ ଚେତନାର ପ୍ରତୀକ ଭାବରେ କୁହାଯାଇପାରେ।

ପ୍ରଶ୍ନ: ଗୀତି କବିତା ଓ ଶିଶୁ ସାହିତ୍ୟ ସଂରଚନା ସହିତ ଆପଣ ଅନେକ ଗବେଷଣା କାର୍ଯ୍ୟ ସଂପାଦନ କରିଛନ୍ତି । ଏସବୁ ଆପଣଙ୍କ କବିତାକୁ କେତେ ସମୃଦ୍ଧ କରିଛି ?

ଉତ୍ତର. ଗୀତି କବିତା ଏବଂ ଶିଶୁ ସାହିତ୍ୟ ଓଡିଆରେ କେବଳ ପ୍ରକାଶିତ ହୋଇନାହିଁ। ବହୁ ଭାରତୀୟ ଭାଷାରେ ମୋ ଶିଶୁ ସାହିତ୍ୟ ପ୍ରକାଶିତ ହୋଇ ସଫଳତା ଲାଭ କରିଛି। ଗୀତିକବିତା ସବୁ ବହୁ ସଙ୍ଗୀତ ଶିଳ୍ପୀଙ୍କ ଦ୍ୱାରା ଗାନ କରାଯାଉଛି । ଓଡିଶାରେ ଗୀତି କବିତାର ସଫଳ ରୂପାୟନ ନିମନ୍ତେ ମୁଁ ବହୁ ଦେଶ ବିଦେଶକୁ ନିମନ୍ତ୍ରିତ ହୋଇଛି। ଭିନ୍ନ ଭିନ୍ନ ଲୋକ ଚରିତ୍ରକୁ ଅନୁଧ୍ୟାନ କରିଛି, ତା'ଦ୍ୱାରା ମୋ କବିତା ଆଂଶିକ ଭାବରେ ସମୃଦ୍ଧ ହୋଇଛି।





# ଗ୍ରାମ୍ୟ ସରଳତା ମୋତେ ମୋହାବିଷ୍ଟ କରିଛି

## ପ୍ରମୋଦ କୁମାର ମହାନ୍ତିଃ

ପ୍ରମୋଦ କୁମାର ମହାନ୍ତି। ଯାହାଙ୍କ କବିତାରେ ଥାଏ ଗାଁ ମାଟିର ମହମହ ବାସ୍ନା। ଜୀବନର ନିର୍ଭେଜାଲ ବାସ୍ତବତାକୁ ଯିଏ ସାମ୍ନା କରନ୍ତି କବିତାରେ। ଉଚ୍ଛାଙ୍ଗ ଜୀବନପ୍ରୀତି ଓ ନିରବଚ୍ଛିନ୍ନ ଈଶ୍ୱରମୟ ଭାବ ଉତ୍ତରଣ ତାଙ୍କ କବିତାର ନିର୍ଯାସ। ପୁରସ୍କାର ଓ ସମ୍ମାନ ପ୍ରତି ଉଦାସୀନ ରହିଆସିଥିବା ଏହି କବି ତାଙ୍କ କବିତା ପୁସ୍ତକ 'ଅସରନ୍ତି ଅଣସର' ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇବା ଲାଗି ମନୋନୀତ ହୋଇଛନ୍ତି। ବେଶ୍ ସରଳ ଆଉ ଚୁପଚାପ ସ୍ୱଭାବର ଏହି ସ୍ୱାଭିମାନୀ କବି ଜଣଙ୍କ ପୁରସ୍କାର ନେଇ ଆନନ୍ଦିତ। ୬୦ ଦଶକରୁ ସାହିତ୍ୟ ସାଧନା ଜାରି ରଖି ସେ ସୃଷ୍ଟି କରିଛନ୍ତି ୫ଟି କବିତା ପୁସ୍ତକ। କ୍ରମଶଃରୁ ଆରମ୍ଭ କରି ଦେବୀପାଦର ଆଶ୍ରା ନେଇ ଅକାତକାତ ସମୟ ମଧ୍ୟରେ ଅଲଗାଜୁହା ହେବା ପର୍ଯ୍ୟନ୍ତ ତାଙ୍କର ଘଟିଛି ଅସରନ୍ତି ଅଣସର। ଶବ୍ଦମାନଙ୍କ ଭଲପାଇବାକୁ ପାଥେୟ କରି ବଞ୍ଚୁଥିବା ଏହି କବିଙ୍କ ସହ ଏକ ସ୍ୱତନ୍ତ୍ର ସାକ୍ଷାତ୍କାର।

ପ୍ରଶ୍ନ: କେବେଠାରୁ ଆରମ୍ଭ ହେଲା ଶବ୍ଦ ଗୁନ୍ଥି କବିତା ଲେଖିବା ?

ଉତ୍ତର. ହାଇସ୍କୁଲରେ ପଢ଼ିବା ବେଳୁ । ତେବେ କବିତା ପାଇଁ ଭଲ ପ୍ଲାଟଫର୍ମ ମିଳିଲା ରେଭେନ୍ସା କଲେଜରେ ପଢ଼ିବା ସମୟରେ । ସେତେବେଳେ ମୋର କବିତା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଲା । ଏଥିରୁ ମିଳିଥିବା ଉତ୍ସାହ ତଥା ଆତ୍ମସନ୍ତୋଷକୁ ପୁଞ୍ଜିକରି ଲେଖିଚାଲିଛି ।

ପ୍ରଶ୍ନ: କାହିଁକି କବିତା ଲେଖିଲେ ?

ଉତ୍ତର. ସତକଥା କହିଲେ ତା' ଉତ୍ତର ମୋ ପାଖରେ ନାହିଁ । ମନରେ କିଛି ଭାବ ଆସିଲେ ଟିପି ପକାଏ । ଆଉ ସେଥିରୁ କବିତା ଜନ୍ମନିଏ । କାହାକୁ ଭଲ ପାଇବାର ଭାବ ହିଁ କବିତାକୁ ଜନ୍ମ ଦିଏ ।

ପ୍ରଶ୍ନ: କବିତା ପାଇଁ ପ୍ରେରଣା ପାଇଲେ କେଉଁଠୁ ?

ଉତ୍ତର. ସରସ୍ୱତୀଙ୍କ କରୁଣାରୁ କବିତା ଲେଖୁଛି । ମୋ କବିତାର ପ୍ରତିଟି ଶବ୍ଦ ପଛରେ ଦେବୀକୃପା ରହିଛି । ତେଣୁ ମୋର ସବୁ ସଫଳତାର ଶ୍ରେୟ ମା'ଙ୍କର । ସେ ହିଁ ହେଉଛନ୍ତି ମୋ ପ୍ରେରଣା । କାହାକୁ ଜଣକୁ ଭଲପାଇବାର ସିଏ ଭଲ ଲାଗିଥିବାର ସ୍ୱପ୍ନାଙ୍ଗନ ହିଁ କବିତା ଲେଖେଇ ନିଏ ।

ପ୍ରଶ୍ନ: କେବଳ କବିତା କାହିଁକି ?

ଉତ୍ତର. କବିତା ସାଧନା ବ୍ୟାହତ ହେବ ବୋଲି ଗଳ୍ପ ଉପନ୍ୟାସ ଲେଖିନାହିଁ । କିନ୍ତୁ ଜଣେ କବି ଚେଷ୍ଟାକଲେ ଗଳ୍ପ କବିତା ଲେଖିପାରିବ ।

ପ୍ରଶ୍ନ: ପାଠକ ପ୍ରମୋଦ ମହାନ୍ତିଙ୍କ କବିତାରୁ କ'ଣ ପାଇବେ ?

ଉତ୍ତର. ମୋ ଅପେକ୍ଷା ପାଠକମାନେ ବେଶି ଜାଣିଥିବେ । କିନ୍ତୁ ଏତିକି କହିବି, ମୋ କବିତାରେ ପାଠକ ଗହନ ଗଭୀର ସ୍ୱପ୍ନ ଏବଂ ଅନ୍ତଃହୀନ ସମ୍ଭାବନା ପାଇବେ । ଜୀବନରେ ଭଲ ପାଇବାକୁ ପୁଞ୍ଜି କରି ଆଗକୁ ବଢ଼ିବାର ପ୍ରେରଣା ସହ ଉତ୍ସାହ ଯୋଗାଇବାରେ ମୋ କବିତା ବେଶ ସହାୟକ ହେବ ।

ପ୍ରଶ୍ନ: କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଲା ପରେ କେମିତି ଲାଗୁଛି ?

ଉତ୍ତର. ବହୁତ ଖୁସି ଲାଗୁଛି । ମୋ ସାହିତ୍ୟକୁ ସ୍ୱୀକୃତି ଦେଇଥିବାରୁ କେନ୍ଦ୍ର ସାହିତ୍ୟ ଏକାଡେମୀକୁ ଧନ୍ୟବାଦ ଜଣାଉଛି । ତେବେ ଏହା ମୋ ଦାୟିତ୍ୱ ବଢ଼ାଇ

ଦେଇଛି। ଓଡ଼ିଆ ପାଠକମାନେ ଏଥର ମୋଠାରୁ ଆହୁରି ଉନ୍ନତମାନର କବିତା ଆଶା କରିବେ। ତେଣୁ ସେମାନଙ୍କ ପାଇଁ ଭଲ କବିତା ଲେଖିବା ଜରୁରୀ।

ପ୍ରଶ୍ନ: ପୁରସ୍କାର ପାଇଁ ଆଶା ଥିଲା ?

ଉତ୍ତର. ବିଲ୍‌କୁଲ ନାହିଁ। ପୁରସ୍କାର ପାଇଁ ମୁଁ କବିତା ଲେଖେନି। କେବେ ପୁରସ୍କାର ପାଇଁ ଆଶା କରିନି କାହାକୁ କେବେ ପଦେ ପ୍ରତ୍ୟକ୍ଷ କି ପରୋକ୍ଷରେ କହିନି କି ଦାବି କରିନି।

ପ୍ରଶ୍ନ: ସାହିତ୍ୟିକର ଜୀବନରେ ପୁରସ୍କାରର ଗୁରୁତ୍ୱ କେତେ ?

ଉତ୍ତର. ପୁରସ୍କାରର ଯଥେଷ୍ଟ ଗୁରୁତ୍ୱ ରହିଛି। ପୁରସ୍କାର ପାଇବା ପରେ ଲେଖକର ଦମ୍ଭ ଓ ବଳ ଆସେ। ସେ ଅଧିକ ମନଯୋଗୀ ଓ ଅଭିନିବିଷ୍ଟ ହୁଏ। ଲେଖିବା ପାଇଁ ସେ ଉତ୍ସାହ ପାଏ। ଏହା ଏକ ପ୍ରେରଣା ଅବସାଦ ଭାଙ୍ଗିବାର ଓ ସାଧନା ଅବ୍ୟାହତ ରଖିବାର । ତେବେ ଏହି ପୁରସ୍କାର ଶୁଦ୍ଧ ବିଚାରରେ ହେବା ଆବଶ୍ୟକ। ଶୁଦ୍ଧ ବିଚାର ହେଲେ ସାହିତ୍ୟ ଏବଂ ସାହିତ୍ୟିକର ହିତ ସାଧନ ହେବ।

ପ୍ରଶ୍ନ: ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ପୁରସ୍କାର ପାଇନାହାନ୍ତି। କାରଣ କ'ଣ ?

ଉତ୍ତର. ପୁରସ୍କାର ପାଇଁ ବିଚାରକଙ୍କ ଅନ୍ୟମନସ୍କତା ଯୋଗୁ ବୋଧେ ପାଇନି। ବିଚାରକମାନଙ୍କର ତୁଳନା କରିବାରେ ଅକ୍ଷମତା ମଧ୍ୟ ସମପରିମାଣ ଦାୟୀ। ଏହି ପୁରସ୍କାର ପାଇଁ ମୁଁ ସବୁବେଳେ ନିଜକୁ ନିଗୃହୀତ ବୋଲି ଭାବେ।

ପ୍ରଶ୍ନ: ଆଧୁନିକ କବିତା ଦୁର୍ବୋଧ୍ୟ ବୋଲି ଅଭିଯୋଗ ହୁଏ। କ'ଣ ସତ ?

ଉତ୍ତର. ମୋତେ କାହିଁ ଲାଗୁନି। ଯଦି ପାଠକର ପଢ଼ିବାର ଆଗ୍ରହ ଥିବ ଏବଂ କବିତା ପ୍ରତି ଆସକ୍ତି ଥିବ ସେ ନିଶ୍ଚୟ କବିତା ବୁଝିପାରିବ। କିଛି ନ ପଢ଼ି ଖାଲି ଅଭିଯୋଗ କଲେ କ'ଣ କିଛି ହୁଏ।

ପ୍ରଶ୍ନ: ତେବେ କବିତାର ପାଠକ ସଂଖ୍ୟା କମୁଛି କାହିଁକି ?

ଉତ୍ତର. ପାଠକ କମିବା ଅଲଗା କଥା। ଏହା ପଛରେ ଟେଲିଭିଜନ ମୁଖ୍ୟ କାରଣ ଭାବେ ଛିଡ଼ା ହୋଇଛି। ଏହା ବ୍ୟତିତ ପିଲାମାନଙ୍କ ମଧ୍ୟରେ ପଢ଼ିବା ପାଇଁ ଆଗ୍ରହ ଜନ୍ମାଇବା ଦିଗରେ ଅଭିଭାବକମାନେ ସେତେଟା ଯତ୍ନଶୀଳ ହେଉନାହାନ୍ତି। ଭଲ ବହି ପଢ଼ିବା ପାଇଁ ପିଲାଙ୍କୁ ପ୍ରୋତ୍ସାହନ ଦିଆଯାଉନାହିଁ।

ପ୍ରଶ୍ନ: କବିତାରେ ଗାଁର ଚିତ୍ର ଦେବାକୁ ଆପଣଙ୍କ ଏତେ ଆଗ୍ରହ କ'ଣ ପାଇଁ?

ଉତ୍ତର. ଯାହା ମନରେ ଦୃଢ଼ଭାବରେ ଥାଏ, ଜମା ଯାଏନି, ଆଉ ଶୈଶବ ଯାହାର କଟିଛି ଗାଁରେ ତା'ର ସୁଦୂର ପ୍ରସାରୀ ପ୍ରଭାବ କବିତାରେ ପଡିଛି। ସୂକ୍ଷ୍ମ କୋମଳ ଗ୍ରାମୀଣ ସରଳତା ଏବଂ ସୁକୁମାର ସୌନ୍ଦର୍ଯ୍ୟବୋଧ ସବୁବେଳେ ମୋତେ ମୋହାବିଷ୍ଟ କରିଛି। ତେଣୁ କବିତାରେ ଗାଁ କଥା ଲେଖି ଦେଇଛି।

ପ୍ରଶ୍ନ: ବୃତ୍ତିରେ ଆପଣ ମନୋବିଜ୍ଞାନ ଅଧ୍ୟାପକ। ସାହିତ୍ୟ ସାଧନାରେ ଏହା ଅନ୍ତରାୟ ସୃଷ୍ଟି କରିନି?

ଉତ୍ତର. କରିଛି ନିଶ୍ଚୟ। ଥରେ ଥରେ ବ୍ୟସ୍ତତା କାରଣରୁ କବିତା ଲେଖିବା ପାଇଁ ଅସୁବିଧା ସୃଷ୍ଟି ହୁଏ। ତେଣୁ ରାତି ଅନିଦ୍ରା ହୋଇ କବିତା ଲେଖେ। ଏବେ ଅବସର ନେଇ ସାରିଥିବାରୁ ସାହିତ୍ୟ ସାଧନା ପାଇଁ ପ୍ରଚୁର ସମୟ ମିଳୁଛି। କିନ୍ତୁ ଠିକଣା ଭାବ ଓ ସ୍ପନ୍ଦନ ତଥା ଠିକଣା ସ୍ଫୁରଣ ନହେଲେ ଲେଖା ମଜ୍‌ବୁତ୍ ହେବା କଷ୍ଟକର।





# ସଂଘର୍ଷର ମାଟି ସବୁବେଳେ ରକ୍ତବର୍ଣ୍ଣ

## ଆଶୁତୋଷ ପରିଡ଼ା:

"କ୍ରୋଧକୁ କଳାତ୍ମକ ଭାବେ ରୂପାନ୍ତର କରିପାରେ କବିତା" ଏହି ମତ ରଖନ୍ତି କବି ଆଶୁତୋଷ ପରିଡ଼ା। ସ୍ୱଭାବରେ ଖୁବ୍ ଶାନ୍ତ ଶୀତଳ ଏହି କବି ଜଣକ ନିଜ କବିତାରେ ଯେତିକି ଆତ୍ମମଗ୍ନ ଜୀବନକୁ ମଧ୍ୟ ଦେଖନ୍ତି ଖୁବ୍ ଶାଣିତ ଭାବରେ ଏବଂ ବୈଜ୍ଞାନିକ ବୃତ୍ତି ଭିତରେ ରହି ମଧ୍ୟ କୋମଳ କବି ମନଟିଏ ରଖନ୍ତି । ଏହି କୋମଳତା ଭିତରେ ସେ ପୁଣି କୁହନ୍ତି ସଂଘର୍ଷର କଥା। ସଂଘର୍ଷର ମାଟି ସବୁବେଳେ ରକ୍ତବର୍ଣ୍ଣ ବୋଲି କହିଥିବା ଏହି କବିଙ୍କ ସହ ସଂକ୍ଷିପ୍ତ ଆଳାପ।

ପ୍ରଶ୍ନ: ନୂଆ ନୂଆ କବିତା ଲେଖିବାବେଳର ଅନୁଭୂତି କେମିତି ?

ଉତ୍ତର. ଅଷ୍ଟମ କି ନବମ ଶ୍ରେଣୀର ଛାତ୍ର ଥିବାବେଳେ ମୁଁ କବିତା ଲେଖିବା ଆରମ୍ଭ କରିଥିଲି । କବିତାଟିଏ ଲେଖିସାରିବା ପରେ ଖୁବ୍ ଖୁସି ଲାଗୁଥିଲା । କିନ୍ତୁ ମନେ ହେଉଥିଲା-ମୁଁ ଯାହା ଲେଖୁଛି ତା' ବୋଧହୁଏ ଠିକ୍ ଭାବରେ କବିତା ନୁହେଁ । ସେତେବେଳେ ସ୍କୁଲରେ ସାହିତ୍ୟ ପଢ଼ାଉଥିବା କେତେଜଣ ଗୁରୁ ମୋତେ ପ୍ରୋତ୍ସାହିତ କରିଥିଲେ, ଯାହାଫଳରେ କବିତା ଲେଖିବା ଦିଗରେ ମୋର ଅତ୍ମବିଶ୍ୱାସ ବୃଦ୍ଧି ପାଇଥିଲା ।

ପ୍ରଶ୍ନ: ଦଳିତଙ୍କୁ ସମାଜ ଘୃଣା ଚକ୍ଷୁରେ ଦେଖୁଥିବାବେଳେ ଆପଣଙ୍କ ରଚିତ 'ଚଣ୍ଡାଳ' ପାଠକଙ୍କୁ ଗୋଟିଏ ରାହା ଦେଖାଇ ଥିଲା । ଏଭଳି ଏକ ସୃଷ୍ଟି ସମ୍ପର୍କରେ କିଛି କୁହନ୍ତୁ ?

ଉତ୍ତର. 'ଚଣ୍ଡାଳ' ମୋ କବି ଜୀବନର ଏକ ବିରଳ ଅନୁଭବ । ଚଣ୍ଡାଳ ଭିତରେ ମୁଁ ଏପରି ଏକ ମଣିଷର ଛବି ଦେଖିଥିଲି, ଯିଏ ସମସ୍ତ ସାମାଜିକ ଅବିଚାର ଓ ଅନ୍ଧ ଧାରଣାକୁ ଅସ୍ୱୀକାର କରି ମୁକ୍ତିର ବାଟ ଖୋଜୁଥିଲା । ଭାରତୀୟ ସମାଜ ପରିପ୍ରେକ୍ଷୀରେ ଚଣ୍ଡାଳ ମୋତେ ମନେହୋଇଥିଲା ପ୍ରକୃତ ସର୍ବହରା । ସେ ଥିଲା ଏକ ପ୍ରତିସ୍ପର୍ଦ୍ଧି ଚେତନା, ଯାହା ଭିତରେ ଏକ ନିଷ୍ଠୁର ବାସ୍ତବତାର ଅନ୍ତଃସ୍ଫୁଳିଙ୍ଗ ଉନ୍ମୋଚିତ ହେବାର ସମ୍ଭାବନା ଥିଲା । ମୋର ଆଶଙ୍କା ଥିଲା ସମାଜରେ ଚଣ୍ଡାଳର ସ୍ଥିତି ଯାହା, ସମ୍ଭ୍ରାନ୍ତ ସାହିତ୍ୟ କ୍ଷେତ୍ରରେ 'ଚଣ୍ଡାଳ' କବିତା ବହିର ଅବସ୍ଥା ସେୟା ହୋଇଯାଇପାରେ । କିନ୍ତୁ ସେପରି ଘଟିନାହିଁ । ବିଗତ ଦୁଇ ଦଶନ୍ଧି ଭିତରେ ଚଣ୍ଡାଳ ଚର୍ଚ୍ଚାର ପରିସରକୁ ଆସିଛି । ସଚେତନ ପାଠକମାନଙ୍କଠାରୁ ଆଦର ଓ ସ୍ୱୀକୃତି ପାଇଛି । ଏହା ଜଣେ କବି ପାଇଁ ଖୁବ୍ ବଡ଼କଥା ।

ପ୍ରଶ୍ନ: ଆପଣଙ୍କ 'ଈପ୍ସିତ କ୍ରୋଧ'ରୁ ଜଣାପଡେ ଆପଣ କ୍ରୋଧକୁ ବେଶ୍ ଚମତ୍କାର ଭାବେ ଆୟତ୍ତ କରିପାରନ୍ତି । ଏ କଳା ଶିଖିଲେ କେଉଁଠୁ ?

ଉତ୍ତର. ବୋଧହୁଏ କବିତାଠୁ । କବିତା କ୍ରୋଧକୁ କଳାତ୍ମକ ଭାବେ ରୂପାନ୍ତରିତ କରିପାରେ । ମଣିଷ ଭିତରେ ଜମାଟ ବାନ୍ଧିଥିବା ଯୁଗଯୁଗର କ୍ରୋଧ ତା'ର ମୁକ୍ତିର ଆୟୁଧରେ ପରିଣତ ହୋଇପାରେ । ତେଣୁ ସକାରାତ୍ମକ ଭାବେ ବିଚାର କଲେ ଏପରି ଏକ କ୍ରୋଧ 'ଈପ୍ସିତ' । ପ୍ରକାରାନ୍ତରେ ଏହା ଏକ ବିପ୍ଳବର ସୂଚନା ଦିଏ ।

ପ୍ରଶ୍ନ: ଆପଣଙ୍କ 'ରକ୍ତବର୍ଣ୍ଣ'ରେ ବାଲିର ବର୍ଣ୍ଣାଳୀ ଆଉ ରକ୍ତର ଛିଟା ଆପଣଙ୍କ ପରି ଜଣେ ଶାନ୍ତ ମଣିଷ ଭିତରେ ଏ ବିପ୍ଳବ କେମିତି ?

ଉତ୍ତର. ଅଧିକାଂଶ ମଣିଷ ସାଧାରଣ ଶାନ୍ତ ଆଉ ନମ୍ର। ତଥାପି ସେମାନଙ୍କ ଭିତରୁ ଅନେକ ବିପ୍ଳବର ସ୍ୱପ୍ନ ଦେଖନ୍ତି, କାରଣ ସେମାନେ ଏକ ଶୋଷଣ ଜର୍ଜରିତ ସମାଜର ପରିବର୍ତ୍ତନ ଚାହାନ୍ତି। 'ରକ୍ତବର୍ଣ୍ଣ ବାଲି' ଦୀର୍ଘ କବିତାଟି ମୁଁ ଲେଖିଥିଲି ବାଲିଆପାଳ ଘାଟି ବିରୋଧୀ ଆନ୍ଦୋଳନ ପରିପ୍ରେକ୍ଷୀରେ। ସେଠି ମଧ୍ୟ ଗ୍ରାମାଞ୍ଚଳର ଶାନ୍ତ ମଣିଷମାନେ ନିଜ ଭିଟାମାଟିକୁ ରକ୍ଷା କରିବା ପାଇଁ ସଂଘର୍ଷକୁ ଓହ୍ଲାଇ ଆସିଥିଲେ। ଜଣେ ଲେଖକ ଭାବରେ ମୁଁ ବାଲିଆପାଳର ବିସ୍ତୃତ ବାଲି ଉତ୍ତପ୍ତ ହୋଇଯାଉଛି, ରକ୍ତବର୍ଣ୍ଣ ଦିଶୁଛି। ସଂଘର୍ଷର ମାଟି ସବୁବେଳେ ଏମିତି ରକ୍ତବର୍ଣ୍ଣ।

ପ୍ରଶ୍ନ: ଆପଣ ଚିତ୍କାର ନ କଲେ ବି ଲେଖନୀ ମାଧ୍ୟମରେ ବେଶ୍ ବିପ୍ଳବ କରିପାରନ୍ତି। ପାଠକଙ୍କଠାରୁ କେମିତି ପ୍ରତିକ୍ରିୟା ପାଆନ୍ତି ?

ଉତ୍ତର. ଓଡ଼ିଶାରେ ପାଠକୀୟ ପ୍ରତିକ୍ରିୟା ବେଶ୍ ସୀମିତ। ତା'ଛଡା ମୋ କବିତାକୁ ପସନ୍ଦ କରୁଥିବା ପାଠକ ସଂଖ୍ୟା ବୋଧହୁଏ ଖୁବ୍ କମ୍। ତଥାପି ମୁଁ କିଛି କିଛି ମନ୍ତବ୍ୟ ପାଠକମାନଙ୍କଠାରୁ ପାଏ। ଯଦି ମୋର କୌଣସି କବିତା ସେମାନଙ୍କ ମନକୁ ଛୁଇଁଥାଏ କେବଳ ପ୍ରଶଂସା ନୁହେଁ, ଅନେକ ସମୟରେ ପାଠକମାନେ ଏଭଳି ପ୍ରଶ୍ନ ଉଠାନ୍ତି, ଯାହା କବିକୁ ହତବାକ୍ କରିଦିଏ।

ପ୍ରଶ୍ନ: ସମାଜର ବାସ୍ତବ ଚିତ୍ରକଳ୍ପଗୁଡିକ ଆପଣଙ୍କ ଲେଖନୀରୁ ଝରେ। ତେବେ କ'ଣ ଏସବୁ ଆପଣ ଦେଖୁଥିବା ସମାଜର କଥା ନା କବିର କଳ୍ପନା ?

ଉତ୍ତର. ଆମେ ଯେଉଁ ବାସ୍ତବତାକୁ ଦେଖୁ, ତାକୁ ଯେ ସିଧାସଳଖ କହିଦିଆଯିବ ତେବେ ତାହା ବିବରଣୀ ହୋଇଯିବ, କବିତା ହେବ ନାହିଁ। ତେଣୁ କବିକୁ ସେଇ ବାସ୍ତବତା ଭିତରୁ ଚିତ୍ରକଳ୍ପ ଖୋଜିବାକୁ ପଡେ, ଯାହା ସେହି ବାସ୍ତବତାର କେବଳ ବାହ୍ୟରୂପ ନୁହେଁ, ଅଭ୍ୟନ୍ତରକୁ ବି ପ୍ରକଟିତ କରିବାରେ ସାହାର୍ଯ୍ୟ କରେ। ଏ ଦିଗରେ କଳ୍ପନାର ଭୂମିକା ଅନସ୍ୱୀକାର୍ଯ୍ୟ। କଳ୍ପନା ମାଧ୍ୟମରେ ହିଁ ଏକ ବାସ୍ତବତା ତା'ର କଳାତ୍ମକ ରୂପ ଗ୍ରହଣ କରେ।

ପ୍ରଶ୍ନ: ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ 'ଈପ୍‌ସିତ କ୍ରୋଧ' ସମ୍ପର୍କରେ କିଛି କୁହନ୍ତୁ ?

ଉତ୍ତର. ମୋ କବିତା ସଂକଳନ 'ଈପ୍‌ସିତ କ୍ରୋଧ' ୧୯୯୦ ମସିହା ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲା ଓ ୧୯୯୪ ମସିହାରେ ଅନୁଷ୍ଠିତ ପୁରସ୍କାର ବିତରଣ ଉତ୍ସବରେ ମୁଁ ଏହା ଗ୍ରହଣ କରିଥିଲି। କହିବାକୁ ଗଲେ ଏହା ମୋର ପ୍ରଥମ ଏକକ କବିତା ସଂକଳନ ଥିଲା, ତେଣୁ ପୁରସ୍କାରଟି

ଥିଲା ଅପ୍ରତ୍ୟାଶିତ। ମୁଁ କିଛିଟା ବିସ୍ମିତ ବି ହୋଇଗଲି କାରଣ 'ଈପ୍‌ସିତ କ୍ରୋଧ' କବିତାସବୁ ବ୍ୟବସ୍ଥା ବିରୋଧୀ ଥିଲା। ଯାହାହେଉ ଏ ପୁରସ୍କାର ମୋତେ ପରବର୍ତ୍ତୀ ସମୟରେ କବିତା ରଚନା କରିବା ପାଇଁ ଅନେକ ଭାବେ ଉତ୍ସାହିତ କରିଥିଲା।

ପ୍ରଶ୍ନ: ସୃଜନଶୀଳତା କ୍ଷେତ୍ରରେ ଉଦାରତାର ଅଭାବ ଏକ ବିରୋଧାଭାସ ଭଳି ମନେହୁଏ। ଏ ସମ୍ପର୍କରେ କିଛି କହିବେ ?

ଉତ୍ତର. ମୁଁ ମନେକରେ ସୃଜନର ଭୂମିରେ ସବୁ ସ୍ରଷ୍ଟା ସମାନ। ସେମାନେ ପ୍ରବୀଣ ହୁଅନ୍ତୁ କି ତରୁଣ। ତେଣୁ ସେ କ୍ଷେତ୍ରରେ କୌଣସି ବିରୋଧାଭାସ ରହିବା କଥା ନୁହେଁ। କିନ୍ତୁ ଆମେ ଏପରି ଏକ ଜଟିଳ ସମୟ ଭିତରେ ଲେଖାଲେଖି କରୁଛୁ, ଯେଉଁଠି ଅନେକ ପ୍ରକାର ବିଚ୍ୟୁତି ଦେଖାଦେଉଛି। ଯେଉଁ ଉଦାରତାର ଅଭାବ କଥା ଆପଣ କହୁଛନ୍ତି, ତା'ର ମୂଳରେ ବୋଧହୁଏ ଅଛି ଏକ ବ୍ୟକ୍ତିବାଦୀ ମାନସିକତା। ପ୍ରବୀଣ ହୁଅନ୍ତୁ କି ତରୁଣ, କେହି ଏଥିରୁ ସମ୍ପୂର୍ଣ୍ଣ ମୁକ୍ତ ନୁହଁନ୍ତି।

ପ୍ରଶ୍ନ: ଆପଣଙ୍କ ଦୃଷ୍ଟିରେ କବି ?

ଉତ୍ତର. ଏହା ବି ଏକ ଜଟିଳ ପ୍ରଶ୍ନ। 'କବି'ଙ୍କୁ ପଣ୍ଡିତ ଓ ଦାର୍ଶନିକମାନେ ଅନେକ ପ୍ରକାରେ ସଂଜ୍ଞାୟିତ କରିଛନ୍ତି। ମୁଁ ତା' ଭିତରେ ଏତେ ମୁଣ୍ଡ ପୂରାଇ ନାହିଁ। ସେମିତି ଦେଖିବାକୁ ଗଲେ ପ୍ରତ୍ୟେକ ମଣିଷ ଭିତରେ ଜଣେ କବି ଲୁଚି ରହିଛି କାରଣ ସେ ନିଜକୁ ଓ ତା'ର ପାରିପାର୍ଶ୍ୱକୁ ନିଜ ଆବେଗ ଭିତରେ ଧରିରଖୁଛି। କିନ୍ତୁ ସମସ୍ତେ ତଥାକଥିତ ସଂଜ୍ଞାରେ କବି ନୁହଁନ୍ତି। ଯିଏ ଏକ ନିର୍ଦ୍ଦିଷ୍ଟ ବାଗରେ (ହୁଏତ କାବ୍ୟିକ ଭାଷାରେ) ସେଇ ଆବେଗ/ଅନୁଭବକୁ ରୂପ ଦେଇପାରୁଛି ସେ କବି ଭାବରେ ବିବେଚିତ ହେଉଛି। ମୋ ମନରେ କବି ହେବାର ପ୍ରଥମ ସର୍ତ୍ତ ହେଉଛି-ମଣିଷକୁ ଭଲ ପାଇବା।





# ପତ୍ରିକାରେ ପ୍ରକାଶନ ପରେ ପୁସ୍ତକରେ ସ୍ଥାନ ଉଚ୍ଛିଷ୍ଟ ସମାନ

## ଉତ୍ତମ କୁମାର ପ୍ରଧାନ:

**ଆ**ଧୁନିକ କାବ୍ୟଧାରାରୁ ହଟିଯାଇ କଥାସାହିତ୍ୟ ପ୍ରତି ଆକୃଷ୍ଟ ହୋଇଥିବା ଉତ୍ତମ କୁମାର ପ୍ରଧାନ ଜଣେ ସଫଳ ସ୍ରଷ୍ଟା। ପତ୍ରପତ୍ରିକା ଭିଡ଼ରୁ ନିଜର ସୃଷ୍ଟିକୁ ଦୂରେଇ ରଖିଥିବା ଏହି ଲେଖକ ପାଠକଙ୍କ ସାମ୍ନାକୁ ଆସିବା ପାଇଁ ପସନ୍ଦ କରନ୍ତି ପୁସ୍ତକ ରୂପରେ। 'ବୁଢ଼ିଆଣୀ ଓ ବୃଦ୍ଧ ପ୍ରଜାପତି', 'ନଚିକେତାର ହାତ', 'କଳାହାଣ୍ଡିର କଥାକାର', 'ଡବ୍ଲୁଡବ୍ଲୁଡବ୍ଲୁ ଡଟ୍ ଅମର ଲୋକ ଡଟକମ୍', 'ଶୂନ୍ୟ ପୋଥିର କାହାଣୀ', 'ପୂର୍ବ ମୀମାଂସା' ଆଦି ପୁସ୍ତକ ତାଙ୍କୁ ପରିଚୟ ଦେଇଛି କଥାକାର ଭାବେ। 'ନଚିକେତାର ହାତ' କାହାଣୀ ପୁସ୍ତକ ପାଇଁ ତାଙ୍କୁ ମିଳିଛି ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର। ଏତଦ୍ବ୍ୟତୀତ ଅନେକ ସମ୍ମାନରେ ସମ୍ମାନିତ ଏହି କଥାଶିଳ୍ପୀଙ୍କ ସହ ହୋଇଥିବା ସଂକ୍ଷିପ୍ତ ଆଳାପ।

ପ୍ରଶ୍ନ: ଆପଣଙ୍କ ଲେଖକୀୟ ଜୀବନର ଅୟମାରମ୍ଭ କିପରି ?

ଉତ୍ତର. ଲେଖକ ଜୀବନ ଅୟମାରମ୍ଭ ଏକ ସ୍ୱଭାବିକତାରେ। ସେ ସମୟରେ ସେ ସଚେତନ ନ ଥାଏ। ଏକ ଅନ୍ତସ୍ପୃହା ହିଁ ଉକୁଟି ଆସେ। କଳାହାଣ୍ଡି, କନ୍ଧକୁଟିମା ଯୁବତୀର ସ୍ତନ୍ୟପାନ କରି ବଞ୍ଚିଥିବା ବାଳକ ପିତାଙ୍କର ବୈଦେହୀଶ ବିଳାସର ସ୍ତରରେ ଏକ ଅମୃତ ଆକର୍ଷଣ ପାଏ ତାହା ହିଁ ମୌସୁମୀ ସୁରଭିତ ଆଗାମୀ ସମୟ ପାଇଁ।

ପ୍ରଶ୍ନ: ଆପଣ କବିତା ଲେଖୁ ଲେଖୁ ଗଳ୍ପ ଜଗତକୁ ପଶିଗଲେ କିପରି ?

ଉତ୍ତର. ୧୯୬୨ କବିତା ପରେ ମୋର ମନେହେଲା କବିମାନେ ନିଜର ସୀମାରେ ବନ୍ଦୀ କୌଣସି ମାନବୀୟ ଆବେଦନ ଅପେକ୍ଷା ବୌଦ୍ଧିକ ବିକୃତି ଏବଂ ଏକ ବିକଳ ରୋଗୀର ଛଟପଟ–ମୋତେ କବିମାନଙ୍କ ପ୍ରତି ଏକ ପ୍ରାଥମିକ ବିତୃଷ୍ଣା ଯୋଗାଇଥିଲା। ତୁଚ୍ଛା ଅହଂକାରକୁ ଜାବୁଡ଼ି ଧରିଥିବା କବି ଏତେ ଦୁର୍ବୋଧ ହୋଇଗଲେ ଯେ, କ'ଣ କହୁଛନ୍ତି ୧୯୮୮ ଯାଏଁ କେହି ବୁଝିଲେ ନାହିଁ। ଏହି ପ୍ରଜ୍ଞା ପ୍ରବଞ୍ଚନାରୁ ଡେଇଁ ମୁଁ କାହାଣୀ ଲେଖୁଛି ଅବଶ୍ୟ ଅନେକ କବିତା ପରେ।

ପ୍ରଶ୍ନ: ଚିରାଚରିତ ଧାରାରେ କେବେ ଲେଖନୀକୁ ନେଇ ନାହାନ୍ତି ଆପଣ ଏ ଗଭୀର ଅନୁଭବ ଆସେ କେଉଁଠୁ କିପରି ?

ଉତ୍ତର. ମୁଁ କାହାଣୀ ଲେଖେ, ପ୍ରତ୍ୟେକ କାହାଣୀ କ୍ଷୁଦ୍ର ଉପନ୍ୟାସ ଏହା ବ୍ୟାକରଣୀୟ ସମାଲୋଚକମାନେ କ୍ଷୁଦ୍ରଗଳ୍ପ କହି ନ ପାରନ୍ତି। ମୁଁ ଲେଖିବାବେଳେ କୌଣସି ବନ୍ଧନମାନେ ନାହିଁ। କେବଳ ଗୋଟାଏ କଥା – କେବେ ହେଁ ଯୌନ ବା ତଥାକଥିତ ପ୍ରେମ କଥା ମୋତେ ଆସି ନାହିଁ– ମୁଁ ଜୀବନକୁ ଦେଖୁଛି ଏକ ଅମୃତ ଜିଜ୍ଞାସାରେ ଏବଂ ସେଇଠି ଶାରୀରିକ ଚେତନା ଅପେକ୍ଷା ଏକ ଉତ୍ତରିତ ଚେତନାକୁ ନିଜର କରିବାରେ ପ୍ରଚେଷ୍ଟା କରିଛି।

ପ୍ରଶ୍ନ: ଆପଣଙ୍କ ରଚିତ 'ନାହିଁ ମାମୁ' ସମ୍ପର୍କରେ କିଛି କହିବେ ?

ଉତ୍ତର. 'ନାହିଁ ମାମୁ' ମୋ କ୍ଷୁଦ୍ର ଉପନ୍ୟାସିକା, ଅପୂର୍ବାରେ ପ୍ରକାଶିତ। ଏହି କାହାଣୀ ପାଇଁ ଦଶବର୍ଷର ସାଧନା ଏବଂ ଗବେଷଣା। କାହିଁକି ସମାଜ 'କନ୍ୟା' ଭ୍ରୁଣ ହତ୍ୟା କରେ। ଗୋଟାଏ ବଂଶଗତ ରୋଗ ଅଛି, ଯହିଁରେ କେବଳ କନ୍ୟା ସନ୍ତାନ ହିଁ ବଞ୍ଚନ୍ତି – ପୁତ୍ର ସନ୍ତାନ ଜନ୍ମ ପରେ ମୃତ୍ୟୁ ହୁଏ ସାତ ବର୍ଷରେ। ନାମ ତା'ର Congenetial Hypertonic Disthrophy ଏହାରି ବିଷୟବସ୍ତୁ।

ପ୍ରଶ୍ନ: ଭୌଗଳିକ ବର୍ଣ୍ଣନା, ସ୍ଥିତି ବାବଦରେ ଆପଣ ଏତେ ସଚେତନ ଓ ନିର୍ଦ୍ଦିଷ୍ଟ ଯେ ଗଳ୍ପଗୁଡ଼ିକ ବେଳେବେଳେ ଖୁବ୍ ଲମ୍ବା ହୋଇଛି। ପ୍ରଶ୍ନ:ଗଳ୍ପର ଆକାରକୁ ନେଇ ସାଲିସ୍ କରିଛନ୍ତି କି ?

ଉତ୍ତର. ଭୌଗଳିକ ଚେତନା ଦ୍ୱାରା ପରିବେଶ ପରିବେଷଣ କରିବାକୁ ଯାଇ ପରେ ଚରିତ୍ରକୁ ସେଠି ଉପସ୍ଥାପନା କରେ। ସାରଳା ପୁରସ୍କାରପ୍ରାପ୍ତ ମୋ 'ଚେର' ଗଳ୍ପଟିକୁ ଆପଣ ଦେଖନ୍ତୁ। ସମଗ୍ର ଓଡ଼ିଶାର ଯେତେ ପ୍ରକାର ବିଚିତ୍ର ବନାନୀ ଅଛି ଅବସରପ୍ରାପ୍ତ ଡିଏଫ୍ଓଙ୍କ ଘରେ ମୁଁ ଦେଖେଇଛି। ତା' ମନ ଭିତରେ ଗୋଟିଏ କୋଠରିରେ ରହି ସେଗୁଡ଼ାକ ଦେଖିପାରୁଛି। ତାହା ସ୍ୱାଭାବିକ ଆସେ। ମୁଁ କେବେ ମଧ୍ୟ ତାକୁ ବାଧା ଦିଏ ନାହିଁ।

ପ୍ରଶ୍ନ: ଆପଣଙ୍କ ଅନେକ ଗଳ୍ପରେ ଦେଖିବାକୁ ମିଳେ ସନ୍ତାନହୀନ ଦମ୍ପତିଙ୍କ କଥା, ଏମିତି କାହିଁକି ?

ଉତ୍ତର. ଅନେକ ଗଳ୍ପରେ ଏ ବିଷୟରେ ଲେଖିବା ସହିତ ନିଜକୁ ମଧ୍ୟ ସନ୍ତାନଶୂନ୍ୟ ଭାବେ ମୁଁ ପାଠକଙ୍କ ପାଖରେ ଉପସ୍ଥାପିତ କରିଛି। ଏଭଳି ହୋଇଛି ଯେ ଜଣେ ପ୍ରଫେସର ଥରେ ଆସିଲେ। ମୋ ବହିଗୁଡ଼ାକ ପଢ଼ିଲେ। କହିଲେ 'ଆମ ଘରକୁ ଥରେ ଆସନ୍ତୁ। ଆପଣ ଆସିଲେ ବହୁତ ଭଲ ଲାଗିବ। ମୋର ପୁଅ ଝିଅ ଅଛନ୍ତି, ତାଙ୍କ ସହିତ ଖେଳଖୁସି କରିବେ। ଆପଣଙ୍କ ଜୀବନରେ ଏମିତି ଏକ ଅଭାବବୋଧ ଅଛି ମୁଁ ଚେତେଇକି ବେଶି ଦୁଃଖ ଦେବାକୁ ଚାହୁଁ ନାହିଁ। ମୁଁ ଆଶ୍ଚର୍ଯ୍ୟ ହେଲି, ଯେତେବେଳେ ସେ କହିଲେ ଆପଣଙ୍କ ପୁଅଝିଅ ନାହାନ୍ତି। ମୁଁ ତତ୍କ୍ଷଣାତ୍ ମୋ ପୁଅଝିଅମାନଙ୍କୁ ଡାକି ତାଙ୍କୁ ଦେଖେଇଲି। ଆମ ସମସ୍ତଙ୍କ ଜୀବନରେ ଅଭିଳାଷ ହେଉଛି, ନିଜର ଗୋଟିଏ ପ୍ରତିଛବି ପୃଥିବୀରେ ଛାଡ଼ିଯିବା – ଯିଏ କି ଯୁଗ ଯୁଗ ଏବଂ ଅନନ୍ତ ସମୟ ପର୍ଯ୍ୟନ୍ତ କାଳଜୟୀ ହେଇ ରହିବ। ବଂଶ ସୃଷ୍ଟି କରିବାର ଉଦ୍ଦେଶ୍ୟ ସେୟା ବୋଲି ମୋର କାହିଁକି ମନେହୁଏ। ସ୍ଥାବର, ଜଙ୍ଗମ, କୀଟପତଙ୍ଗ, ମଣିଷ ପର୍ଯ୍ୟନ୍ତ ଚାଲିଅଛି। ତେଣୁ ମୁଁ ଭାବୁଛି ସେଭଳି ଗୋଟିଏ କ୍ଷମତା ବା ଅବସ୍ଥା ଯାହାର ନାହିଁ, ତା' ମନର ଅବସ୍ଥାଟା ଅବଶୋଷ, ସ୍ରଷ୍ଟା ପ୍ରତି ଅଭିମାନ, ସୃଷ୍ଟି ପ୍ରତି ବିରକ୍ତି ପ୍ରକାଶ କରିବା ପାଇଁ ଅନେକ ସମୟରେ ମୁଁ ଅଗ୍ରସର ହୋଇଛି।

ପ୍ରଶ୍ନ: ଆପଣଙ୍କ କାହାଣୀଗୁଡ଼ିକରୁ ଲାଗେ ସତେଯେପରି ଆପଣ ନୁହନ୍ତି, ଏକ ଅଦୃଶ୍ୟ ହାତ ସ୍ୱପ୍ନାବିଷ୍ଟ ପରିବେଶରେ ଆପଣଙ୍କଠାରୁ ଲେଖେଇ ନେଇଛି ?

ଉତ୍ତର. ଏଟା ସତକଥା, ପ୍ରତିଟି ଗଳ୍ପ ମୁଁ ସ୍ୱପ୍ନାବିଷ୍ଟ ଅବସ୍ଥାରେ ଗ୍ରହଣ କରିଥାଏ। ଏମାନଙ୍କ ସହିତ ସହାବସ୍ଥାନ ହୁଏ ଏବଂ ସେହି ସମୟରେ ସଂଚରିତ ହୋଇଥାଏ ମୋର ସମସ୍ତ ସତ୍ତା ମଧ୍ୟରେ। ତାକୁ ଗର୍ଭଧାରଣ କରେ ବର୍ଷ ବର୍ଷ ଧରି ଏବଂ କୌଣସି ଗୋଟେ ଅଦୃଶ୍ୟ ଶକ୍ତି ମାଧ୍ୟମରେ ସେମାନେ ରୂପ ଲାଭ କରିବାକୁ ଚେଷ୍ଟା କରନ୍ତି।

ପ୍ରଶ୍ନ: ବୈଜ୍ଞାନିକ ଓ ଆଦିଭୌତିକ ଚିନ୍ତାଧାରା ଉଭୟ ଚିନ୍ତା ଚେତନାକୁ ମିଶାଇ ଆପଣଙ୍କ କାହାଣୀଗୁଡ଼ିକ ରଚିତ, ଏପରି କାହିଁକି ?

ଉତ୍ତର. ଯେତେବେଳେ କବିତା ୧୯୬୨ ରୁ ୮୨ ଲେଖାହେଲା, ସେତେବେଳେ କବିତାର ପାଠକ ପାଇଲେନି ଆପଣ। ବର୍ତ୍ତମାନ କେଉଁମାନେ ଓଡ଼ିଆ ସାହିତ୍ୟ ପଢ଼ିବେ ? ସଫ୍ଟୱେର ଇଞ୍ଜିନିୟର ? ଆମେ ୨୫୦୦ ଇଞ୍ଜିନିୟର ସୃଷ୍ଟି କରୁଛୁ ଓଡ଼ିଶାରେ ପ୍ରତିବର୍ଷ, ଯେଉଁମାନେ ଓଡ଼ିଆ ସାହିତ୍ୟ ପଢ଼ିବେ ନା ନାହିଁ ? ତାଙ୍କ ପାଇଁ ଯେଉଁ ଯେଉଁ ସାହିତ୍ୟ ଲେଖାଯିବ କଥା ଓଡ଼ିଆ ସାହିତ୍ୟରେ ଅଛି କି ? ୨୫୦୦ ରୁ ୧୦ ପ୍ରତିଶତ ଯଦି ପଢ଼ନ୍ତି, ତା' ହେଲେ ମୁଁ ଗୋଟିଏ ନୂତନ ପାଠକ ଗୋଷ୍ଠୀ ହିଁ ସୃଷ୍ଟି କରୁଛି। ମୁଁ ନିର୍ମଳ ସାହିତ୍ୟକୁ ବୈଜ୍ଞାନିକ ଭିତ୍ତିଭୂମିରେ ସ୍ଥାପନ କରିବାକୁ ଯାଉଛି।

ପ୍ରଶ୍ନ: ଆଶ୍ଚର୍ଯ୍ୟର କଥା ଆପଣଙ୍କ ଏତେ ସଫଳ ସୃଷ୍ଟି ସତ୍ତ୍ୱେ ପତ୍ରିକାମାନଙ୍କ ଭିଡ଼ରେ ଆପଣ ଦେଖାଯାନ୍ତି ନାହିଁ କାହିଁକି ?

ଉତ୍ତର. ମୁଁ ପତ୍ରିକାଧର୍ମୀ ଲେଖକ ନୁହେଁ। ମୋର ବିଶ୍ୱାସ ଯେ, ପତ୍ରିକାରେ ପ୍ରକାଶ କଲାପରେ ତାକୁ ଆଉଥରେ ବହି କରିବା ଅର୍ଥ ଉଚ୍ଛିଷ୍ଟଗୁଡ଼ିକୁ ବିତରଣ କରିବା। କିନ୍ତୁ ସିଧା ଗପ ଲେଖିବା ଓ ତାକୁ ପ୍ରକାଶ କରିବା ମୋ ବ୍ୟତୀତ ଆଉ କେହି କରୁନାହାନ୍ତି।

ପ୍ରଶ୍ନ: ବର୍ତ୍ତମାନ ଲେଖୁଥିବା ଲେଖକମାନଙ୍କୁ ଅପଣଙ୍କ ବାର୍ତ୍ତା-

ଉତ୍ତର. ଏବେ ସାହିତ୍ୟ ଏକ ବ୍ୟକ୍ତିଗତ ବିଳାସ ହୋଇଯାଇଛି - ତଥାପି ନୂତନ ପିଢ଼ିର ଅନେକ କବି, କଥାକାର ଏହାର ବ୍ୟତିକ୍ରମ - ଯାହାକି ଅତ୍ୟନ୍ତ ସନ୍ତୋଷଜନକ। ନୂତନ କବିମାନେ-ଉମାକାନ୍ତଙ୍କର ସପ୍ତମ ଋତୁ, ନୂତନ ପିଢ଼ିର କଥାକାରମାନେ, ମନୋଜ ଦାସ ଏବଂ ଗୋପୀ ମହାନ୍ତି, ଶାନ୍ତନୁ ଆଚାର୍ଯ୍ୟଙ୍କୁ ଅନ୍ତତଃ ପଢ଼ନ୍ତୁ। ମୁଁ ତ ମୋର ବରିଷ୍ଠମାନଙ୍କୁ ହିଁ ପଢ଼ିବା ପରେ ଲେଖିଛି।





# ପରିମାଣାତ୍ମକ ପ୍ରାଚୁର୍ଯ୍ୟ ଅଛି, ଗୁଣାତ୍ମକ ଗଭୀରତା ନାହିଁ

## ଅନ୍ନଦା ପ୍ରସାଦ ରାୟ

ପ୍ରଥମେ ଲେଖୁଥିଲେ କବିତା। କବିତାରେ ମନ ବୁଝିଲାନି, ଗଦ୍ୟ ଓ ଲେଖାରେ ହାତ ଦେଲେ। ସମାଜବାଦୀ, ସାମ୍ୟବାଦୀ ଆଭିମୁଖ୍ୟକୁ ଆଧାର କରି ସେ ସୃଷ୍ଟିକଲେ ଅନେକ ଗଳ୍ପ। କଥା ସାହିତ୍ୟରେ ଅନ୍ନଦା ପ୍ରସାଦ ରାୟ ଏକ ପରିଚିତ ନାମ। ଐରାବତ, ରୁଦ୍ର ସମୁଦ୍ର, ମାଟିର ଲୁହ, ଯା' ଦେବୀ , ପଥାନ୍ତର ଆଦି ଏକାଧିକ ପୁସ୍ତକ ଲେଖି ସେ ଋଦ୍ଧିମନ୍ତ କରିଛନ୍ତି ଓଡ଼ିଆ ସାହିତ୍ୟକୁ। ଯାଜପୁର ଜିଲ୍ଲା ମଙ୍ଗଳପୁରଠାରେ ୧୯୩୭ ମସିହାରେ ଜନ୍ମ ଲାଭ କରିଥିବା ଅନ୍ନଦା ପ୍ରସାଦ ସାହିତ୍ୟ ପାଇଁ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ସମ୍ମାନିତ। ସାହିତ୍ୟ କୃତିକୁ ନେଇ ତାଙ୍କ ସହ ହୋଇଥିବା ଆଳାପ।

ପ୍ରଶ୍ନ: କେଉଁଠୁ ସାହିତ୍ୟର ଧାରା ?

ଉତ୍ତର. ମୋ ସାହିତ୍ୟ ଜୀବନ ଆରମ୍ଭ ହୋଇଛି ମୋ' ଆଈଠାରୁ କାହାଣୀ ଶୁଣି। ସେ କାହାଣୀ ଭିତର ସାହିତ୍ୟବୋଧ, କାବ୍ୟବୋଧ ମୋତେ ପ୍ରେରଣା ଦେଇଥିଲା। ପରବର୍ତ୍ତୀ ସମୟରେ ସେହି କିଶୋର ବୟସରେ ମୋର ବାପା କୃଷ୍ଣକାନ୍ତ ରାୟ ସାହିତ୍ୟପତ୍ର 'ଯୁଗଧର୍ମୀ'ର ସମ୍ପାଦନା କରୁଥିଲେ। ସେହି ମାସିକ ପତ୍ରିକାରେ ମୋର ପ୍ରଥମ କବିତା ପ୍ରକାଶ ପାଇଥିଲା। ସେତେବେଳକୁ ମୋତେ ବୟସ ବାର। ଦଶ ବର୍ଷରୁ କବିତା ଲେଖିବା ଆରମ୍ଭ କରିଥିଲି। ପରବର୍ତ୍ତୀ ସମୟରେ ମୁଁ ଅନୁଭବ କଲି ଯେଉଁମାନଙ୍କୁ ଭେଟୁଛି ସେମାନଙ୍କ ସମ୍ପର୍କରେ ଲେଖିବାକୁ। ଯେଉଁ ଇଛା ତା'ର କ୍ୟାନଭାସ ପାଇଁ କ୍ଷୁଦ୍ର ଗଳ୍ପ, ଉପନ୍ୟାସ, ଆଲେଖ୍ୟ ଲୋଡ଼ା ସେହି ତାରୁଣ୍ୟ ମନନେଇ ମୋର ପ୍ରଥମ ଗଳ୍ପ ଲେଖା। ମୋର ଗଳ୍ପର ଉପଜୀବ୍ୟ ହେଲା ଯନ୍ତ୍ରଣା। ଅଧିକାଂଶ ଗଳ୍ପ ଅବଚେତନ ମନର ଖଣ୍ଡିତ ଚିତ୍ରପରି। ଅଧିକାଂଶ ଗଳ୍ପରେ ପରିପୂର୍ଣ୍ଣତାର ଚିତ୍ର ଆଙ୍କିବାକୁ ଚେଷ୍ଟା କରିଛି। ତେବେ ଅନ୍ତର୍ଦାହ ପ୍ରତିଟି ଗଳ୍ପରେ ସୁସ୍ପଷ୍ଟ।

ପ୍ରଶ୍ନ: କବିତାରୁ ଗଳ୍ପକୁ କାହିଁକି ?

ଉତ୍ତର. କବିତାରେ ଯେଉଁ କଥା କହିପାରିନି ତାହା ଗଳ୍ପରେ କହିଲି। କବିତାରେ ମଣିଷ ଆତ୍ମକୈନ୍ଦ୍ରିକ ହୋଇଯାଏ ଫଳରେ ମୁଁ ଅନ୍ୟକୁ ବର୍ଣ୍ଣନା କରିପାରିଲି ଗଳ୍ପରେ। ଗଳ୍ପରେ ନିଜକୁ ସହଜ ମନେକରୁଛି।

ପ୍ରଶ୍ନ: ଆଜିର ଗଳ୍ପରେ ଜୀବନ ନାହିଁ ବୋଲି ଅଭିଯୋଗ ହୁଏ। ଏ ସମ୍ପର୍କରେ ମତ କ'ଣ ?

ଉତ୍ତର. ନା ଜୀବନ ହିଁ ଗଳ୍ପର ନିର୍ଯ୍ୟାସ। ଜୀବନ ନଥିଲେ ଗଳ୍ପ ମୃତ ପ୍ରାୟ। ମୁକ୍ତି କି ମୋକ୍ଷ କଳ୍ପନା ଜୀବନର ସ୍ୱାଦ ନୁହେଁ। ଆବେଗମୟ ଜୀବନର ପରିପ୍ରକାଶ ଏବଂ ଗଭୀର ରହସ୍ୟବୋଧର ଭିତ୍ତିଭୂମି ଉପରେ ଗଳ୍ପର ଧାରା ସାମାଜିକ ଅଙ୍ଗୀକାରବଦ୍ଧତା, ମୌଳିକତା, ବ୍ୟକ୍ତିସତ୍ତା ମଧ୍ୟ ଦେଇ ଗଳ୍ପ ସାହିତ୍ୟ ଧାରାର ନିର୍ଯ୍ୟାସ। ଜୀବନର ଲୁକ୍‌କାୟିତ ରହସ୍ୟମୟ ଦିଗ ସମ୍ପର୍କରେ ମଣିଷର ଭାବାବେଗକୁ ପରିପ୍ରକାଶ କରିବାରେ ଗଳ୍ପ ହିଁ ମାଧ୍ୟମ। ଜୀବନ ଜିଜ୍ଞାସାକୁ ଗାଳ୍ପିକ ଭେଟେ ସାଧାରଣ ମଣିଷ ଭିତରେ।

ପ୍ରଶ୍ନ: ଆପଣଙ୍କ ଅଧିକାଂଶ ଗଳ୍ପ ନାରୀପ୍ରଧାନ ପୃଷ୍ଠଭୂମିରେ ଦଣ୍ଡାୟମାନ କାହିଁକି ?

ଉତ୍ତର. ମୋ ଗଳ୍ପଗୁଡିକ ନାରୀପ୍ରଧାନ ପୃଷ୍ଠଭୂମି ଉପରେ ଠିଆ। ନାରୀ ଜୀବନର ରହସ୍ୟାବୃତ୍ତ ଦିଗନ୍ତ, ନାରୀର ମନସ୍ତତ୍ତ୍ୱ, ତା'ର କାମନା, ବାସନା ମୋର ଅନେକ ଗଳ୍ପରେ ଚିତ୍ରିତ ହୋଇଛି। ନାରୀ ସମ୍ପର୍କରେ ଜିଜ୍ଞାସା, ଦେହ, ପ୍ରେମ ଆଦିର ଯଜ୍ଞବେଦୀକୁ ଆଧାର କରି କେତେକ ଗଳ୍ପ ମୁଁ ରଚନା କରିଛି। ନାରୀର ସତ୍ତାକୁ ଆବିଷ୍କାର କରିବାକୁ ଚେଷ୍ଟା କରିଛି। ଏହା ସତ୍ୟ ଯେ, ନାରୀ ମନଗହନର ଭାବନାକୁ ଅଧ୍ୟୟନ କରିବା ଅତି କଷ୍ଟକର। ତଥାପି ଚେଷ୍ଟା କରିବି।

ପ୍ରଶ୍ନ: ସାହିତ୍ୟ ସାଧାରଣ ଲୋକଙ୍କ ପାଖରେ ପହଞ୍ଚିପାରୁନାହିଁ କାହିଁକି ?

ଉତ୍ତର. ଆଜିର ଲେଖକ ଅଧିକ ପରିମାଣରେ ଆତ୍ମକୈନ୍ଦ୍ରିକ ହେଉଛନ୍ତି। ସମାଜ ସଚେତନତା ଅଙ୍ଗୀକାରବଦ୍ଧତା ବାସ୍ତବ ବେଦନାର ସ୍ୱରକୁ ଓ ଜୀବନର କଥାକୁ, ଜୀବନର ବାସ୍ତବ ଅନୁଭୂତିକୁ ନେଇ କଳାତ୍ମକ ଛବିଟିଏ ଫୁଟାଇପାରିଲେ ତାହା ପାଠକୀୟ ଆଦୃତି ପାଇପାରିବ। ଗଳ୍ପ ଭାଷା, ଆଲୋଚନା ଭାଷାର ଲାଳିତ୍ୟ ଓ ରଚନା ନୈପୁଣ୍ୟ ଗଳ୍ପକୁ ପାଠକୀୟ ଆଦୃତି ଦେଇଥାଏ। ଆଜିର ଓଡ଼ିଆ ସାହିତ୍ୟରେ ପରିମାଣାତ୍ମକ ପ୍ରାଚୁର୍ଯ୍ୟ ଅଛି କିନ୍ତୁ ନାହିଁ ଗୁଣାତ୍ମକ ଗଭୀରତା।

ପ୍ରଶ୍ନ: କବିତାଠାରୁ ଦୂରେଇ ଯାଉଛି ପାଠକ, କାହିଁକି ?

ଉତ୍ତର. କବିତା ତା'ଛନ୍ଦ ହରାଇଛି, ଛନ୍ଦହରା କବିତାଠାରୁ ପାଠକ ଦୁରେଇଯାଉଛି ଏବଂ କବିତାର ଦୁର୍ବୋଧ୍ୟତା ପାଠକକୁ ଏକ ଅପହଞ୍ଚ ଇଲାକାରେ ପହଞ୍ଚାଇ ଦେଉଛି। କବିତାରେ ଅନ୍ତଃସ୍ୱର ଅନ୍ତଃଛନ୍ଦ ନ ରହିଲେ କବିତା ଆବୃତ୍ତିବେଳେ ଝୁଣ୍ଟି ପଡିବା ସ୍ୱାଭାବିକ। ଛନ୍ଦହୀନ ଗଦ୍ୟ କବିତାରେ ମଧ୍ୟ ଗୋଟିଏ ଛନ୍ଦର ସ୍ୱର ଅନୁଭୂତ ହୋଇପାରେ। ଯେଉଁ କବିତାରେ ଏହା ଅନୁଭୂତ ହୋଇଥାଏ ସେ କବିତା ଅଧିକ ଆଦୃତ ହୋଇଥାଏ। ଏକଥା ସତ୍ୟ ଯେ, କବିତା କହୁନାହିଁ। ଛନ୍ଦ ସବୁବେଳେ ପ୍ରାଣର – ଅନ୍ତରର ମନର ଓ ହୃଦୟର।

ପ୍ରଶ୍ନ: କିପରି ସାହିତ୍ୟ ଲୋକଙ୍କୁ ଛୁଇଁବ ବୋଲି ଭାବୁଛନ୍ତି ?

ଉତ୍ତର. ପ୍ରକୃତରେ ହୃଦୟର ଭାଷା ବିଜଡିତ ସାହିତ୍ୟ ଲୋକଙ୍କୁ ଛୁଇଁବ। ମଣିଷ ମନ୍ଦିର ଭିତରେ ଈଶ୍ୱରଙ୍କ ସହ ଯେଉଁ ଭାଷାରେ ମନର କଥା କହେ ସେହି ଭାଷା ହିଁ ସାହିତ୍ୟର ଭାଷା ହେବା ଦରକାର। ଜଣେ ସ୍ରଷ୍ଟା ଶବ୍ଦ ଗଢ଼େ ଓ ଭାଙ୍ଗେ। ତା'ର ସେହି ଅଧିକାର ଅଛି କିନ୍ତୁ ଏହି ଗଢ଼ିବା ଭାଙ୍ଗିବା ଭିତରେ

ହୃଦୟକୁ ଭାଙ୍ଗେ ନାହିଁ। ସାହିତ୍ୟରେ ବୌଦ୍ଧିକତା ସହ ମହାପ୍ରବଣତାର ଅଭାବ ଯୋଗୁ ସାହିତ୍ୟ ଦୁର୍ବୋଧ ହୋଇଯାଉଛି। ମୁଁ ମଧ୍ୟ ଅନୁଭବ କରେ ବିଶ୍ୱସାହିତ୍ୟ ତା'ର ଶୈଳୀରେ, ତା'ର ଆଙ୍ଗିକରେ ନୂଆ ନୂଆ ଢଙ୍ଗରେ ଯେଉଁ ସ୍ତରରେ ପହଞ୍ଚୁଛି ସେହିସ୍ତରରେ ଓଡ଼ିଆ ଲେଖକ ପହଞ୍ଚିବାକୁ ଚେଷ୍ଟା କରିବା ଉଚିତ। କିନ୍ତୁ ହରାଇବା ଉଚିତ ନୁହେଁ ତା'ର ଓଡ଼ିଆତ୍ୱ। ତା'ର ଜାତିପ୍ରାଣ, ତା'ର ନିଜସ୍ୱ ଆବେଗ, ତା'ର ମାଆର ଭାଷା ଓ ମାଟିର ଗନ୍ଧ। ବିଶ୍ୱ ସାହିତ୍ୟକୁ ଗୋଟିଏ ହାତ ମୁଠାରେ ଆବଦ୍ଧ କରିବାର ପ୍ରୟାସ କରି ଅନ୍ୟ ହାତରେ ନିଜସ୍ୱ ସାହିତ୍ୟକୁ ଖୋଲିଦେବା ଉଚିତ୍।

ପ୍ରଶ୍ନ: ଓଡ଼ିଆ ଭାଷା ସାହିତ୍ୟ ଲୋପ ହେବ କି ?

ଉତ୍ତର. କେହି କାହାର ସ୍ଥାନ ନିଅନ୍ତି ନାହିଁ। ଆମ ପୂର୍ବ ସାହିତ୍ୟକୁ ପଢ଼ି ଆଜି ଆମେ ଯେପରି ଆନନ୍ଦ ପାଉଛୁ ହୁଏତ ଆଗାମୀ ପିଢ଼ି ଏବର କବିତାକୁ ପଢ଼ି ଆନନ୍ଦିତ ହେବ। ଏଣୁ ସାହିତ୍ୟ ଲୋପ ହେବାର ଯେଉଁ ଆଶଙ୍କା କରାଯାଉଛି ସେହି ଆଶଙ୍କା ମୋର ନାହିଁ।

ପ୍ରଶ୍ନ: ଆପଣ ଷାଠିଏ ଦଶକରେ କ୍ଷୁଦ୍ରଗଳ୍ପ ଲେଖି ଚର୍ଚ୍ଚାକୁ ଆସିଲେ। ତେବେ ବିଭିନ୍ନ କ୍ଷେତ୍ରରେ ହାତ ଦେଇଛନ୍ତି। ଏହି ପରିବର୍ତ୍ତନ କାହିଁକି ?

ଉତ୍ତର. ସ୍ରଷ୍ଟା ମାନସ ମୁକ୍ତ ହେବା ଉଚିତ୍। କେବଳ ମତବାଦ ବା ପ୍ରଚଳିତ ରାଜନୈତିକ ପ୍ରବାହର ତାଡନାରେ ସ୍ରଷ୍ଟା ବାନ୍ଧିହୋଇ ରହିବ। ସେଥିରେ ମୁଁ ବିଶ୍ୱାସ କରେ ନାହିଁ। ସମାଜ ଜୀବନର ଅନ୍ୟ ବହୁ ଦିଗ ରହିଛି, ଯାହାକୁ ଲକ୍ଷ୍ୟ କରାଯାଇ ଗଳ୍ପ ଚରିତ୍ରକୁ ବ୍ୟକ୍ତ କରାଯାଇପାରିବ। ମୋର ଗଳ୍ପଗୁଡ଼ିକ ସାମାଜିକ ପରିବର୍ତ୍ତନ ପାଇଁ ସ୍ୱର ଉଠାଇବା ସହିତ କେତେକ ମନସ୍ତାତ୍ତ୍ୱିକ ପ୍ରସଙ୍ଗକୁ ମଧ୍ୟ ଗଳ୍ପ ରୂପ ଦେଇଛି। ପରିପୂର୍ଣ୍ଣତା ମୋର ଲକ୍ଷ୍ୟ। ମୁଁ କୌଣସି ମାର୍କା ବା ମତବାଦର ପ୍ରଚାରକ ହେବାକୁ ଚାହିଁନାହିଁ। ମୁଁ ବାମପନ୍ଥୀ ଦଳର ସଭ୍ୟ ନୁହେଁ। ମୋତେ କିଛି ସାମାଜିକ ଉତ୍ପୀଡନ, ଶୋଷଣ ଇତ୍ୟାଦି ପସନ୍ଦକୁ ନେଇ ଗଳ୍ପ ଲେଖିବାକୁ ଭଲ ଲାଗିଲା। ତା'ପରେ ମୁଁ ଖବରକାଗଜରେ ସମସ୍ୟା ଓ ସମାଧାନର କେତେକ ବିଷୟବସ୍ତୁକୁ ନେଇ ସ୍ତମ୍ଭ ଲେଖିଲି। ଗଳ୍ପ ଲେଖିବାର ଯେଉଁ ପ୍ରବଣତାଥିଲା ତାହା ଅବଶ୍ୟ ଧିମେଇ ଗଲା। କିନ୍ତୁ ମୁଁ ଯେ ଗଳ୍ପ ଲେଖିବାକୁ ଛାଡ଼ିଦେଲି ତା' ନୁହେଁ କେତୋଟି  ନୂଆ ଗଳ୍ପ ମଧ୍ୟ ଲେଖିଛି। ମୁଁ ଚର୍ଚ୍ଚିତ ଦଶନ୍ଧିରେ ଉପନ୍ୟାସ ଲେଖିବାର ପ୍ରୟାସୀ ହୋଇଛି।

ମୋର ଗୋଟିଏ ଆତ୍ମଜୀବନୀ ମଧ୍ୟ ଲେଖିଛି। ଏସବୁଥିରେ ଯେ ଗଳ୍ପର ଉପାଦାନ ନାହିଁ ତାହା କୁହାଯିବା ଠିକ୍ ନୁହେଁ। ଜଣେ ସ୍ରଷ୍ଟା ଯେ କେବଳ ସାହିତ୍ୟର ଗୋଟିଏ ବିଭାଗକୁ ସାରାଜୀବନ ଧରିଥିବ ଏପରି କିଛି କହିବା ଠିକ୍ ହେବ ନାହିଁ।

ପ୍ରଶ୍ନ: ଓଡ଼ିଆ ସାହିତ୍ୟର ସ୍ଥିତି ଓ ପ୍ରଗତି ସମ୍ପର୍କରେ ଆପଣଙ୍କର ଧାରଣା କ'ଣ ?

ଉତ୍ତର. ଓଡ଼ିଆ ସାହିତ୍ୟର ସାମ୍ପ୍ରତିକ ସ୍ଥିତି ବେଶ୍ ଦୃଢ଼। ବହୁ ସ୍ରଷ୍ଟା ବହୁ ସୃଷ୍ଟି, କିନ୍ତୁ ପାଠକର ଅଭାବ। ତେଣୁ ସହିତ୍ୟରେ ବାର୍ତ୍ତା ସାଧାରଣ ଲୋକଙ୍କ ପାଖରେ ପହଞ୍ଚିପାରୁ ନାହିଁ। ଯଦି ଆମ ଓଡ଼ିଆ ସାହିତ୍ୟ ଆଧାରରେ ଅଜସ୍ର ପାଠକର ସୃଷ୍ଟି ହୋଇପାରିଥାନ୍ତା। ତେବେ ଓଡିଆ ସହିତ୍ୟ ବେଶ୍ ସୁଦୂର ପ୍ରସାରି ହୋଇଥାନ୍ତା। ଆମ ପାଠକମାନଙ୍କର ମାଗିଆଣିବା ନୀତି ଏତେ ଅଧିକ ଯାହା କଳନା କରାଯାଇ ପାରିବନି। ସେଠି ପ୍ରଗତିର ପ୍ରଶ୍ନ ଆସିବ କେଉଁଠୁ।





# ସଙ୍ଗୀତ ସଦାସର୍ବଦା ସାହିତ୍ୟ ଉପରେ ନିର୍ଭରଶୀଳ

## ରସରାଜ ନାରାୟଣ ପ୍ରସାଦ ସିଂହ:

**ସ**ଙ୍ଗୀତ ଓ ସାହିତ୍ୟ ଆବାହମାନ କାଳରୁ ପରସ୍ପର ସହ ସମ୍ପର୍କିତ ଓ ଅନୁବନ୍ଧିତ। ଏଭଳି ଦୃଢ଼ୋକ୍ତି ପ୍ରକାଶ କରନ୍ତି ଆଧୁନିକ ଓଡ଼ିଆ ଗୀତି ସାହିତ୍ୟର ବରିଷ୍ଠ ଓ ବିଶିଷ୍ଟ ଗୀତିକବି ରସରାଜ ନାରାୟଣ ପ୍ରସାଦ ସିଂହ। ୧୯୫୫ରୁ ଅଦ୍ୟାବଧି ଗୀତିକବିତାରେ ଏକ ଭିନ୍ନ ଶୈଳୀ ସୃଷ୍ଟି କରିଆସିଥିବା ଏହି ଶିଳ୍ପୀ ସଙ୍ଗୀତ ମାଧ୍ୟମରେ ସାହିତ୍ୟ ସୃଷ୍ଟିର ଆସ୍ପର୍ଦ୍ଧା ରଖନ୍ତି। ୧୯୩୩ ମସିହାରେ ଜନ୍ମ ଗ୍ରହଣ କରିଥିବା ରସରାଜ ନାରାୟଣ ପ୍ରସାଦଙ୍କର ବାରଗୋଟି ଗୀତିକବିତା ପୁସ୍ତକ ପ୍ରକାଶିତ। ସଙ୍ଗୀତ ସୁଧାକର ବାଳକୃଷ୍ଣ ଦାସ ଫାଉଣ୍ଡେସନ୍ ପକ୍ଷରୁ 'ରସରାଜ' ଉପାଧି, ଭାରତ ସରକାରଙ୍କ ଦ୍ୱାରା ଶ୍ରେଷ୍ଠ ଦୁଇଥର ସଂଗୀତ ରୂପକର ରଚୟିତା ସମ୍ମାନ, ଓଡିଆ ସାହିତ୍ୟ ସମାଜ ସମ୍ମାନ, ଓଡ଼ିଶା ସାହିତ୍ୟ ଏକାଡେମୀ, ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଓ କବିସମ୍ରାଟ ଉପେନ୍ଦ୍ରଭଞ୍ଜ ସମ୍ମାନ ଦ୍ୱାରା ସମ୍ବର୍ଦ୍ଧିତ ଏହି ଗୀତିକବିଙ୍କ ସହ ସାକ୍ଷାତର ଅଂଶ।

ପ୍ରଶ୍ନ: କବିତାରୁ ଗୀତିକବିତା ଆରମ୍ଭ କେମିତି ?

ଉତ୍ତର. ୧୯୪୭ ମସିହାରେ ମୁଁ ଥିଲି ସ୍କୁଲ ଛାତ୍ର। ସେତେବେଳେ ଆମ ସ୍କୁଲରେ ଗୋଲକଚନ୍ଦ୍ର ପ୍ରଧାନ ଥିଲେ ସାହିତ୍ୟ ଶିକ୍ଷକ। ସେ ହେଲେ ଓଡ଼ିଶାର ଦ୍ୱିତୀୟ ଭଞ୍ଜ ନାମିତ 'ଇନ୍ଦୁରେଖା' କାବ୍ୟର ସ୍ରଷ୍ଟା। ତାଙ୍କ ପ୍ରେରଣାରେ ମୁଁ ପ୍ରଥମେ ଛନ୍ଦ କବିତା ଲେଖିଲି। ୧୯୪୯ରେ ମୋର ଚାକିରି ଜୀବନର ଆରମ୍ଭ। ମୁଁ ଛନ୍ଦ କବିତା ଲେଖୁଥିଲି ଯାହାସବୁ ସେ ସମୟର ପତ୍ର ପତ୍ରିକାମାନଙ୍କରେ ନିୟମିତ ବାହାରୁଥିଲା। ସେତେବେଳେ ଆକାଶବାଣୀକୁ କବିତା ପାଠ ପାଇଁ ଯାଉଥିଲି। ଥରେ ମୋର ଚିହ୍ନାହେଲା କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ସହିତ। ସେ ମୋ ସହିତ କଥା ହେବା ବେଳେ କହିଲେ, ଆମ ଅନ୍ତେ ଗୀତିକବିତା ଆଉ କିଏ ଲେଖିବ ? ମୁଁ କହିଲି ମୋତେ ବତାଇଦିଅନ୍ତୁ ମୁଁ ଲେଖିବି। ସେ ସଙ୍ଗେ ସଙ୍ଗେ ମୋତେ ଆଦରରେ କୋଳକୁ ନେଲେ। ତାଙ୍କ ଘରକୁ ଡାକି ନେଇ ସେଠି ମୋତେ ସେ ବତାଇଲେ କବିତାକୁ କିପରି ଗୀତ କରିହେବ। ଏସବୁ ଜାଣିବା ପରେ ମୋର ଗୀତିକବିତା ରଚନାର ଆରମ୍ଭ ହେଲା ଯାହା ଆଜି ପର୍ଯ୍ୟନ୍ତ ଜାରି ରହିଛି। ମୋ ବିଚାରରେ ଓଡିଆ ଗୀତି ସାହିତ୍ୟ ଓଡିଆର ସଂସ୍କୃତି ଓ ପରଂପରା ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ। ସଂଗୀତ ଓ ସାହିତ୍ୟରୁ ଗୀତି କବିତାର ସୃଷ୍ଟି। ଏହା ଗୀତି କବିମାନଙ୍କର ସ୍ୱକୀୟ ଅନୁଭୂତିରୁ ଜନ୍ମନିଏ।

ପ୍ରଶ୍ନ: ଗୀତିକବିତାରେ ମନ ଦେଲେ କାହିଁକି ?

ଉତ୍ତର. ରେଡ଼ିଓରୁ ଗୀତିକବିତା ଶୁଣିବାକୁ ମୋତେ ପିଲାଟି ଦିନରୁ ଭଲ ଲାଗେ। ତା'ପରେ କାଳୀବାବୁଙ୍କ ପ୍ରେରଣା ହିଁ ମୋତେ ଗୀତିକବିତା ରଚନା ଦିଗରେ ଆଗେଇନେଲା। ଆଉ ଏକ କଥା ହେଲା ମୁଁ ଦେଖିଲି ଗୀତିକବିତା ଅତି ସହଜରେ ଶ୍ରୋତା ମାନଙ୍କ ହୃଦୟରେ ଭାବର ମହକ ଖେଳାଇପାରେ ଯାହା ଅନ୍ୟ କୌଣସି ସାହିତ୍ୟ ଯଥା ଗଳ୍ପ, କବିତା ନାଟକ, କ୍ଷେତ୍ରରେ ହୋଇପାରେନି। ତେଣୁ ମୁଁ ଭାବିଲି ଗୀତିକବିତା ଲେଖିଲେ ହୁଏତ ତାହା ଶ୍ରୋତାମାନଙ୍କୁ ମୁଗ୍ଧ କରିବ। ସେଥିପାଇଁ ମୁଁ ଗୀତିକବିତା ଲେଖିବାକୁ ଆଗ୍ରହ ପ୍ରକାଶ କଲି।

ପ୍ରଶ୍ନ: ଆପଣ ଗୀତିକବିତାର ଶୈଳୀରେ ନୂତନତା ଆଣିଥିଲେ, ତାହା କେମିତି ?

ଉତ୍ତର. ହିନ୍ଦୀ, ବଙ୍ଗଳା ଆଦି ଭାଷାରେ ଗୀତ ମୁଁ ଶୁଣି ଚିନ୍ତାକଲି ଓଡ଼ିଆ ଗୀତିକବିତାରେ ମଧ୍ୟ ଏଭଳି କିଛି ପରିବର୍ତ୍ତନ ଆଣିବା ଦରକାର ଏବଂ ସେହି ସମୟର ଯାହା ଗୀତିକବିତା ଥିଲା ତା'ର ଶୈଳୀରେ କିଛି ପରିବର୍ତ୍ତନ ଆଣିଲି। ଏହା ଆକାଶବାଣୀରେ ଯେତେବେଳେ ଅକ୍ଷୟ ମହାନ୍ତି, ସିକନ୍ଦର ଆଲାମ୍, ଶ୍ୟାମାମଣି

ଦେବୀ, କଲ୍ୟାଣୀ ଭଟ୍ଟାଚାର୍ଯ୍ୟ, ନନ୍ଦିତା ପାଲିତ ପ୍ରମୁଖ ବହୁ ଶିଳ୍ପୀଙ୍କ ମାଧ୍ୟମରେ ନୂଆ ରୂପରେ ପ୍ରଚାରିତ ହେଲା । ରସଗ୍ରାହୀ ଶ୍ରୋତା ଖୁବ୍ ପସନ୍ଦ କଲେ । ସେହି ଶିଳ୍ପୀମାନେ ମଧ୍ୟ ଖୁବ୍ ଆଗ୍ରହରେ ଗୀତଗୁଡ଼ିକୁ ବୋଲିଲେ ଏବଂ ଏହାକୁ ସଂଗୀତ ସୁଧାକର ବାଳକୃଷ୍ଣ ଦାସ ଏବଂ ପଣ୍ଡିତ ଭୁବନେଶ୍ୱର ମିଶ୍ର ମଧ୍ୟ ସମର୍ଥନ କଲେ । ଯେତେବେଳେ ମୋ ଭିତରେ ଏକ ନୂତନ ଉନ୍ମାଦନା ସୃଷ୍ଟି କଲା ମୋର ସୃଷ୍ଟି ସମୂହ । ସାହିତ୍ୟ ଓ ସଙ୍ଗୀତକାରମାନେ ମୋର ରଚନା ଶୈଳୀକୁ 'ରସରାଜୀୟ ଶୈଳୀ' ନାମରେ ନାମିତ କଲେ ।

ପ୍ରଶ୍ନ: ଓଡ଼ିଶାରେ ଗୀତିକବିତାର ସ୍ଥିତି କ'ଣ ବୋଲି ଭାବୁଛନ୍ତି ?

ଉତ୍ତର. ଓଡ଼ିଶାରେ ପୁରାତନ କାଳରୁ ଗୀତିକବିତାର ସ୍ଥିତି ସୁଦୃଢ଼ । ଏହା ବୌଦ୍ଧ ସିଦ୍ଧାଚାର୍ଯ୍ୟ କାହ୍ନୁପା, ଲୁଇପାଙ୍କଠାରୁ ଆରମ୍ଭ । ତା'ପରେ ରୀତି ଯୁଗର କବିମାନେ ଯଥା ଉପେନ୍ଦ୍ରଭଞ୍ଜ, କବିସୂର୍ଯ୍ୟ ବଳଦେବ ରଥ, ଗୋପାଳକୃଷ୍ଣ, ଗୌରହରି, ଅଭିମନ୍ୟୁ, ସାଲବେଗ ପ୍ରମୁଖ ଏହାକୁ ପରିପୁଷ୍ଟ କଲେ । ମୋ ମତରେ ଗୀତିକବିତାର ଅର୍ଥ ହେଲା ଭାବର ମହକଭରା ଶବ୍ଦର ରଙ୍ଗିନ ଫୁଲମାନଙ୍କୁ ସୁରର ସୂତାରେ ଗୁନ୍ଥି ମାଳ ରଚନା କରିବା । ଯାହା ଆବୃତି କଲେ ହୁଏ କବିତା ଏବଂ ସ୍ୱର ସଂଯୋଜନା କରି ଗାଇଲେ ହୁଏ ଗୀତ । ସଂଗୀତରେ ସାହିତ୍ୟ, ନୃତ୍ୟକଳା, କାବ୍ୟକଳା, ଚିତ୍ରକଳା ମଧ୍ୟ ଅନ୍ତର୍ଭୁକ୍ତ । ଏହା ଯେଉଁ ବିଜ୍ଞାନ ଦ୍ୱାରା ପ୍ରମାଣିତ ସେ ବିଜ୍ଞାନର ନାମ ହେଲା ନନ୍ଦନ ବିଜ୍ଞାନ । ତା'ର ପ୍ରଥମ ସଙ୍ଗୀତ ହେଲା ଓଁ କାର । ସେହି ଓଁକାରରେ ପୃଥିବୀର ସୃଷ୍ଟି, ସ୍ଥିତି ଏବଂ ବିଲୟ । ସଙ୍ଗୀତ ଓ ସାହିତ୍ୟ ଆବାହମାନ କାଳରୁ ପରସ୍ପର ସହ ସମ୍ପର୍କିତ ଓ ଅନୁବନ୍ଧିତ । ତେଣୁ ଶ୍ରୁତି ମଧୁର ଗୀତଟିଏ ପାଇଁ ସବୁବେଳେ ମନଛୁଆଁ ଗୀତିକବିତାର ଆବଶ୍ୟକତା ରହିଛି । ସେଥିପାଇଁ ସଙ୍ଗୀତରେ ଭାଷା ସାହିତ୍ୟର ଆବଶ୍ୟକତା ମଧ୍ୟ ରହିଛି । ସଙ୍ଗୀତ ସବୁବେଳେ ସାହିତ୍ୟ ଉପରେ ନିର୍ଭରଶୀଳ । ଗୀତରେ ସାହିତ୍ୟ ଥିବାରୁ ଏହା ଗୀତି ସାହିତ୍ୟ ଭାବରେ କଥିତ । ଆଜିକାଲି ଆଲବମ୍ ଗୀତ ଏବଂ କ୍ୟାସେଟ୍ ଆଦିରେ ଗୀତରୁ ସାହିତ୍ୟ ହଜିଯାଇଛି । ସାହିତ୍ୟ ନ ଥିଲେ ସଙ୍ଗୀତ ହୃଦୟଗ୍ରାହୀ ହୋଇ ନ ପାରେ ।

ପ୍ରଶ୍ନ: ଆଉ କ'ଣ ପଲ୍ଲୀଗୀତ, ନାଉରୀ ଗୀତ ପୁନଃ ଲେଖାଯାଇ ପାରିବ ନାହିଁ, ଏହାର ପ୍ରଚାର ପ୍ରସାର କରିହେବ ନାହିଁ ?

ଉତ୍ତର. ପଲ୍ଲୀଗୀତର ଗୀତିକାରମାନେ ହେଲେ ଆମ ପୂର୍ବପୁରୁଷ ଏବଂ ନିରକ୍ଷର ମାଆ ମାଉସୀ, ଅଜା ଆଇ ବା ତାଙ୍କ ଅଜା ଆଇମାନେ । ଏହାର ପ୍ରଚାର

ପିଢ଼ି ପରେ ପିଢ଼ି, କଣ୍ଠରୁ କଣ୍ଠକୁ ପ୍ରସାରିତ । ମିଡିଆ ଯଦି ପଲ୍ଲୀ ଗୀତ, ନାଉରୀ ଗୀତର ପ୍ରଚାର ପ୍ରସାର ଅଧିକ ମାତ୍ରାରେ କରନ୍ତେ ଏବଂ ତାହା ବିଶେଷ ଦର୍ଶକ ଓ ଶ୍ରୋତାଙ୍କୁ ଆକୃଷ୍ଟ ଓ ଆପ୍ୟାୟିତ କରନ୍ତା ଏବଂ ନିଶ୍ଚୟ ଗୀତ ରଚନାରେ କବିମାନଙ୍କ ସଂଖ୍ୟା ବଢ଼ନ୍ତା। ଆକାଶବାଣୀ ଏହାର ପ୍ରସାରରେ ସହଯୋଗ କରୁନାହାନ୍ତି । 'ଠିଆ ପୁଚି ନାରଙ୍ଗ' ନାମରେ ମୋର ଏକ ପଲ୍ଲୀଗୀତ ସଙ୍କଳନ ପ୍ରକାଶିତ। ସହଜରେ ସହରଠାରୁ ଗ୍ରାମର ଲୋକମାନଙ୍କ ପାଖେ ଏହି ଗୀତ ସବୁ ଆଦୃତ।

ପ୍ରଶ୍ନ: ଆପଣ କେଉଁ ମାଧ୍ୟମରେ ଗୀତିକବିତାକୁ ଲୋକଲୋଚନକୁ ଆଣିଲେ ?

ଉତ୍ତର. କାଳୀବାବୁଙ୍କ ଅମଳରୁ ଗୀତିକବିମାନଙ୍କ ପାଇଁ ଗୋଟିଏ ଅନୁଷ୍ଠାନ ତିଆରି ହୋଇଥିଲା। ତାର ନାଁ ଥିଲା ଓଡ଼ିଆ ଗୀତିକାର ସମାଜ। ଏହା କାଳୀବାବୁଙ୍କ ମୃତ୍ୟୁ ପରେ ଲୋକଲୋଚନକୁ ଆସିପାରି ନ ଥିଲା। ଆଧୁନିକ ଗୀତିକବିମାନଙ୍କର କିଛି ସଂକଳନ ନ ଥିବାରୁ ଏହାର ସ୍ରଷ୍ଟାମାନେ ଆଲୋଚନା ପରିସରକୁ ଆସିପାରୁନଥିଲେ। ମୁଁ ଓଡିଆ ଗୀତିକାର ସମାଜକୁ ପରିବର୍ତ୍ତିତ ରୂପ ଦେଇ ଓଡ଼ିଆ ଗୀତି କବି ସମାଜ ଗଠନ କଲି। ସେଥିରେ ପ୍ରଖ୍ୟାତ ଗୀତି କବିମାନେ ସହଯୋଗ କଲେ ଏହାର ସଭାପତି ଭାବରେ ମୁଁ ପ୍ରଥମେ ଆଧୁନିକ ଗୀତି କବିମାନଙ୍କୁ ନେଇ ଏକ ସଂକଳନ ପ୍ରକାଶ କଲି। ସେଥିରେ ପ୍ରତ୍ୟେକ କବିଙ୍କର ତିନୋଟି ଲେଖାଏଁ ଗୀତ ସହ ତାଙ୍କ ପରିଚିତି ରହିଲା। ଏହି ସଂକଳନର ନାମ ଥିଲା 'ଗୀତି ଗଙ୍ଗୋତ୍ରୀ' । ତା'ପରେ ନିଜସ୍ୱ ଉଦ୍ୟମରେ ପ୍ରତିଷ୍ଠା କଲି ରସରାଜ ଗୀତିକୁଞ୍ଜ ଏବଂ ତାହା ମାଧମରେ ଓଡ଼ିଶାର ପାଞ୍ଚଜଣ ସୁନାମଧନ୍ୟ ଗୀତି କବିଙ୍କ ଗୀତିଗ୍ରନ୍ଥ ପ୍ରକାଶିତ ହେଲା। ରସରାଜ ଗୀତିକୁଞ୍ଜ ନାମରେ ଗୋଟିଏ ଅନୁଷ୍ଠାନ ଗଠିତ ହେଲା। ଏହି ଅନୁଷ୍ଠାନ ମାଧ୍ୟମରେ ବର୍ତ୍ତମାନ ଏହାର ପ୍ରକାଶନ ମାଧମରେ ସଙ୍ଗୀତ ଆସର, ଗୀତି କବିତା ସଂପାନ, କବିତା ପାଠୋତ୍ସବମାନ ବର୍ଷର ବିଭିନ୍ନ ସମୟରେ ଅନୁଷ୍ଠିତ ହୁଏ । ନୂତନ ଗୀତି କବିମାନଙ୍କୁ ପ୍ରୋତ୍ସାହନ ଦେବା ଏହାର ବିଶେଷ ଲକ୍ଷ। ପ୍ରତିମାସରେ 'ଗୀତି ଚର୍ଚ୍ଚା' ନାମକ ଏକ ଅଧିବେଶନ କରି 'କବି ତିଆରି କାରଖାନା'ଟିଏ ଗଢ଼ିଉଠିଛି । ପୁରାତନ ଓ ନୂତନ ଗୀତର ଏକ ସିଡି ଓ ପୁସ୍ତକ ପାଠାଗାର ପ୍ରତିଷ୍ଠା ଏହାର ଲକ୍ଷ ଓ ଆଭିମୁଖ୍ୟ। ଏ ପର୍ଯ୍ୟନ୍ତ ମୋର ୧୫ଟି ଗୀତିଗ୍ରନ୍ଥ ଓ ସମାଲୋଚନା ପୁସ୍ତକ ପ୍ରକାଶିତ। ଓଡ଼ିଶା ଗୀତିକବି ସମାଜ ଓ ରସରାଜ ଗୀତିକୁଞ୍ଜର ପ୍ରଚେଷ୍ଟାରେ ଓଡ଼ିଆ ଗୀତି କବିମାନେ ଆଜି ସାହିତ୍ୟିକ ଭାବରେ ପରିଚିତ ଏବଂ ଓଡ଼ିଶା

ସଙ୍ଗୀତ ନାଟକ ଏକାଡେମୀ, ଓଡ଼ିଶା ସାହିତ୍ୟ ଏକାଡେମୀ ଓ ସାରଳା ସମ୍ମାନ ପୁରସ୍କାର ଲାଭ କରୁଛନ୍ତି।

ପ୍ରଶ୍ନ: ଗୀତିକାରମାନେ କ'ଣ ସମାଜ ସଚେତନ ନୁହଁନ୍ତି ? ସେମାନେ ସାମାଜିକ ସମସ୍ୟାକୁ ନେଇ ଗୀତ ଲେଖୁନାହାଁନ୍ତି କାହିଁକି ?

ଉତ୍ତର. ସେମାନେ ସଚେତନ। କିନ୍ତୁ ସୁଯୋଗ କାହିଁ? ସାମାଜିକ ସମସ୍ୟାକୁ ନେଇ ଲେଖିଲେ, ତାହା ବ୍ୟଙ୍ଗ ଗୀତି ପର୍ଯ୍ୟାୟରେ ଯିବ। ଆକାଶବାଣୀ ଓ ଦୂରଦର୍ଶନରେ ବୋଲାଯାଇ ପାରିବ ନାହିଁ। ଆଉ ରହିଲା ବ୍ୟାବସାୟିକ କ୍ୟାସେଟ୍। ସେମାନେ ପଇଡ, ଆମ୍ବ, କମଳା, କଦଳୀ ସମ୍ପର୍କରେ ଗୀତ ନ କରି ଏ ଗୀତ କରିବେ କାହିଁକି ? ତେଣୁ ଗୀତିକବି ବିଚରା ନାଚାର। ଯଦି ସୁଯୋଗ କେହି ଦିଅନ୍ତା, ତେବେ ସେମାନେ ଭଲ ଲେଖନ୍ତେ। ମୋ' ମତରେ ତାହା ହେବା ଉଚିତ।

ପ୍ରଶ୍ନ: କବି ଓ ଗୀତିକାର ମଧ୍ୟରେ କେତେ ଫରକ୍ ଅଛି ଭାବନ୍ତି ?

ଉତ୍ତର. ଜଣେ ଆଧୁନିକ କବିତା ଲେଖୁଥିବା କବି ଗୀତ ଲେଖିପାରିବ ନାହିଁ। ଜଣେ ଗୀତିକାର ସହଜରେ କବିତା ଲେଖିବ। କାରଣ ଗୀତି କବିତା ଲେଖିବାବେଳେ ପ୍ରାନ୍ତ ମିଳନ, ଉପାନ୍ତ ମିଳନ, ଛନ୍ଦ, ତାଳ, ଲୟ ପ୍ରଭୃତି ବିଷୟରେ ଜ୍ଞାନ ଥିବା ଆବଶ୍ୟକ। ତେଣୁ ସହ ଭାଷାରେ ଗୀତିକବିମାନଙ୍କର ସଂଖ୍ୟା ମୁଷ୍ଟିମେୟ।

ପ୍ରଶ୍ନ: ଆପଣ ରସରାଜ ଗୀତିକୁଞ୍ଜ କରି କେତେ ସଫଳ ?

ଉତ୍ତର. ଏହି ଅନୁଷ୍ଠାନ ନୂଆ ଗୀତିକବି ସୃଷ୍ଟି କରିପାରିଛି ଏବଂ ଗୀତିକବିତାକୁ ପ୍ରୋତ୍ସାହନ ଦେଇ ସରକାରୀ ସ୍ତରରେ ଗୀତି କବିମାନଙ୍କୁ ସ୍ୱୀକୃତି ଦେଇଛି। ଏହା ହିଁ ଏହାର ସଫଳତା ବୋଲି କୁହାଯାଇପାରେ ।

ପ୍ରଶ୍ନ: 'ଗୀତି ଗଙ୍ଗୋତ୍ରୀ' ପତ୍ରିକାର ଉଦ୍ଦେଶ୍ୟ କ'ଣ ?

ଉତ୍ତର. ଗୀତି ଗଙ୍ଗୋତ୍ରୀ ଏକ ତ୍ରୟମାସିକ ପତ୍ରିକା। ଏହା କ୍ରମଶଃ ସୁଧୀ ସଙ୍ଗୀତଜ୍ଞ ଓ ସାହିତ୍ୟିକଙ୍କ ପାଖରେ ଆଦୃତି ଲାଭ କରିଛି। ନୂତନ ଗୀତିକବି ସୃଷ୍ଟି କରିବା ଏବଂ ଲୋକଲୋଚନକୁ ଆଣିବା ଏହାର ମୂଳ ଉଦ୍ଦେଶ୍ୟ। ଏହାକୁ ନିଃସନ୍ଦେହରେ ଏକ ଅଭିନବ ପଦକ୍ଷେପ ବୋଲି କୁହାଯାଇ ପାରେ।





# ମୋ ଲେଖାରେ ପ୍ରେମ ଓ ପ୍ରଗତିଶୀଳ ଭାବର ମିଳନ ଘଟିଛି

## ଡ଼ଃ ବାସୁଦେବ ସାହୁ:

**ଗ**ଳ୍ପ ହେଉ କି ପ୍ରବନ୍ଧ, ତାଙ୍କ ଲେଖାରେ ଫୁଟି ଉଠେ କ୍ରାନ୍ତିର କଥା। ସମାଜବାଦୀ ଚିନ୍ତାଧାରାରେ ଅନୁପ୍ରାଣିତ ଏହି ଗାଳ୍ପିକ, ପ୍ରାବନ୍ଧିକ ତଥା ଆଲୋଚକ ଡ଼ଃ ବାସୁଦେବ ସାହୁ ଲେଖିଛନ୍ତି ଅନେକ। ପ୍ରଶଂସା ପ୍ରଶସ୍ତି ମଧ୍ୟ ପାଇଛନ୍ତି। ଦଳିତ ସାହିତ୍ୟ ଲେଖି ସ୍ୱୀକୃତି ଲାଭ କରିଛନ୍ତି। ବାମପନ୍ଥୀ ଆଦର୍ଶରେ ଅନୁପ୍ରାଣିତ ଏହି ଲେଖକଙ୍କ ସହ ଏଥର ସଂକ୍ଷିପ୍ତ ଆଳାପ।

ପ୍ରଶ୍ନ: ଆପଣ ଓଡ଼ିଆ ସାହିତ୍ୟର ପ୍ରାୟ ସବୁ ବିଭାଗରେ ଲେଖନୀ ଚାଳନା କରିଛନ୍ତି। ତେବେ କେଉଁ ବିଭାଗ ପ୍ରତି ଆପଣ ଅଧିକ ସମ୍ବେଦନଶୀଳ ଓ କାହିଁକି ?

ଉତ୍ତର. ସବୁ ଲେଖକଙ୍କ ପରି ମୁଁ ଆଦ୍ୟ ଜୀବନରେ କବିତା ପ୍ରତି ଅନୁରାଗୀ ଥିଲି ଏବଂ ଏବେ ମଧ୍ୟ ଅଛି। ଗବେଷକର ଜୀବନ ଆରମ୍ଭ ହେବାଠାରୁ ପ୍ରବନ୍ଧ ସାହିତ୍ୟରେ ମନୋନିବେଶ କରିଛି। ସମାଜର ଗତି ଓ ପ୍ରକୃତି ପର୍ଯ୍ୟବେକ୍ଷଣରୁ ଗଳ୍ପ ଲେଖିବାକୁ ଉଦ୍‌ବୁଦ୍ଧ ହେଲି। ମୋର ସାମ୍ୟବାଦୀ ଚିନ୍ତାଧାରା ଗପ, ପ୍ରବନ୍ଧ ଓ ଉପନ୍ୟାସରେ ପରିସ୍ଫୁଟ। ସମାଜର ବିକାଶ ଓ ସାଧାରଣ ଲୋକଙ୍କ ପ୍ରତି ମୁଁ ସମ୍ବେଦନଶୀଳ।

ପ୍ରଶ୍ନ: ଆପଣଙ୍କ ରଚିତ ଜୀବନୀ 'କ୍ରାନ୍ତି ପଥର ଯାତ୍ରୀ' ଏବଂ ଅନ୍ୟାନ୍ୟ ଲେଖାରେ କ୍ରାନ୍ତିର ସ୍ୱର ଶୁଣାଯାଏ। କହିବେ କି ବର୍ତ୍ତମାନ ସମୟରେ କେଉଁ ପ୍ରକାର କ୍ରାନ୍ତିର ଆବଶ୍ୟକ ଅଛି ?

ଉତ୍ତର. କ୍ରାନ୍ତିର ଅର୍ଥ ହେଉଛି ସନ୍ଧିକ୍ଷଣରେ ସମାଜର ଶୁଭଦାୟକ ପରିବର୍ତ୍ତନ। ଗୋଟିଏ ସମୟରେ ମାର୍କସ-ଲେଲିନ ଚିନ୍ତାଧାରା ବିକାଶଶୀଳ ରାଷ୍ଟ୍ରକୁ ଅନୁପ୍ରାଣିତ କରୁଥିଲା। ସମୟର ପରିବର୍ତ୍ତନ ସଙ୍ଗେ ତାଳ ରଖି ସମାଜବାଦୀ ଦେଶଗୁଡ଼ିକ ସମାଜବାଦର ଢ଼ାଞ୍ଚା ବି ବଦଳାଇ ଦେଲେଣି। ଉଦାର ଅର୍ଥନୀତି ସହ ରାଷ୍ଟ୍ର ଜନ ସାଧାରଣଙ୍କ ଅତ୍ୟାବଶ୍ୟକ କ୍ଷେତ୍ରରେ ସକ୍ରିୟ ଅଂଶ ନେଇ ନିୟନ୍ତ୍ରଣକୁ ଲୋକାଭିମୁଖୀ କଲେ ସମାଜରେ ଦାରିଦ୍ର୍ୟ, ବେକାରୀ ଦୂରହେବ ଏବଂ ସମତା ଆସିବ। ବର୍ତ୍ତମାନର କ୍ରାନ୍ତି ଉଦାର ଅର୍ଥନୀତି ସହିତ ସମାଜବାଦ, ଘରୋଇ ବିଭାଗ ସହ ସରକାରୀ ବିଭାଗର ସମନ୍ୱୟ ଦରକାର କରେ।

ପ୍ରଶ୍ନ: ସାହିତ୍ୟର ବିକାଶ ପାଇଁ ସରକାରୀ ପ୍ରୋତ୍ସାହନ ଯେତିକି ଅଛି ଠିକ୍ ଅଛି ନା ଆଉ କ'ଣ କରାଯିବା ଦରକାର ବୋଲି ଭାବୁଛନ୍ତି ?

ଉତ୍ତର. ସାହିତ୍ୟର ବିକାଶ ପାଇଁ ଭାଷାର ବିକାଶ ଏବଂ ଓଡ଼ିଆ ଭାଷା ମାଧ୍ୟମରେ ଶିକ୍ଷାର ବିକାଶ ଏକାନ୍ତ ଲୋଡ଼ା। ସରକାର ଏ ଦିଗରେ ପ୍ରୋତ୍ସାହନ ଦେବା ପାଇଁ ପ୍ରାଥମିକ ବିଦ୍ୟାଳୟ ସ୍ତରରୁ କଲେଜ ପର୍ଯ୍ୟନ୍ତ ଓଡ଼ିଆ ମାଧ୍ୟମରେ ବିଶେଷତଃ ଗ୍ରାମାଞ୍ଚଳରେ ଶିକ୍ଷାନୁଷ୍ଠାନ ସମୃଦ୍ଧ କରିବାକୁ ଦୃଷ୍ଟି ଦିଅନ୍ତୁ। ସାହିତ୍ୟିକମାନଙ୍କୁ ଉତ୍ସାହିତ କରିବା ପାଇଁ ସେମାନଙ୍କ ସୃଷ୍ଟିକୁ ଅନ୍ୟ ଭାଷାରେ ଅନୁବାଦ କରିବାର କ୍ଷେତ୍ର ପ୍ରସାରିତ ହେଉ। ଏ ଦିଗରେ ସରକାର ସ୍ୱତନ୍ତ୍ର ଅନୁବାଦ ବ୍ୟକ୍ତି ଓ ଅନୁଷ୍ଠାନମାନଙ୍କୁ ଦିଅନ୍ତୁ। ଓଡ଼ିଶାର ବିଶିଷ୍ଟ ପ୍ରାକ୍ତନ ଓ

ବର୍ତ୍ତମାନର କବି, ଲେଖକଙ୍କ ବ୍ୟକ୍ତିତ୍ୱ ଓ କୃତିର ପ୍ରସାର ପାଇଁ ଓଡ଼ିଶା ରାଜଧାନୀ ଓ ଅନ୍ୟ ପଶ୍ଚିମ, ଦକ୍ଷିଣ ଅଞ୍ଚଳର ବଡ଼ ସହରରେ ସାହିତ୍ୟ ବିନୋଦନ କେନ୍ଦ୍ର ଓ ସ୍ଥାୟୀ ସାହିତ୍ୟ ମ୍ୟୁଜିୟମ (ସଂସ୍କୃତି ଭବନ) ମାନ ପ୍ରତିଷ୍ଠା କରାଯାଉ।

ପ୍ରଶ୍ନ: ଆପଣଙ୍କ ଦୃଷ୍ଟିରେ ଆପଣଙ୍କ କେଉଁ ସୃଷ୍ଟିକୁ ଅଧିକ ସାର୍ଥକ ମନେକରନ୍ତି ?

ଉତ୍ତର. ସମାଜବିଜ୍ଞାନ ସମ୍ବନ୍ଧୀୟ ପ୍ରବନ୍ଧ ନିଶ୍ଚିତ ରୂପେ ମୋର ନିଜସ୍ୱ ମତାମତ ବହନ କରେ। ଏହା ସହିତ ମୋର କେତୋଟି ଚରିତ୍ର ଯଥା – 'ଭୂମିପୁତ୍ର' (ବିଜୁ ପଟ୍ଟନାୟକଙ୍କ ସମ୍ପର୍କିତ), 'ସଂଗ୍ରାମ ସରିନି' – ଏଗୁଡ଼ିକ ଉପନ୍ୟାସ ଶୈଳୀରେ ଲେଖା ଯାହା ବ୍ୟକ୍ତିତ୍ୱର ପରାକାଷ୍ଠା ଓ ଚରିତ୍ର ଚିତ୍ରଣ କରେ।

ପ୍ରଶ୍ନ: ଆପଣଙ୍କ ସବୁ ଗପର ପରିସୀମା ପ୍ରାୟ ସମାନ ଏବଂ ଗ୍ରାମାଭିମୁଖୀ, ତେବେ କ'ଣ ଗପ ଲେଖାର ଆରମ୍ଭରୁ ପରିସୀମା ମାପିସାରିଥାନ୍ତି ?

ଉତ୍ତର. ମୋର ଗପଗୁଡ଼ିକ ଛୋଟ କିନ୍ତୁ ତାହା ଗ୍ରାମାଭିମୁଖୀ ଓ ସମାଜ ଅଭିମୁଖୀ। ଏହି ଗଳ୍ପ ଲେଖିବାର ପ୍ରରୋଚନା ପାଇଲି ମୋର ଜଣେ ଘନିଷ୍ଠ ସହକର୍ମୀଙ୍କ ଇର୍ଷାରେ। ମୁଁ ଡକ୍ଟରେଟ ପାଇଲା ପରେ କଲେଜରେ ମୁଖ୍ୟ ଭାବରେ ମୋତେ ସ୍ୱାଗତ ଦେବାବେଳେ ଜଣେ ଯୁବକ ଅଧ୍ୟାପକ ସେହି ସଭାରେ ଯୋଗଦେଲେ ନାହିଁ। ପିଲାମାନଙ୍କ ପ୍ରଶଂସା ଓ ଜନୈକ ଅଧ୍ୟାପକଙ୍କ ଅସୂୟା ମୋ ମନରେ ଦ୍ୱନ୍ଦ ଆଣିଥିଲା। ତେଣୁ ପ୍ରଥମେ ଗପ ଲେଖିଥିଲି 'ଡକ୍ଟର୍ସ ଡିଲେମା'। ଏହି ଗଳ୍ପକୁ ପଢ଼ି ଅନେକ ପାଠକଙ୍କର ପ୍ରଶଂସା, ଉତ୍ସାହ ମୋତେ ଅଧିକ ଅଧିକ ଲେଖିବାକୁ ପ୍ରେରଣା ଦେଲା। ତା' ପରେ ମୁଁ ଯାହାବି ଗପ ଲେଖିଛି ପାଠକଙ୍କୁ ରୁଚିଲା ପରି ପରିସୀମାଯିଏ ନିର୍ଦ୍ଧାରଣ କରିଦେଉଛି।

ପ୍ରଶ୍ନ: ଆପଣ ସାହିତ୍ୟ-ସମାଜ ଓ ଅର୍ଥନୀତିକୁ ନେଇ ଖୁବ୍ ସଫଳ ଭାବରେ ପ୍ରବନ୍ଧ ରଚନା କରିଛନ୍ତି, ତେବେ ଏହା ଖୁବ୍ ବିଳମ୍ବରେ କାହିଁକି ?

ଉତ୍ତର. ମୋର ପ୍ରବନ୍ଧ ବହି 'କ୍ରାନ୍ତିପଥର ଯାତ୍ରୀ' ଲେଖିବା ବେଳେ ବିଶ୍ୱର ବିପ୍ଳବୀମାନଙ୍କର ଜୀବନ ଚିତ୍ରଣ କରିସାରି ଅତି ଆନନ୍ଦରେ ମୁଁ କହିଦେଲି ମୁଁ କାହିଁକି ଏ ରକମର କାର୍ଯ୍ୟରେ ନିଜକୁ ନିୟୋଜିତ କଲିନାହିଁ। ଓଡ଼ିଆ ଜୀବନୀ ଲେଖା ମୋତେ ଅଭିଭୂତ କରିଥିଲା। ପରବର୍ତ୍ତୀ କାଳରେ ଦଳିତ ସାହିତ୍ୟ ଲେଖି ମୁଁ ଓଡ଼ିଶାରେ ସ୍ୱୀକୃତି ପାଇଛି। ଭ୍ରମଣ କାହାଣୀ ମୋର ଆମେରିକା, ୟୁରୋପ ଓ ଆଫ୍ରିକା ବହି ନୂତନ ଦୃଷ୍ଟିକୋଣରୁ ଲେଖା ହୋଇଛି

ଓ ତାହା ଆଦୃତ ହୋଇଛି । ଏହି ଭ୍ରମଣ କାହାଣୀ ହିଁ ମୋତେ ଦେଇଛି ରାଜ୍ୟସ୍ତରୀୟ ସମ୍ମାନ ଓ ଅନେକ ପୁରସ୍କାର ।

ପ୍ରଶ୍ନ: ଆପଣ ପ୍ରଥମେ ଲେଖିଥିବା କ୍ରାନ୍ତିକାରୀ ଲେଖାଠାରୁ ଏଯାବତ୍ ଲେଖିଆସୁଥିବା ଧାରାରେ ସମାଜ, ସରକାର ଉପରେ କିଭଳି ପ୍ରଭାବ ପକାଇ ପାରିଛନ୍ତି ବୋଲି ଭାବୁଛନ୍ତି ?

ଉତ୍ତର. ଲେଖାର ପ୍ରତ୍ୟେକ୍ଷ ପ୍ରଭାବ ଯେତେ ନୁହେଁ ପରୋକ୍ଷ ପ୍ରଭାବ ତା'ଠାରୁ ବେଶି । ମୁଁ ଆନନ୍ଦିତ ଯେ ଓଡ଼ିଶାର ବାମପନ୍ଥୀ ଚିନ୍ତାଧାରାର ପାଠକମାନେ ମୋ ପ୍ରବନ୍ଧକୁ ଆଗ୍ରହରେ ପଢ଼ନ୍ତି । ତା'ର କାରଣ ମୁଁ ଯାହା ଭାବେ ତାହା ଲେଖେ । କାହାକୁ ପ୍ରଶଂସା କରିବା ଉଦ୍ଦେଶ୍ୟରେ ଲେଖେନାହିଁ । ଜନୈକ ଅବସରପ୍ରାପ୍ତ ପ୍ରଧାନଶିକ୍ଷକ ମୋ ବିଷୟରେ କହିବାକୁ ଯାଇ ଅନ୍ୟଜଣଙ୍କୁ କହିଥିଲେ – "ବାସୁଦେବବାବୁ ସମାଜବାଦୀ ଚିନ୍ତାଧାରା ଓଡ଼ିଶା ଲୋକଙ୍କ ପାଖରେ ପହଞ୍ଚୁଛନ୍ତି ।" ଏହି ମନ୍ତବ୍ୟ ଶୁଣି ମୁଁ ଭାବିଥିଲି ମୋ ଜୀବନ ଧନ୍ୟ ହୋଇଛି । ଏଥିରୁ ଅନୁମାନ କରାଯାଇପାରେ ଯେ, ମୋର ବିଶ୍ୱାସ ଗତତନ୍ତ୍ରରେ ଜନପ୍ରତିନିଧିର ଚିନ୍ତାକୁ ଲେଖକମାନେ ପ୍ରଭାବିତ କରନ୍ତି, ଏହା କେତେକ ବିଧାୟକଙ୍କଠାରୁ ଶୁଣିଛି ।

ପ୍ରଶ୍ନ: ଆପଣ ପ୍ରବନ୍ଧ ଲେଖିବାବେଳେ ସମସାମୟିକ ଜୀବନର ସୂକ୍ଷ୍ମ ଅନୁଚିନ୍ତନକୁ ସାମୂହିକ ସ୍ୱାର୍ଥପାଇଁ ରଚନା କରିଛନ୍ତି ଏବଂ କାବ୍ୟ ରଚନାବେଳକୁ ବ୍ୟକ୍ତିଗତ ପ୍ରେମାନୁଭୂତିର କାବ୍ୟିକ ପରିପ୍ରକାଶରେ ସିଦ୍ଧହସ୍ତ, ତେବେ ଏ ଦୁଇଟି ମାଧ୍ୟମର ସନ୍ତୁଳନ କିପରି ରଖିଛନ୍ତି ?

ଉତ୍ତର. ରସେଲ କହିଥିଲେ, ତାଙ୍କ ଜୀବନର ଅଧିକ ପ୍ରିୟ ପଦାର୍ଥ ହେଉଛି ଜ୍ଞାନ, ପ୍ରେମ, ଅନୁକମ୍ପା ମୋର ମନେହୁଏ ମୋର ଅଜାଣତରେ ପିଲାଟିଏବେଳୁ ଏ ତିନିଟି ଭାବ ବା ଲକ୍ଷ୍ୟ ମୋ ଭିତରେ ଛପି କି ରହିଛି । ପ୍ରେମାନୁଭୂତିରୁ ତ କବିତା ଜାତ ହୁଏ ସରସ ଭାବରେ । ମଣିଷ ଜାତି ଓ ପ୍ରକୃତିକୁ ଯେ ଭଲପାଏ ସେ ତ ପ୍ରେମିକ । ଜଣେ ପ୍ରେମିକର ଦୃଷ୍ଟିରେ ସମାଜର ମଙ୍ଗଳ ଅତ୍ୟନ୍ତ କାମ୍ୟ । ଷଷ୍ଠ ଶ୍ରେଣୀରୁ ଜୟପ୍ରକାଶଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ପରେ ପରେ ମାନସିଂ ଓ ରବିନ୍ଦ୍ରନାଥ ଠାକୁରଙ୍କ କବିତା ପ୍ରତି ଆକୃଷ୍ଟ ହୋଇ ମୁଁ ଲେଖନୀ ଚାଳନା କରିଥିବାରୁ ସ୍ୱାଭାବିକ ଭାବେ ମୋ ଲେଖାରେ ପ୍ରେମ ଓ ପ୍ରଗତିଶୀଳ ଭାବର ମିଳନ ଘଟିଯାଇଛି ।

ପ୍ରଶ୍ନ: ଆପଣ 'ଅନୁରାଗ' ଉପନ୍ୟାସରେ ନାୟକଙ୍କୁ ଜଣେ ମଧ୍ୟବୟସ୍କା ନାରୀର ପ୍ରେମରେ ପକାଇ ଦେଇଛନ୍ତି। ଏହି ଉପନ୍ୟାସ ରଚନା କାଳରେ ଏଭଳି ଅନ୍ତରଙ୍ଗ ସମ୍ପର୍କକୁ ପାଠକ କିପରି ଗ୍ରହଣ କଲେ।

ଉତ୍ତର. 'ଅନୁରାଗ' ଉପନ୍ୟାସରେ ନାୟକର ପରିଣତ ବୟସରୁ ଜନୈକ ମଧ୍ୟବୟସ୍କା ନାରୀଙ୍କ ସହିତ ଅନ୍ତରଙ୍ଗ ସମ୍ପର୍କ ଚିତ୍ରିତ ହୋଇଛି, ତାହା ଚିଠିପତ୍ର ବିନିମୟ ମାଧ୍ୟମରେ। ଚିଠି ଯେ ମନକୁ ଛୁଇଁପାରେ ଏହି ଉପନ୍ୟାସ ତାହା ଦର୍ଶାଇଛି। ଏହି ଉପନ୍ୟାସରେ ବାସ୍ତବତା ଓ କଳ୍ପନାର ସମ୍ମିଶ୍ରଣ ଘଟିଛି। ପ୍ରେମ ସବୁବେଳେ ସବୁ ସମୟରେ ସବୁପ୍ରକାର ସ୍ଥିତିରେ ଗ୍ରହଣୀୟ ଓ ଆଦରଣୀୟ।





# କବିତା ଅନ୍ୟ ଲୋକର ଅନୁଭବ

## ବଂଶୀଧର ଷଡ଼ଙ୍ଗୀ:

**କା**ବ୍ୟପୁରୁଷ ବଂଶୀଧର। ଅଧ୍ୟାପନା ଜୀବନର ଅବ୍ୟବହିତ ପୂର୍ବରୁ ସେ ଧରିଥିଲେ ଲେଖନୀ, ସୃଷ୍ଟି କରିଥିଲେ ଅନେକ କବିତା। ସେଥିରୁ ବଛା ବଛା କବିତାକୁ ନେଇ ସେ ପ୍ରକାଶ କରିଥିଲେ ୭ଟି କବିତା ଗ୍ରନ୍ଥ। ତନ୍ମଧ୍ୟରେ ରହିଛି ସମୟ ଅସମୟ, ଶବରୀଚର୍ଯ୍ୟା, ଛାୟାଦର୍ଶନ ଓ ସୂରୋଦୟ। ସମ୍ପାଦନା ଓ ଗଳ୍ପ ଲେଖା କ୍ଷେତ୍ରରେ ମଧ୍ୟ ରହିଛି ତାଙ୍କର ଗଭୀର ପ୍ରବେଶ। କବିତା ପାଇଁ ତାଙ୍କୁ ମିଳିଛି କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ୨୦୦୬ ମସିହାରେ। ଏହା ପୂର୍ବରୁ ସେ ରାଜ୍ୟ ସାହିତ୍ୟ ଏହାଡେମୀ ପୁରସ୍କାର ସମେତ ଅନେକ ଅନୁଷ୍ଠାନ ଦ୍ୱାରା ମଧ୍ୟ ପୁରସ୍କୃତ ହୋଇଛନ୍ତି। ତାଙ୍କ ସହ ହୋଇଥିବା ସଂକ୍ଷିପ୍ତ ଆଳାପ।

ପ୍ରଶ୍ନ: ଆପଣଙ୍କ ସାହିତ୍ୟ ଜୀବନର ଆରମ୍ଭ କିପରି ?

ଉତ୍ତର. ପିଲାବେଳେ ଶୁଣିଥିଲି, ମୋ ଜେଜେବାପା ଗୀତ ଲେଖୁଥିଲେ, ହୁଏତ ପ୍ରେରଣା ମିଳିବାର ଇଏ ଗୋଟେ କାରଣ ହୋଇପାରେ। ଅନ୍ୟପକ୍ଷରେ ଆମ ଗାଁର ପ୍ରାକୃତିକ ପରିବେଶ ମଧ୍ୟ ମୋତେ କିଛି ଲେଖାଲେଖି କରିବା ପାଇଁ ସହାୟତା କରିଥାଇପାରେ। ଯେତେଦୂର ମନେପଡୁଛି - ମୋର ଲେଖାଲେଖି ଆରମ୍ଭ ସପ୍ତମ ଶ୍ରେଣୀରୁ। ପରେ ବିଜେବି ହାଇସ୍କୁଲ (ଖୋର୍ଦ୍ଧା) ରେ ପଢୁଥିଲା ବେଳେ ସ୍କୁଲ ପତ୍ରିକା 'ଅବକାଶ' ରେ ଦୁଇ ତିନୋଟି କବିତା ପ୍ରକାଶ ପାଇଥିଲା। ୧୯୫୮ରୁ ୧୯୬୦ ମସିହା ଭିତରେ ବିଭିନ୍ନ ଦୈନିକ ଖବରକାଗଜର ଶିଶୁ ବିଭାଗରେ କବିତା ପ୍ରକାଶ ପାଇଲା। ପରେ ଦିଗନ୍ତ, ଡଗର, ସମାବେଶ, କଳନା, ସାମ୍ମୁଖ୍ୟ, ଝଙ୍କାର, ଆସନ୍ତାକାଲି, କାବ୍ୟ, ନବରବି ଇତ୍ୟାଦି ପ୍ରାୟ ସବୁ ସାହିତ୍ୟ ପତ୍ରିକାରେ କବିତା ପ୍ରକାଶ ପାଇଆସୁଛି।

ପ୍ରଶ୍ନ: ଲେଖିଲାବେଳେ ଉପଯୁକ୍ତ ଶବ୍ଦଟିଏ ନ ମିଳିଲେ କ'ଣ କରନ୍ତି ?

ଉତ୍ତର. ଭାବପ୍ରକାଶ ନିମନ୍ତେ ଉପଯୁକ୍ତ ଶବ୍ଦ ନ ମିଳିଲେ ଖୁବ୍ ବ୍ୟସ୍ତ ଲାଗେ। ସେଇ ବିବ୍ରତ ଅବସ୍ଥା ଅନେକ ସମୟ ରହିଥାଏ। ସେଥିରୁ ମୁକୁଳିବା ପର୍ଯ୍ୟନ୍ତ ଚିଡିଚିଡି ଲାଗୁଥାଏ।

ପ୍ରଶ୍ନ: ଆପଣ କହିଥିଲେ କବିତା ସିଦ୍ଧ ହେଲେ ମନ୍ତ୍ର, ମନ୍ତ୍ର ସିଦ୍ଧ ହେଲେ ଧ୍ୱନି ହୁଏ। କହିବେ କି ଏହି କବିତା ଧ୍ୱନିଟି ଆଜିର ପାଠକ ମହଲରେ କିପରି ଗୁଞ୍ଜରଣ ସୃଷ୍ଟି କରୁଛି ?

ଉତ୍ତର. ଗୋଟିଏ ସାକ୍ଷାତ୍‌କାରରେ କବି ହରପ୍ରସାଦଙ୍କ ଉକ୍ତି ଥିଲା ବାକ୍ୟସିଦ୍ଧ ହେଲେ କବିତା ହୁଏ। କବିତା ସିଦ୍ଧ ହେଲେ ମନ୍ତ୍ର ହୁଏ। 'ମୁଁ ସେଇଠି ଯୋଗ କରିଥିଲି ଯେ, ମନ୍ତ୍ର ସିଦ୍ଧ ହେଲେ, ଧ୍ୱନି ହୁଏ। ଆମର ସାହିତ୍ୟ ତତ୍ତ୍ୱର 'ଶବ୍ଦ' ସମ୍ପର୍କରେ ବହୁ ବିଶ୍ଳେଷଣ କରାଯାଇଛି ଏବଂ 'ଶବ୍ଦ', 'ବ୍ରହ୍ମ' ବୋଲି କୁହାଯାଇଛି। ତେଣୁ କବିତାର ମୂଳ ଶବ୍ଦରୁ ଏହି ବ୍ୟାପ୍ତି 'ଧ୍ୱନି' ପର୍ଯ୍ୟନ୍ତ କିମ୍ବା 'ଧ୍ୱନି'ର ପରବର୍ତ୍ତୀ ଅବସ୍ଥାକୁ, ଯଦି କିଛି ଥାଏ, ସେ ପର୍ଯ୍ୟନ୍ତ। କବିତା ହେଉଛି ଅନ୍ୟ ଲୋକର ଅନୁଭବ। ସେହି ଦିବ୍ୟଲୋକରେ ପହଞ୍ଚିବା ପାଇଁ ଶବ୍ଦମାନେ ହିଁ ମାଧ୍ୟମ, ମାତ୍ର ସେ ଅନୁଭବ ହିଁ ଶବ୍ଦହୀନ। ସେଇ ଅନୁଭବ ଯେଉଁ କବିତାରେ ଥିବ, ତାହା ନିଶ୍ଚିତ ପାଠକଙ୍କୁ ଆନନ୍ଦ ଦେଉଥିବ, ତାହା କିପରି ଗୁଞ୍ଜରଣ ସୃଷ୍ଟି କରୁଥିବ, ପାଠକମାନେ ହିଁ କହିପାରିବେ।

ପ୍ରଶ୍ନ: ସମାଜର ଅସାମାଜିକତାକୁ ସାହିତ୍ୟ ଦୂରୀଭୂତ କରିପାରିବ କି ?

ଉତ୍ତର. ପ୍ରାୟ ପ୍ରତ୍ୟକ୍ଷ ଭାବରେ ନୁହେଁ। ତେବେ, ସାହିତ୍ୟ ଯେଉଁ ଲୋକଟିକୁ ଏକ ଉଚ୍ଚତର ସ୍ତରକୁ ନେଇଯାଏ, ସେ ହିଁ ସମାଜର ସକଳ ଅସାମାଜିକତାକୁ ସଂଦର୍ଶନ କରିପାରେ ଏବଂ ତାକୁ ଦୂର କରିବାରେ ବ୍ରତୀ ହୁଏ। ତେଣୁ ଏ ଦିଗରେ ସାହିତ୍ୟର ପରୋକ୍ଷ ଭୂମିକା ସ୍ୱୀକାର୍ଯ୍ୟ।

ପ୍ରଶ୍ନ: ଆପାଣଙ୍କ କବିତାରେ ରହସ୍ୟମୟତାର ଏକ କାବ୍ୟିକ ସିଦ୍ଧାନ୍ତ ବେଶ୍ ଉଜ୍ଜ୍ୱଳ। ଏ ସମ୍ପର୍କରେ କିଛି କହିବେ ?

ଉତ୍ତର. ସମାଲୋଚକଙ୍କ ମତରେ "ବର୍ତ୍ତମାନର ଅବ୍ୟବସ୍ଥିତ ମାନସିକତାକୁ ଅତିକ୍ରମ କରିବା ଦୁରୂହ ହେଲେ ହେଁ ମଣିଷ ଏକ ଉଚ୍ଚତର ଚେତନାରେ ପହଞ୍ଚି ପାରିଲେ, ଏଥିରୁ ନିସ୍ତାର ପାଇପାରିବ।" ଏଇ ଉଚ୍ଚତର ଅବସ୍ଥାର ପରିକଳ୍ପନା ହିଁ ଅଲୌକିକ ଜଗତର ଅନ୍ୱେଷଣ ଏବଂ ତାହା ହିଁ ରହସ୍ୟମୟ ଓ ଆମର ସମୃଦ୍ଧ ପରମ୍ପରା। ଏଇ ପରମ୍ପରା ଓ ମୁକ୍ତବୋଧ- ବୋଧହୁଏ ମୋ' କାବ୍ୟ ଚେତନାର ପ୍ରମୁଖ କାବ୍ୟକଳା।

ପ୍ରଶ୍ନ: ଆପଣ ନିଜକୁ କୌଣସି କବିତା ପାଠୋତ୍ସବ ବା ସାହିତ୍ୟ ସଭାଠାରୁ ଦୂରେଇ ରଖିଛନ୍ତି କାହିଁକି ?

ଉତ୍ତର. ବିଲ୍‌କୁଲ୍ ଯାଏନି କହିଲେ ଠିକ୍ ହବନି, କିଛି କିଛି କବିତା ପାଠୋତ୍ସବ ଓ ସାହିତ୍ୟ ସଭାରେ ଯୋଗଦେଇଛି। ତେବେ ବହୁ ସ୍ଥାନକୁ ଯାଇପାରେନି। କାରଣ ବୋଧହୁଏ, ସେ ଗହଳି ଚହଳି ମୋତେ ଭଲ ଲାଗେନି।

ପ୍ରଶ୍ନ: ଆପଣଙ୍କ 'ଅନ୍ୟ ଏକ ଚମ୍ପୂ' କବିତାରେ ଜଗନ୍ନାଥଙ୍କୁ ବିଡ଼ିଖଣ୍ଡେ ଧରେଇବା ପରି ଦୁଃସାହସ କରିଛନ୍ତି, ତେବେ ଏପରି ଚେତନା ଆପଣଙ୍କ ଲେଖନୀକୁ ଆସିଲା କିପରି ?

ଉତ୍ତର. କବିତାଟି ୧୯୭୯ ମସିହାରେ ପ୍ରକାଶ ପାଇଥିଲା। ସେତେବେଳେ ଯୁବକ ଅବସ୍ଥା, ତେଣୁ ଦୁଃସାହସ ଆସିବା ସ୍ୱାଭାବିକ। ଉଦ୍ଧୃତିର ପୂର୍ବ ଦୁଇଧାଡି ହେଉଛି- "ଆହେ ପ୍ରଭୁ, ବଳିଆର ଭୁଜ/ତୁମର ତ ଭୁଜ ମୋଟେ ନାହିଁ।" ଏଥିରୁ ବିଦ୍ରୁପର ସ୍ୱର ବେଶ୍ ବାରିପାରୁଥିବେ। ଏହାକୁ ଆପଣ ନିନ୍ଦା ଛଳରେ ସ୍ତୁତି ବୋଲି ଗ୍ରହଣ କରିପାରନ୍ତି।

ପ୍ରଶ୍ନ: ଆପଣ ଉଭୟ କବିତା ଏବଂ ଗଳ୍ପରେ ଲେଖନୀ ଚାଳନା କରିଛନ୍ତି, କେଉଁଟିରେ ସୃଷ୍ଟିର ଅଧିକ ଆତ୍ମସନ୍ତୁଷ୍ଟି ପାଆନ୍ତି ?

ଉତ୍ତର. ଗପ ଅବଶ୍ୟ ୮/୧୦ଟି ଲେଖିଛି ଏବଂ ପ୍ରକାଶିତ ମଧ୍ୟ। ତେବେ କବିତା ଲେଖାରେ ଅଧିକ ଗୁରୁତ୍ୱ ଦେଇଛି, ଯଦିଓ ଏ ପର୍ଯ୍ୟନ୍ତ ନିଜକୁ ସମ୍ପୂର୍ଣ୍ଣ ପ୍ରକାଶ କରିବାରେ ଆତ୍ମସନ୍ତୁଷ୍ଟି ମିଳିନି।

ପ୍ରଶ୍ନ: ଏବେ କ'ଣ ଲେଖୁଛନ୍ତି ?

ଉତ୍ତର. କିଛି କିଛି ଲେଖୁଛି ଏବଂ କବିତା ସହିତ ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ ଇତ୍ୟାଦି ସବୁକିଛି ପଢ଼ି ପଢ଼ି ସମୟ ବିତାଉଛି।

ପ୍ରଶ୍ନ: ସାହିତ୍ୟକୁ ନେଇ ଭବିଷ୍ୟତ ଯୋଜନା କିଛି କରିଛନ୍ତି କି ?

ଉତ୍ତର. ଯୋଜନା ତ ବହୁତ ଅଛି। କବିତା ଲେଖିବା ସହିତ ଗୋଟିଏ ଭଲ ଓଡ଼ିଆ ଅଭିଧାନ କରିପାରନ୍ତି କି? କିଛି ପ୍ରାଚୀନ ସାହିତ୍ୟର ପ୍ରାମାଣିକ ସମ୍ପାଦନା କରିପାରନ୍ତି କି ?





# ବ୍ୟକ୍ତିର ବିଚାର ହିଁ ତା'ର ନିଜସ୍ୱ ଧର୍ମ

## ଇନ୍ଦିରା ଦାସ:

ଗଳ୍ପ, କବିତା, ଉପନ୍ୟାସ, ଭ୍ରମଣ କାହାଣୀ ଏପରି କି ଶିଶୁମାନଙ୍କ ପାଇଁ ଲେଖା ସବୁ କ୍ଷେତ୍ରରେ ନିଜର ସ୍ୱାକ୍ଷର ଛାଡିଛନ୍ତି ଇନ୍ଦିରା ଦାସ। ତେବେ ଇନ୍ଦିରା ଅଧିକ ପରିଚିତା ଗାଳ୍ପିକା ହିସାବରେ, କଥା ସାହିତ୍ୟିକା ଭାବରେ। ପୁରୀ ଜିଲ୍ଲାରେ ଜନ୍ମଗ୍ରହଣ କରିଥିବା ଏହି ସାହିତ୍ୟିକା ଏକାଧିକ ଗଳ୍ପ ସଂକଳନର ସ୍ରଷ୍ଟା। 'ସତୀତ୍ୱ', 'ଇତ୍ୟାଦି', 'କିଛି ସତ', 'ମନ ଦର୍ପଣ', 'ରେଳ ଲାଇନର ଏକଡେ ସେକଡେ', 'ଆତ୍ରେୟ ଗୋତ୍ର', 'ଅର୍ଦ୍ଧ ସତ୍ୟ', 'ମୋ ଝରକାରୁ ମିଶ୍ରବାବୁଙ୍କ ଘର' ଆଦି ଗଳ୍ପ ପୁସ୍ତକ ସାଙ୍ଗ କରି ପ୍ରକାଶିତ ହୋଇଛି ତାଙ୍କର ଉପନ୍ୟାସ 'ବହ୍ନିସ୍ନାତା', 'ବନ୍ଧନ ନୁହେଁ ବନ୍ଧୁତ୍ୱ ଚାହେଁ' ଓ 'ନିର୍ବାଣ ଅଭିସାର'। 'କଥା କୌସ୍ତୁଭ' ଭାରତୀୟ କଥା ଓ କାହାଣୀ ନାମରେ ମଧ୍ୟ ପ୍ରକାଶ ପାଇଛି ତାଙ୍କର ଏକ ଶିଶୁ ଗଳ୍ପ ସଂକଳନ ଓ 'ଐଶ୍ୱର୍ଯ୍ୟମୟୀ ଆମେରିକା', 'ଭ୍ରମଣ କାହାଣୀ'। ସାରସ୍ୱତ ସାଧନା ପାଇଁ ଇନ୍ଦିରାଙ୍କୁ ମିଳିଛି ପ୍ରାଣନାଥ ପଟ୍ଟନାୟକ ଫାଉଣ୍ଡେସନ୍, ଓଡ଼ିଶା ପ୍ରଗତି ସଂଘ, କଲିକତା ଦୁର୍ଗାମଧବ ସ୍ମୃତି ପୁରସ୍କାର, ସୁଧନ୍ୟା

ସମ୍ମାନ, ବିଜୟକୃଷ୍ଣ ଗଳ୍ପ ପୁରସ୍କାର, ଅମୃତାୟନ ଗଳ୍ପ ପୁରସ୍କାର, ଓଡିଶା ଲେଖିକା ସଂସଦ ଉପନ୍ୟାସ ପୁରସ୍କାର ଓ ଭୁବନେଶ୍ୱର ପୁସ୍ତକ ମେଳା ଗଳ୍ପ ପୁରସ୍କାର।

ପ୍ରଶ୍ନ: କେବେ ଓ କେମିତି ଘଟିଲା ଆପଣଙ୍କ ସାରସ୍ୱତ ସ୍ଫୁରଣ ?

ଉତ୍ତର. ମୁଁ ଅନ୍ୟ କାହା ସହିତ ମନ ଖୋଲି କଥା କହି ପାରିଲେ ନିଜ ସହ କଥା ହୁଏ କିଛି ଲେଖି ପକାଏ। ବିବାହ ପରେ ଓଡ଼ିଶାରୁ ଦୂରରେ ରହିବାକୁ ପଡ଼ିଲା। ସେତେବେଳେ ଡାଏରିରେ ନିଜ ମନର ସୁଖଦୁଃଖ ଲେଖିଥିଲି ଓ ନିଜେ ନିଜେ ଲେଖାକୁ ପଢ଼ି ନିଜ ସହିତ କଥା ହେଉଥିଲି। ଭାରାକ୍ରାନ୍ତ ମନକୁ ହାଲୁକା କରୁଥିଲି। ଏମିତି ଚାଲିଲା ଅନେକ ବର୍ଷ। ଥରେ ମୋ ଅଜ୍ଞାତରେ ମୋ ସ୍ୱାମୀ ପଢ଼ିଦେଲେ ମୋ ଡାଏରୀ। ତା'ପରେ ହସି ହସି କହିଲେ, ଏତେ ଏନର୍ଜି ଓ ଟାଲେଣ୍ଟ ଅଛି। ନଷ୍ଟ କରି ଦେଉଛ କାହିଁକି ? ଭଲ ଲେଖୁଛ, କିଛି ଗଳ୍ପ କବିତା ଲେଖ। ତା' ପରଠାରୁ କିଛି ପ୍ରଗାଢ ଅନୁଭବ ତଥା ତୀବ୍ର ଅନୁଭୂତି ହେଲେ ତାକୁ କାଗଜ କଲମରେ ଧରି ରଖିବାକୁ ଚେଷ୍ଟା କରିଆସିଛି। ପ୍ରକୃତରେ କହିବାକୁ ଗଲେ ପିଲାଦିନୁ ମୋର ଲେଖିବାକୁ ଆଗ୍ରହ ଥିଲା। କଲେଜରେ ପଢ଼ିବା ବେଳେ କେତୋଟି ଛୋଟ କବିତା ମଧ୍ୟ ଲେଖିଥିଲି। ତା'ପରେ ଗପ ଲେଖିବା ଆରମ୍ଭ କଲି। 'ଅସ୍ତଗାମୀ ସୂର୍ଯ୍ୟ' ମୋର ପ୍ରଥମ ପ୍ରକାଶିତ ଗଳ୍ପ (୧୯୮୩)।

ପ୍ରଶ୍ନ: ସାମାଜିକ ଜୀବନର ଅବକ୍ଷୟ, ମାନବିକ ସମ୍ପର୍କ, ମୂଲ୍ୟବୋଧ ଆଦର୍ଶ ଆଦି ଆପଣଙ୍କ ଗଳ୍ପର ଉପଜୀବ୍ୟ। କେଉଁ ଦିଗରେ ଲେଖନୀ ଚାଳନା କରି ଆତ୍ମସନ୍ତୁଷ୍ଟି ପାଇଛନ୍ତି ?

ଉତ୍ତର. ସାମାଜିକ ଜୀବନର ଅବକ୍ଷୟ, ଆଦର୍ଶ ଓ ମୂଲ୍ୟବୋଧର ଅଧୋଗତି ମୋ ମନରେ ଗଭୀର ଦୁଃଖ ଦିଏ। କିନ୍ତୁ ଜଣେ ସାଧାରଣ ଲେଖିକା କ'ଣ କରିପାରିବ ? ତେବେ ଗୋଟିଏ କଥା ପ୍ରତି ମୁଁ ସବୁବେଳେ ସଚେତନ, ସେ ନାରୀ ହେଉ ବା ପୁରୁଷ, ସେ ମୁନିବ ହେଉ ବା ଭୃତ୍ୟ, ସମସ୍ତେ ନିଜ ନିଜର ଆତ୍ମସମ୍ମାନକୁ ସୁରକ୍ଷିତ ରଖି ମୁଣ୍ଡ ଟେକି ବଞ୍ଚିବା ହିଁ ଜୀବନ। ବ୍ୟକ୍ତିର ବିଚାର ହିଁ ତା'ର ନିଜସ୍ୱ ଧର୍ମ। ମୋ ଉପନ୍ୟାସ 'ବହ୍ନିସ୍ନାତା'ର ନାୟିକା ନୀଳମଣିର ଚରିତ୍ର ମତେ ଆତ୍ମସନ୍ତୁଷ୍ଟି ଦେଇପାରିଛି। 'ବଂଧନ ନୁହେଁ ବଂଧୁତ୍ୱ ଚାହେଁ' ଉପନ୍ୟାସର ନାୟିକା ମୁକ୍ତା ଭାଗ୍ୟର ବିପର୍ଯ୍ୟୟରୁ ଜୀବନସାରା ବହୁବାର ପ୍ରତାରିତ ହେବା ପରେ ତା'ର ଜୀବନ ଦର୍ଶନରେ ପରିବର୍ତ୍ତନ ଆସିଛି। ତା' ଜୀବନର ପ୍ରଥମ ପ୍ରେମିକ ତାକୁ ଯେତେବେଳେ ସ୍ତ୍ରୀ ହିସାବରେ

ଗ୍ରହଣ କରିବାକୁ ଚାହିଁଛନ୍ତି ସେ ଖୁବ୍ ସଂକ୍ଷିପ୍ତ ଭାବରେ ଉତ୍ତର ଦେଇଛି ସେ 'ବଂଧନ ନୁହେଁ ବଂଧୁତ୍ୱ ଚାହେଁ' 'ନିର୍ବାଣ ଅଭିସାର'ର ନାରୀ ଚରିତ୍ରମାନେ ଖୁବ୍ ବଳିଷ୍ଠ ମଧ୍ୟ ସେମାନେ ସମସ୍ତେ ମୋ ଆଦର୍ଶରେ ଗଢ଼ା।

ପ୍ରଶ୍ନ: ପାରିବାରିକ ସମ୍ପର୍କ କ୍ଷେତ୍ରରେ ନିବିଡ଼ତା ତୁଟି ଆସୁଥିବା ବେଳକୁ ଆପଣ କିନ୍ତୁ ଏହି ସମ୍ପର୍କ ଅତ୍ୟନ୍ତ ସୁଦୃଢ଼ ବୋଲି ଅନୁଭବ କରନ୍ତି। ଆପଣ ଏହି ଦିଗଟିକୁ କେମିତି ଏତେ ସଫଳ ଭାବେ ତର୍ଜମା କରିପାରନ୍ତି ?

ଉତ୍ତର. ମୁଁ ପାରିବାରିକ ସମ୍ପର୍କକୁ ଯଥେଷ୍ଟ ମୂଲ୍ୟ ଦିଏ ଏବଂ ଗଭୀର ଭାବେ ବିଶ୍ଳେଷଣ କରି ଦେଖିଥାଏ। ଭାଙ୍ଗି ଯାଇଥିବା ସମ୍ପର୍କ ଯେ ଅନ୍ତର୍ନିହିତ ଭାବେ ଖୁବ୍ ମଜବୁତ ଶିକୁଳିରେ ବନ୍ଧା ତାହା ଅନେକଙ୍କୁ ଅଜଣା। ବାହାରକୁ ଢ଼ିଲା ଦେଖାଯାଉଥିବା ସମ୍ପର୍କ ଭିତରେ ଖୁବ୍ ଶକ୍ତ। ଏହା ମୋର ବ୍ୟକ୍ତିଗତ ଅନୁଭବ ତେଣୁ ତାକୁ ନେଇ ଲେଖିବାରେ ଅସୁବିଧା କେଉଁଠି ?

ପ୍ରଶ୍ନ: 'ଆତ୍ରେୟ ଗୋତ୍ର' ଆପଣଙ୍କ ଅନ୍ୟତମ ସଫଳ ଗଳ୍ପ ସଂକଳନ। ଏହା ମଧ୍ୟ ବହୁ ପ୍ରଶଂସା ଲାଭ କରିଥିଲା। ଏ ସମ୍ପର୍କରେ କ'ଣ କହିବେ ?

ଉତ୍ତର. 'ଆତ୍ରେୟ ଗୋତ୍ର' ମୋର ସବୁ ଝରଣାର ଉତ୍ସ ପରି ଅନ୍ୟ ଏକ ଉତ୍ସ। ଉତ୍ସଟି କାଳ୍ପନିକ ନୁହେଁ ସତ୍ୟ। ମୋର ଅଧିକାଂଶ ଗଳ୍ପ ସତ୍ୟ ଉପରେ ଆଧାରିତ, କଳ୍ପନା ଥାଏ କେବଳ ସ୍ଥାନ ଓ କାଳରେ। 'ଆତ୍ରେୟ ଗୋତ୍ର' ୧୯୯୮ରେ ପୂଜାସଂଖ୍ୟା ଅମୃତାୟନରେ ପ୍ରକାଶିତ ହୋଇଥିଲା। ଗଳ୍ପଟି ପଢ଼ି ଅନେକ ଲେଖକ ଓ ପାଠକ ମତେ ପତ୍ର ଲେଖିଥିଲେ ଓ ଫୋନ କରିଥିଲେ। ଏହା ଯେ ପାଠକମାନଙ୍କ ମନକୁ ଛୁଇଁ ପାରିଛି ଏହା ମୋ ପାଇଁ ଥିଲା ମହାର୍ଘ ପୁରସ୍କାର।

ପ୍ରଶ୍ନ: ଆପଣଙ୍କ ଅଧିକାଂଶ ଗଳ୍ପରେ ନାରୀ ଚରିତ୍ରମାନେ ଉଚ୍ଚବର୍ଗର। ଅଭିଯୋଗ ଉଠେ ଆପଣ ଜୀବନ ଜଞ୍ଜାଳରେ ଜର୍ଜରିତ ନାରୀମାନଙ୍କ ବିଷୟରେ କାଁ ଭାଁ ଉଲ୍ଲେଖ କରନ୍ତି। ଏ ସମ୍ପର୍କରେ କ'ଣ କହିବେ ?

ଉତ୍ତର. ଆପଣ ଯାହା କହିଛନ୍ତି ଅନେକ ପାଠକ ମଧ୍ୟ ସେଇ କଥା କେବେ କେବେ ପଚାରନ୍ତି। ମୋର ଅଧିକାଶଂ ଗଳ୍ପରେ କାହିଁକି ନାରୀ ଚରିତ୍ରମାନେ ଉଚ୍ଚବର୍ଗର ? ଆପଣମାନଙ୍କର ଏ ଆକ୍ଷେପ ପୂର୍ଣ୍ଣମାତ୍ରାରେ ନ ହେଲେ ମଧ୍ୟ ଅନେକ ପରିମାଣରେ ସତ୍ୟ। ସତ୍ୟ କହୁଛି, ଗୁଡାଏ ମିଥ୍ୟା କଳ୍ପନା କରି ଘଟଣା ସହିତ ପାରିପାର୍ଶ୍ୱିକ ଅବସ୍ଥାର ମେଳ ନ ଥାଇ ଗଳ୍ପ ଲେଖିବାରେ

ମୋର ଆଦୌ ଆଗ୍ରହ ନାହିଁ। ମୁଁ ଯାହା ଲେଖିଥାଏ ତାହା ଅନୁଭବ କରିଥାଏ। ତାକୁ ହିଁ ପାଠକ ନିକଟରେ ପହଞ୍ଚେଇବାକୁ ଚେଷ୍ଟାକରେ। ତଥାପି ମୋର ଅନେକ ଗଳ୍ପ ନାରୀ ନିର୍ଯାତନା, ଅଳ୍ପ ସୁବିଧା ସୁଯୋଗପ୍ରାପ୍ତ ଓ ଦୁଃସ୍ଥ ନାରୀ ଓ ବାଳିକାମାନଙ୍କ ବିଷୟରେ ବେଶ୍ କିଛି ଗଳ୍ପ ଲେଖିଛି ।

ପ୍ରଶ୍ନ: ଆପଣଙ୍କ ଅନେକ ଲେଖା ରେଳ ସମ୍ପର୍କରେ କାହିଁକି ?

ଉତ୍ତର. ମୁଁ ରେଳ ଜୀବନ ଉପରେ ଅଧିକ ଗଳ୍ପ ଲେଖିଛି, ମୋ ହିସାବରେ ଚାଳିଶ ପାଖାପାଖି। ମୋ ସ୍ୱାମୀ ରେଳ ବିଭାଗରେ ଚାକିରି କରୁଥିଲେ ଏବଂ ମୁଁ ଜୀବନରେ ତିରିଶ ବର୍ଷରୁ ଊର୍ଦ୍ଧ୍ୱ ସମୟ ସେହି ପରିବେଶରେ କଟାଇଛି। କହିବାକୁ ଗଲେ ସେଇଟା ହିଁ ମୋ ଜୀବନ। ତେଣୁ ରେଳ ସମ୍ପର୍କିତ ଗଳ୍ପ ଲେଖିବା ମୋ ପାଇଁ ଅତ୍ୟନ୍ତ ସ୍ୱାଭାବିକ।

ପ୍ରଶ୍ନ: ଆପଣ କବିତା ବି ଲେଖନ୍ତି। ତେବେ ଗଳ୍ପ ତୁଳନାରେ ବହୁତ କମ୍। କାହିଁକି, ଯଦିଓ କବିତାରେ ମଧ୍ୟ ଆପଣଙ୍କ ଲେଖନି ବେଶ୍ ପରିପକ୍ୱ !

ଉତ୍ତର. ପ୍ରକୃତରେ ମୁଁ ବହୁତ କମ୍ କବିତା ଲେଖିଛି ଏବଂ ଯାହାସବୁ ଲେଖିଛି କେବଳ କବିତା ପାଠୋତ୍ସବରେ ଆବୃତ୍ତି କରିବା ପାଇଁ। କଥା କ'ଣ କି ଏକ ସମୟରେ ଦୁଇଟି କାମ କରି ନ ପରିବା ହେଉଛି ମୋର ବଡ ଦୁର୍ବଳତା ?

ପ୍ରଶ୍ନ: କବିତା ଓ ଗଳ୍ପ ମଧ୍ୟରୁ କେଉଁଥିରେ ମନ କଥା କହିବା ସହଜ ହୁଏ ବୋଲି ଭାବନ୍ତି ?

ଉତ୍ତର. ଗଳ୍ପ, କବିତା, ନାଟକ, ଉପନ୍ୟାସ ଏସବୁ ସାହିତ୍ୟର ଭିନ୍ନ ଭିନ୍ନ ମାଧ୍ୟମ – ମୋ ବିଚାରରେ ଭିନ୍ନ ଭିନ୍ନ ବେଶ। ଯିଏ ଯେଉଁ ବେଶରେ ନିଜକୁ ଭଲ ଭାବେ ପ୍ରକାଶ କରିପାରେ ସେ ସେହି ବେଶ ବା ମାଧ୍ୟମକୁ ଅଦରି ନିଏ।

ପ୍ରଶ୍ନ: ଆପଣଙ୍କ ଉପନ୍ୟାସ 'ବହ୍ନିସ୍ନାତା'ରେ ଓଡିଆ ବ୍ରାହ୍ମଣ ପରିବାରର ଝିଅ ନୀଳମଣିକୁ ଜୀବନରେ ବିଭିନ୍ନ ପରିସ୍ଥିତିରେ ବହ୍ନିସ୍ନାତା ହେବାକୁ ପଡ଼ିଛି। ଅତି ସଫଳ ଭାବରେ ଆପଣ ଏହି ଉପନ୍ୟାସକୁ ରଚନା କରିଛନ୍ତି, ଏ ସମ୍ପର୍କରେ କ'ଣ କହିବେ ?

ଉତ୍ତର. ବହ୍ନିସ୍ନାତା ମୁଖ୍ୟ ଚରିତ୍ର ନୀଳମଣି। ପୁରୀ ଜିଲ୍ଲାର ଏକ ଧନୀ ବ୍ରାହ୍ମଣ ପରିବାରର କନ୍ୟା। ନୀଳମଣି ବା ନୀଳା ଏକ କାଳ୍ପନିକ ଚରିତ୍ର ହେଲେ ମଧ୍ୟ ସେ ସମ୍ପୂର୍ଣ୍ଣ

ସତ୍ୟ। ମୋ ପିଲାଦିନର କିଛି ସମୟ ଗାଁରେ କଟିଥିଲା। ମୋ ସ୍ମୃତିରେ ନୀଳା ପରି ନାରୀ ଆଜି ବି ଜୀବିତ। ମୁଁ ସେମାନଙ୍କୁ ଅତି ନିକଟରୁ ଦେଖିଛି। ବହ୍ନିସ୍ନାତାରେ କୌଣସି ଚରିତ୍ରକୁ ଅତିରଞ୍ଜିତ କରାଯାଇ ନାହିଁ। ପୁରୀ ଜିଲ୍ଲାର କେତୋଟି ବ୍ରାହ୍ମଣ ଶାସନ ଏହାର ପୃଷ୍ଠଭୂମି। ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ସେଠାକାର ନୈତିକ ଓ ସାମାଜିକ ଚରିତ୍ର ଚିତ୍ରଣ କରିବାକୁ ମୁଁ ପ୍ରୟାସ କରିଛି ଓ ତା' ସହିତ ସ୍ୱାଧୀନତା ପୂର୍ବର ଓ ପରବର୍ତ୍ତୀ ଓଡିଶାର ଚିତ୍ର ଦେବାକୁ ଚେଷ୍ଟା କରିଛି ।

ପ୍ରଶ୍ନ: ଆପଣ ଶିଶୁ ସାହିତ୍ୟ ଓ ଭ୍ରମଣ କାହାଣୀ ମଧ୍ୟ ଲେଖିଛନ୍ତି। ଆଉ କିଛି ଲେଖିବାର ଇଚ୍ଛା ଅଛି କି ?

ଉତ୍ତର. ଆମ ଶିଶୁ ସାହିତ୍ୟ ବଡ଼ ଅବହେଳିତ। ଭାବିଛି କିଛି ପୌରାଣିକ ଗଳ୍ପକୁ ନେଇ ଛୋଟିଆ ବହିଟିଏ କରିବି। ଆଜିକାଲି ଟ୍ରାଭେଲ ଗାଇଡ୍‌ରେ ଏତେ ସୁନ୍ଦର ଭାବରେ ଭ୍ରମଣ କାହାଣୀ ବାହାରୁଛି ଯେ ସେ ଦିଗକୁ ଛୁଇଁବାକୁ ଡ଼ର ଲାଗୁଛି। କିନ୍ତୁ ମୁଁ ଯେତେବେଳେ 'ଐଶ୍ୱର୍ଯ୍ୟମୟୀ ଆମେରିକା' ଲେଖିଥିଲି ତାହା ପାଠକ ମହଲରେ ଖୁବ୍ ଆଦୃତ ହୋଇଥିଲା।

ପ୍ରଶ୍ନ: ସାହିତ୍ୟକୁ ନେଇ ଅବଶୋଷ ରହିଯାଇଛି କି ?

ଉତ୍ତର. ନା, ସେମିତି କିଛି ଅବଶୋଷ ନାହିଁ। ତେବେ ବହୁତ ଉପନ୍ୟାସ ଲେଖିବାକୁ ଇଚ୍ଛା, ଯଥେଷ୍ଟ ଲେଖିପାରୁ ନ ଥିବାରୁ ବେଳେ ବେଳେ ଦୁଃଖ ହୁଏ।





# ପାଠକ ସଂଖ୍ୟା
# ଲୋକସଂଖ୍ୟା ଦୃଷ୍ଟିରୁ କମି କମି ଯାଉଛି

## ଶ୍ରୀ ବୈଷ୍ଣବ ଚରଣ ପରିଡା:

ବିଶ୍ୱ ସାହିତ୍ୟର ବିଖ୍ୟାତ ସାରସ୍ୱତ କୃତିରାଜିକୁ ଅନୁବାଦ କରି ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗକୁ ଯେଉଁମାନେ ସମୃଦ୍ଧ ଓ ସଂପ୍ରସାରିତ କରିଛନ୍ତି, ସେମାନଙ୍କ ମଧ୍ୟରେ ଶ୍ରୀ ବୈଷ୍ଣବ ଚରଣ ପରିଡା ହେଉଛନ୍ତି ଅନ୍ୟତମ। ବିଶେଷକରି ସମୃଦ୍ଧ ରୁଷ୍ ସାହିତ୍ୟର ବିଶ୍ୱବନ୍ଦିତ ଲେଖକମାନଙ୍କର ରଚନା ସମୂହକୁ ଓଡ଼ିଆ ପାଠକମାନଙ୍କ ନିକଟରେ ପରିଚିତ କରାଇବା ଦିଗରେ ତାଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ। ମାର୍କସୀୟ ଦର୍ଶନ, ଅର୍ଥନୀତି, ଇତିହାସ, ସମାଜବିଜ୍ଞାନ ସମେତ ପୁଷ୍କିନ୍, ଚେଖଭ୍, ଦସ୍ତୋଭେସ୍କି, ଟଲଷ୍ଟୟ, ଗର୍କୀ, ଲେଭ୍ରେନୋଭ୍, ମାୟେକୋଭସ୍କି, ସୋଲୋଖବ, ପୋଲେଭୋଇ, ଆଇତ୍ମାତଭ ପ୍ରମୁଖ ରୁଷ୍ ଓ କବିତାବଳୀ ସମେତ ଅଶିଟିରୁ ଊର୍ଦ୍ଧ୍ୱ ପୁସ୍ତକର ଅନୁବାଦ କରି ଶ୍ରୀ ପରିଡା ତାଙ୍କ ଅନୁବାଦ ପରାକାଷ୍ଠାର ପରିଚୟ ଦେଇଛନ୍ତି। ସଂପ୍ରତି ଓଡ଼ିଆ ଭାଷାର ସୁରକ୍ଷା ପାଇଁ ରାଜ୍ୟବ୍ୟାପୀ ଆନ୍ଦୋଳନ ଜାରୀ ରଖିଛନ୍ତି। ତାଙ୍କ ସହ ହୋଇଥିବା ଆଳାପରୁ କିୟଦଂଶ।

ପ୍ରଶ୍ନ: ସାହିତ୍ୟ ଓ ରାଜନୀତି କେଉଁଟିକୁ ପ୍ରଥମେ ଆସିଥିଲେ ?

ଉତ୍ତର: ମୁଁ ପିଲା ଦିନରୁ ସମାଜସେବା ସହିତ ସାହିତ୍ୟ ସାଧନା ବି କରି ଆସିଛି । ମୁଁ ଯେଉଁ ହାଇସ୍କୁଲରେ ପଢୁଥିଲି (୧୯୫୫) ତାହା ସରକାରୀ ସ୍ୱିକୃତୀ ପାଇପାରୁନଥିଲା । ଏହି ସ୍କୁଲର ଉନ୍ନତି ପାଇଁ ତତ୍‌କାଳୀନ ପରିଚାଳନା କମିଟି ଥିଲା ମୁଖ୍ୟ ଅନ୍ତରାୟ ସେହି କମିଟିର ପରିବର୍ତ୍ତନ ପାଇଁ ମୁଁ ପ୍ରଥମେ ଦଶମ ଶ୍ରେଣୀରେ ପଢ଼ିବାବେଳେ ଛାତ୍ରମାନଙ୍କୁ ନେଇ ଏକ ଧର୍ମଘଟ କଲି। ଏହି ଆନ୍ଦୋଳନ ସାତ ଦିନ ଚାଲିଥିଲା । ସେହି ସ୍କୁଲର ପୂର୍ଣ୍ଣତା ପାଇଁ ମୁଁ ଗୋଟିଏ ବର୍ଷ ପାଠ ପଢ଼ା ଛାଡି ଗାଁ ଗାଁ ବୁଲି ଲୋକଙ୍କୁ ଏକାଠି କରି ଚାନ୍ଦାମାଗି ସ୍କୁଲର ସ୍ୱୀକୃତି କରାଇଥିଲି। ଏହା ମୋ ପାଇଁ ଏକ ପ୍ରେରଣା ଥିଲା ।

ପ୍ରଶ୍ନ : ଏହା ପରେ ପରେ ଆପଣ କଲିକତା ଚାଲିଯାଇଥିଲେ ଏବଂ ସେଠାରେ ମଧ୍ୟ ଛାତ୍ର ଆନ୍ଦୋଳନ ଭଳି ରାଜନୈତିକ କାର୍ଯ୍ୟକଳାପରେ ମାତି ରହିଥିଲେ।

ଉତ୍ତର: ଗାଁ ହାଇସ୍କୁଲରୁ ଦଶମ ପାଶ୍ କଲା ପରେ ମୁଁ କଲିକତା ବଙ୍ଗବାସୀ କଲେଜରେ ଅଧ୍ୟୟନ କଲି ଏବଂ ସେଠାରେ ଛାତ୍ର ଆନ୍ଦୋଳନରେ ସାମିଲ ହେଲି । ପରେ ପଶ୍ଚିମ ବଂଗ ଛାତ୍ର ସଂଘର କାର୍ଯ୍ୟକାରୀ କମିଟିକୁ ନିର୍ବାଚିତ ହେଲି। ପାଠପଢ଼ାରେ ମଧ୍ୟ ମୁଁ ଆଗୁଆ ଥିଲି । ପ୍ରାୟତଃ କ୍ଲାସ୍‌ରେ ପ୍ରଥମ ହେଉଥିଲି । ଓଡିଆ ଭାଷା ଏବଂ ସାହିତ୍ୟ ପ୍ରତି ମୋର ଅନୁରାଗ ବହୁତ ଥିଲା । ସ୍କୁଲରେ ପଢ଼ିଲାବେଳେ କବିତା ଏବଂ ପ୍ରବନ୍ଧ ଲେଖିବା ଆରମ୍ଭ କରିଥିଲି। ଦଶମ ଶ୍ରେଣୀରେ ପଢ଼ିଲାବେଳେ କଲିକତାରୁ ପ୍ରକାଶିତ 'ଆସନ୍ତାକାଲି'ରେ ମୋର ପ୍ରଥମ କବିତା ପ୍ରକାଶ ପାଇଥିଲା ଏବଂ ପରେ ପରେ ଏହି ସମୟର ସମାବେଶ, ପ୍ରଜାତନ୍ତ୍ର, ନବରବି, ସମାଜ ଆଦି ପତ୍ରିକାରେ ମଧ୍ୟ ମୋ ଲେଖା ପ୍ରକାଶିତ ହେବାରେ ଲାଗିଲା। କଲିକତାରେ ରହଣୀ ସମୟରେ ସେଠାକାର ଓଡିଆ ପତ୍ରପତ୍ରିକାମାନଙ୍କ ସହ ସଂପର୍କ ଖୁବ୍ ନିବିଡ ହୋଇଉଠିଲା । କଲିକତାରୁ ମୁଁ ଏବଂ ମୋର ବନ୍ଧୁମାନଙ୍କ ଦ୍ୱାରା ପ୍ରକାଶିତ 'ପ୍ରତିନିଧି' ପତ୍ରିକାଟିର ଜନପ୍ରିୟତା ଖୁବ୍‌ଥିଲା । କଲିକତାର ଓଡିଆମାନଙ୍କ ମଧ୍ୟରେ ଓଡିଆ ଭାଷା ଓ ସଂସ୍କୃତିକୁ ବଞ୍ଚାଇବା ପାଇଁ ପଶ୍ଚିମବଙ୍ଗ ଓଡିଆ ନାଗରିକ ସଭା ଏବଂ ପଶ୍ଚିମବଙ୍ଗ ଓଡିଆ ଛାତ୍ରସଂଘ ପ୍ରତିଷ୍ଠା କରି କାର୍ଯ୍ୟ କରୁଥିଲି । ପରବର୍ତ୍ତୀ ସମୟରେ କଲିକତାରୁ ପ୍ରକାଶ ପାଉଥିବା 'ସୋଭିଏତ୍ ଦେଶ' ପତ୍ରିକାରେ ଯୋଗ ଦେଇଥିଲି। ଏହି ସମୟରେ ଅନୁବାଦ ସାହିତ୍ୟ ପ୍ରତି ମୋର ଅନୁରାଗ ବୃଦ୍ଧି ପାଇଥିଲା । ସାହିତ୍ୟିକ କାର୍ଯ୍ୟକଳାପ

ସହିତ ପଶ୍ଚିମ ବଂଗର ବାମପନ୍ଥୀ ଆନ୍ଦୋଳନରେ ମୁଁ କ୍ରମଶଃ ସକ୍ରିୟ ହୋଇଥିଲି ଓ ବହୁବାର କାରାବରଣ କରିଥିଲି।

ପ୍ରଶ୍ନ: କଲିକତାରେ ପ୍ରାୟ ପନ୍ଦର ବର୍ଷ କାଳ ରହଣି ପରେ ଆପଣ ଚାଲି ଯାଇଥିଲେ ମସ୍କୋ। ସେଠାରେ ରହଣୀ କାଳରେ ମଧ୍ୟ ଆପଣ ବିଭିନ୍ନ ଆନ୍ତର୍ଜାତୀୟ ଆନ୍ଦୋଳନ ସହିତ ଅନେକ କାର୍ଯ୍ୟ କରିଛନ୍ତି, ସେ ସଂପର୍କରେ କିଛି କୁହନ୍ତୁ ?

ଉତ୍ତର: ହଁ, ମସ୍କୋରେ ଅବସ୍ଥାନ କାଳରେ ସାମ୍ବାଦିକତା କରିବା ସାଙ୍ଗେ ସାଙ୍ଗେ ରୁଷ୍ ସାହିତ୍ୟର ବହୁ ବିଶ୍ୱବିଖ୍ୟାତ ସାହିତ୍ୟକୁ ଓଡିଆରେ ଅନୁବାଦ କରିଥିଲି ଏବଂ ତତ୍‌ସହିତ ଓଡିଆ ସାହିତ୍ୟର କାଳଜୟୀ ଉପନ୍ୟାସ 'ମାଟିର ମଣିଷ' ଓ ଅନ୍ୟାନ୍ୟ ଓଡିଆ ଲେଖକଙ୍କ ୨୮ଟି ଗଳ୍ପକୁ ଋଷରେ ଅନୁବାଦ କରି ପ୍ରକାଶ କରିଥିଲି। ମୋର ଅନୁବାଦ ପୁସ୍ତକଗୁଡିକ ମସ୍କୋରୁ ପ୍ରକାଶ ପାଉଥିଲା। ଏଥିପାଇଁ ମସ୍କୋର ପ୍ରଗତି ପ୍ରକାଶନ ଓ ରାଦୁଗା ପ୍ରକାଶନ ପକ୍ଷରୁ ଓଡିଆ ପ୍ରେସ୍ ମସ୍କୋରେ ପ୍ରତିଷ୍ଠା କରାଇଥିଲି। ବହୁତ ଋଷ ଛାତ୍ରଛାତ୍ରୀଙ୍କୁ ଓଡିଆ ଭାଷା ସାହିତ୍ୟ ଶିଖାଇଥିଲି। ଏତଦ୍‌ବ୍ୟତୀତ ମସ୍କୋରେ ଓଡିଶୀ ନୃତ୍ୟ ଶିକ୍ଷା ପାଇଁ ଓଡିଶୀ କଳାକେନ୍ଦ୍ର ମଧ୍ୟ ପ୍ରତିଷ୍ଠା କରାଇଥିଲି। ଏଥିରେ ମୁଁ ଏବଂ ମୋ ସହଧର୍ମୀଣୀ ଡଃ ସ୍ୱର୍ଣ୍ଣଲତା ପରିଡା ଲାଗିଥିଲୁ। ଖୁବ୍ ଖୁସୀ ଲାଗୁଛି ଏବେ ଋଷିଆରେ ଓଡିଶୀ ନୃତ୍ୟର ଜନପ୍ରିୟତା ବୃଦ୍ଧିପାଇବା ଦେଖି। ଏବେ ବହୁ ଋଷୀୟ ଯୁବକ ଯୁବତୀ ଓଡିଶୀ ନୃତ୍ୟ ଶିଖୁଛନ୍ତି 'ଓଡିଶୀ କଳାକେନ୍ଦ୍ର' ମାଧ୍ୟମରେ। ଋଷିଆରେ ରହିବା ବେଳେ ଏହି ସମୟରେ ପୃଥିବୀର ବହୁଦେଶ ବୁଲିବା ଏବଂ ବହୁ ଆନ୍ତର୍ଜାତୀୟ ସମ୍ମିଳନୀ ଓ ଆଲୋଚନା ଚକ୍ରରେ ଯୋଗ ଦେବା ସୁଯୋଗ ମୋତେ ମିଳିଥିଲା। ୧୯୮୯ ଶେଷ ବେଳକୁ ମୁଁ ଓଡିଶାକୁ ଫେରିଆସିଲି।

ପ୍ରଶ୍ନ: ଏଯାବତ୍ ଆପଣ କେତୋଟି ପୁସ୍ତକ ଓଡିଆରୁ ଋଷ ଭାଷାକୁ ଏବଂ ଋଷରୁ ଓଡିଆ ଭାଷାକୁ ଅନୁବାଦ କରିସାରିଛନ୍ତି ?

ଉତ୍ତର: ମୋର ଏଯାବତ୍ ୭୨ରୁ ଅଧିକ ସ୍ୱ-ରଚିତ ଏବଂ ଅନୁଦିତ ପୁସ୍ତକ ପ୍ରକାଶ ପାଇଛି। କାଳିନ୍ଦିଚରଣ ପାଣଇଗ୍ରାହୀଙ୍କ ମାଟିର ମଣଇଷ ଓ ୨୮ଟି ଓଡଇଆ ଗଳ୍ପ ମଧ୍ୟ ଋଷ ଭାଷାରେ ପ୍ରକାଶ ପାଇଛି।

ପ୍ରଶ୍ନ: ଆପଣ ମାର୍କ୍ସବାଦ ଉପରେ ଅନେକ ଅନୁବାଦ କରିଛନ୍ତି, ମାର୍କ୍ସବାଦରେ ବିଶ୍ୱାସ କରୁଥିବା ବୈଷ୍ଣବ ପରିଡା ବିଜେଡି ଭଳି ଏକ ଆଞ୍ଚଳିକ ଦଳ ସହ କିପରି ରହିଲେ ?

ଉତ୍ତର: ନିଜର ନୀତି ଆଦର୍ଶକୁ ଲୋକଙ୍କ ମଧ୍ୟରେ କାର୍ଯ୍ୟକାରୀ କରିବା ପାଇଁ ଏକ ମାଧ୍ୟମର ଆବଶ୍ୟକତା ରହିଛି । ଅବସ୍ଥା ଦୃଷ୍ଟିରୁ ମାକ୍ସବାଦୀମାନଙ୍କୁ ଧର୍ମନିରପେକ୍ଷ ବୁର୍ଜୁଆ ଦଳମାନଙ୍କ ମଧ୍ୟରେ କାର୍ଯ୍ୟ କରିବାକୁ ପଡିଥାଏ ।

ପ୍ରଶ୍ନ: ସାହିତ୍ୟ ଏବଂ ରାଜନୀତି କେଉଁଥିରେ ଆପଣ ସଫଳ ?

ଉତ୍ତର: ଉଭୟକୁ ଜୀବନରେ ଗୁରୁତ୍ୱ ଦେବାକୁ ଉଦ୍ୟମ କରିଛି । କିନ୍ତୁ ରାଜନୀତି ଏକ ଏଭଳି ନିଶା ଯେଉଁଥିରେ ଆପଣ ମଜିଗଲେ ସେଥିରୁ ମୁକ୍ତ ହେବା ବହୁତ କଷ୍ଟକର । ଯେଉଁମାନେ ନିର୍ଦ୍ଦିଷ୍ଟ ଆଦର୍ଶ ଓ ମୂଲ୍ୟବୋଧକୁ ନେଇ ସମାଜରେ ପରିବର୍ତ୍ତନ ଆଣିବା ପାଇଁ ସଂଗ୍ରାମ କରୁଛନ୍ତି ସେମାନଙ୍କ ପାଇଁ ରାଜନୀତିରୁ ମୁକ୍ତ ହେବା ସମ୍ଭବ ନୁହେଁ । କିନ୍ତୁ ସାହିତ୍ୟର ଆକର୍ଷଣ ସବୁବେଳେ ମୋ ମନ ଓ ହୃଦୟକୁ ଆଚ୍ଛନ୍ନ କରିଥାଏ । ବିଭିନ୍ନ ସାମାଜିକ, ରାଜନୈତିକ ସମସ୍ୟାକୁ ନେଇ ପ୍ରବନ୍ଧ ଲେଖାଠାରୁ ଆରମ୍ଭ କରି ମଝିରେ ମଝିରେ ଅନୁବାଦ କରିଚାଲିଛି ।

ପ୍ରଶ୍ନ: ଆପଣ ପୁରା ବିଶ୍ୱ ସାହିତ୍ୟକୁ ଅନୁଧ୍ୟାନ କରିଛନ୍ତି ତେବେ କେଉଁ ସାହିତ୍ୟ ଆଗୁଆ ବୋଲି ଭାବୁଛନ୍ତି ?

ଉତ୍ତର: ବିଶ୍ୱବିଖ୍ୟାତ ସାହିତ୍ୟିକମାନଙ୍କର ରଚନାବଳୀ ଅଧ୍ୟୟନ କରିବାର କିଛି ସୁବିଧା ମୋତେ ମିଳିଛି । ଏବଂ ସେହି ମାନଙ୍କର ଲେଖା ମୋର ସାହିତ୍ୟିକ ଜୀବନ ତଥା ରାଜନୈତିକ ଦୃଷ୍ଟିକୋଣକୁ ସର୍ବଦା ପ୍ରଭାବିତ କରିଛି । ମଣିଷକୁ ଦୁଃଖ ଦୈନ୍ୟ ଶୋଷଣ କବଳରୁ ମୁକୁଳାଇ ଏକ ସ୍ୱର୍ଣ୍ଣାଭ ଭବିଷ୍ୟତ ଆଡକୁ ନେଇଯିବା ପାଇଁ ବିଶ୍ୱସାହିତ୍ୟର ଆହ୍ୱାନକୁ ମୋ ଜୀବନ ଓ ଆଦର୍ଶରେ ପ୍ରତିଫଳିତ କରିବାକୁ ଉଦ୍ୟମ କରିଛି । ସେଥିପାଇଁ ଋଷ ସାହିତ୍ୟର ପ୍ରଗତିଶୀଳ ପୁସ୍ତକଗୁଡିକୁ ଓଡିଆରେ ଅନୁବାଦ କରି ଓଡିଆ ପାଠକମାନଙ୍କ ପାଖରେ ପହଞ୍ଚାଇବାକୁ ଉଦ୍ୟମ କରିଛି । ଏହିସବୁ ଲେଖା ଓଡିଆ ସାହିତ୍ୟକୁ କିଞ୍ଚିତ ସମୃଦ୍ଧ କରିଛି ବୋଲି ମୋର ବିଶ୍ୱାସ ।

ପ୍ରଶ୍ନ: ଓଡିଆ ସାହିତ୍ୟର ଅଭାବ କେଉଁଠି ରହିଛି ?

ଉତ୍ତର: ବିଶ୍ୱ ସାହିତ୍ୟର ପ୍ରଖ୍ୟାତ ସାହିତ୍ୟକୁ ଅଧ୍ୟୟନ କଲାବେଳେ ଆମ ଓଡିଆ ସାହିତ୍ୟର ଅଗ୍ରଗତି ସଂପର୍କରେ ସମ୍ୟକ୍ ଧାରଣା ସଷ୍ଟି ହୋଇଥାଏ । ଆମ ଭାଷା ଓ ସାହିତ୍ୟ ହେଉଛି ଅତି ପ୍ରାଚୀନ ଓ ସମୃଦ୍ଧଶାଳୀ । କିନ୍ତୁ ଆଧୁନିକ ଓଡିଆ ସାହିତ୍ୟକୁ ଏହି ବିଶ୍ୱସ୍ତରରେ ପହଞ୍ଚିବାକୁ ହେଲେ ଆମକୁ ଆହୁରୀ ବହୁତ ସମୟ ଓ ସାଧନା କରିବାକୁ ହେବ ।

ପ୍ରଶ୍ନ: ଆପଣ ବାରମ୍ବାର ଦଳବଦଳାଉଛନ୍ତି କାହିଁକି ?

ଉତ୍ତର: ଛାତ୍ର ଜୀବନରୁ ନିର୍ଦ୍ଦିଷ୍ଟ ଆଦର୍ଶ ଓ ନୀତିକୁ ନେଇ ସଂଗ୍ରାମ କରିଆସିଛି ଏବଂ ସେହି ନୀତି ଆଦର୍ଶରୁ ଯେଉଁ ଦଳ ପଥଭ୍ରଷ୍ଟ ହୋଇଛି ସେ ଦଳ ମୁଁ ତ୍ୟାଗ କରିବାକୁ ବେଳେ ବେଳେ ନିଷ୍ପତ୍ତି ନେଇଛି । ମୁଁ କେବେ ମୋ ଜୀବନରେ ଲକ୍ଷ୍ୟଭ୍ରଷ୍ଟ ହୋଇନି ଏବଂ ନୀତି ଆଦର୍ଶକୁ ବଳି ଦେଇ ରାଜନୀତିର ସୁବିଧା ପଛରେ ଧାଇଁନାହିଁ । ମୁଁ ଦଳବଦଳ କରିଛି ମୋର ନୀତି ଆଉ ଆଦର୍ଶକୁ ବଞ୍ଚାଇବାକୁ । ପୃଥିବୀରେ ନିଜର ନୀତି ଆଦର୍ଶକୁ ବଞ୍ଚାଇବା ପାଇଁ ଅନେକ ରାଜନୀତିଜ୍ଞଙ୍କୁ ଦଳବଦଳ କରିବାକୁ ପଡିଥାଏ । ଭାରତ ରାଜନୀତିରେ ଡଃ ରାମ ମନୋହର ଲୋହିଆ ଓ ଜୟପ୍ରକାଶଙ୍କୁ ଏବଂ ଓଡିଶା ରାଜନୀତିରେ ହରେକୃଷ୍ଣ ମହତାବ, ନନ୍ଦିନୀ ଶତପଥୀ, ବିଜୁ ପଟ୍ଟନାୟକଙ୍କ ଭଳି ଅନେକଙ୍କୁ ଦଳବଦଳାଇବାକୁ ପଡିଛି ।

ପ୍ରଶ୍ନ: ରାଜନୈତିକ ଦୀର୍ଘ ସଂଗ୍ରାମ ପରେ ଆପଣ କ୍ଷମତାକୁ ଆସିଲେ ?

ଉତ୍ତର: ମୁଁ ଯେଉଁ ନୀତି ଆଦର୍ଶରେ ବିଶ୍ୱାସ କରେ ସେଥିରେ ବର୍ତ୍ତମାନ ଭଳି କ୍ଷମତା ହାସଲ ମୁଖ୍ୟ ଉଦ୍ଦେଶ୍ୟ ନୁହେଁ । ମୁଁ ଜଣେ ସାଂସଦ ହିସାବରେ ଯେତିକି ସୁବିଧା ପାଇଛି ତାହା କ୍ଷମତାର ଉପଭୋଗ ନୁହେଁ ବରଂ ସେହି କ୍ଷମତା ଦ୍ୱାରା ଲୋକଙ୍କର ସେବା ବା ଦେଶର ସେବା କେତେ ମୁଁ କରିପାରିବି ଏବଂ ଦେଶ ସମାଜରୁ ଦୁର୍ନୀତି ଲୋପ କରିବା ପାଇଁ ସଂଗ୍ରାମ କରିପାରିବି ତାହା ମୋର ଲକ୍ଷ୍ୟ ।

ପ୍ରଶ୍ନ: ନିଜ ଜନ୍ମ ମାଟିରୁ ଦୀର୍ଘ ବର୍ଷ ଦୂରେଇ ରହି ଆପଣ କ୍ଷତିଗ୍ରସ୍ତ ହୋଇଛନ୍ତି କି ?

ଉତ୍ତର: ମୁଁ ମୋ ଜୀବନର ପନ୍ଦର ବର୍ଷ ଗାଁରେ, ତା'ପରେ ପନ୍ଦର ବର୍ଷ କଲିକତାରେ, ତା'ପରେ ପନ୍ଦର ବର୍ଷ ମସ୍କୋରେ କଟାଇଛି । କଲିକତା ଏବଂ ମସ୍କୋ ରହଣୀ ମୋ ଜୀବନର ଦୃଷ୍ଟିକୋଣ ଓ ଆଦର୍ଶ ଉପରେ ଗଭୀର ପ୍ରଭାବ ପକାଇଥିଲା । ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ, ବୈଜ୍ଞାନିକ ଦୃଷ୍ଟିକୋଣ ଲାଭ କରିବାଠାରୁ ଆରମ୍ଭ କରି ସଂକୀର୍ଣ୍ଣ ଜାତିବାଦ, ଅନ୍ଧବିଶ୍ୱାସ, ଧର୍ମୀୟ କୁସଂସ୍କାରଠାରୁ ଊର୍ଦ୍ଧ୍ୱରେ ରହିବାକୁ ମୋତେ ଶିଖାଇଥିଲା । ଜୀବନର ସଂକୀର୍ଣ୍ଣ ମନୋଭାବକୁ ଦୂର କରି ଏକ ଧର୍ମ ନିରପେକ୍ଷ ଓ ବୈଜ୍ଞାନିକ ଦୃଷ୍ଟିକୋଣ ଏବଂ ସମାଜବାଦୀ ବିଶ୍ୱାସ ମୋ ଭିତରେ ସୃଷ୍ଟି କରିଥିଲା । ଏହି ସବୁ ସମୟ ମଧ୍ୟରେ ମୋ ଭାଷା ଓ ମୋ ସାହିତ୍ୟ ପ୍ରତି ଅନ୍ୟମାନଙ୍କର ସାହିତ୍ୟ ସଂସ୍କୃତିକୁ

ଅନୁଧ୍ୟାନ କଲାବେଳେ ମୋ ଓଡ଼ିଆ ଭାଷା ସାହିତ୍ୟ ଓ ଓଡ଼ିଶା ସହିତ ସ୍ନେହ ଶ୍ରଦ୍ଧାକୁ ଗଭୀର କରିଥିଲା । ତାହା ମୋର ବ୍ୟକ୍ତିଗତ, ସାମାଜିକ ଓ ରାଜନୈତିକ ଜୀବନକୁ ଅନେକ ସମୟରେ ପ୍ରଭାବିତ କରିଥିଲା ।

ପ୍ରଶ୍ନ: ସଂପ୍ରତି ଆପଣ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ରାଜ୍ୟବ୍ୟାପୀ ଆନ୍ଦୋଳନ କରିଛନ୍ତି, ଓଡ଼ିଆ ଭାଷା କ'ଣ ସତରେ ବିପଦାପର୍ଣ୍ଣ ?

ଉତ୍ତର: ୨୦୦୫ ମସିହାରୁ ଓଡ଼ିଆ ଭାଷାର ସୁରକ୍ଷା ଓ ବିକାଶ ପାଇଁ ମୁଁ ଆନ୍ଦୋଳନ କରିଆସୁଛି । ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା ୧୯୩୬ ମସିହାରେ ଓଡ଼ିଆ ଭାଷାକୁ ଭିତ୍ତି କରି । ଓଡ଼ିଆ ଭାଷାରେ ରାଜ୍ୟର ପ୍ରଶାସନିକ, ବିଚାର ବିଭାଗୀୟ ଓ ବ୍ୟବସାୟ ବାଣିଜ୍ୟ କାର୍ଯ୍ୟ ଓଡ଼ିଆ ଭାଷାରେ ଚାଲିବ, ଓଡ଼ିଆ ଶିକ୍ଷାକୁ ସ୍କୁଲ କଲେଜରେ ପ୍ରାଧାନ୍ୟ ଦିଆଯିବ । ଏହାଥିଲା ଆମର ଉତ୍କଳ ସମ୍ମିଳନୀର ପ୍ରତିଷ୍ଠାତାମାନଙ୍କର ଲକ୍ଷ । ସ୍ୱାଧୀନତା ପରେ ଭାରତ ବର୍ଷରେ ଭାଷା ଭିତ୍ତିରେ ପ୍ରଦେଶ ଗଠିତ ହେଲା । ଏବଂ ଏସବୁ ରାଜ୍ୟରେ ସ୍ଥାନୀୟ ଭାଷାରେ ପ୍ରଶାସନଠାରୁ ଆରମ୍ଭ କରି ବିଚାରାଳୟ କାର୍ଯ୍ୟ ଚାଲିଲା । ୧୯୫୪ ମସିହାରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପୁଣ୍ୟାତ୍ମା ନବକୃଷ୍ଣ ଚୌଧୁରୀ ଓଡ଼ିଶା ବିଧାନସଭାରେ ଅଫିସିଆଲ ଲାଙ୍ଗୁଏଜ୍ ଆକ୍ଟ ପାଶ୍ କରାଇ ଓଡ଼ିଶାର ପ୍ରଶାସନିକ ଓ ଅନ୍ୟାନ୍ୟ କ୍ଷେତ୍ରର କାର୍ଯ୍ୟ ଓଡ଼ିଆରେ କରିବାକୁ ଐତିହାସିକ ପଦକ୍ଷେପ ନେଇଥିଲେ। ଦୁଃଖର କଥା ଓଡ଼ିଶାର ପରବର୍ତ୍ତୀ ଶାସକମାନେ ପ୍ରଶାସନ କ୍ଷେତ୍ରରେ ଓଡ଼ିଆ ଭାଷା ପ୍ରଚଳନ ନ କରି ଇଂରାଜୀରେ ସବୁକାର୍ଯ୍ୟ କରିଚାଲିଛନ୍ତି । ଯାହା ଫଳରେ ଓଡ଼ିଶାର ଉପାନ୍ତ ଅଞ୍ଚଳରେ ଓଡ଼ିଆ ଲୋକେ ଅନ୍ୟ ଭାଷାଭାଷୀ ଲୋକଙ୍କ ସହ ଓଡ଼ିଆରେ କଥା ନହୋଇ ସେମାନଙ୍କ ଭାଷାରେ କଥା ହେଉଛନ୍ତି । ଓଡ଼ିଶାରେ ଗଢ଼ି ଉଠିଥିବା ଶିଳ୍ପଅଞ୍ଚଳ ଓ ଖଣିଅଞ୍ଚଳରେ ଓଡ଼ିଆ ଭାଷା ପରିବର୍ତ୍ତେ ହିନ୍ଦୀ, ଇଂରାଜୀରେ କଥା ହେଉଛନ୍ତି । ଓଡ଼ିଶାର ଉଚ୍ଚ ମଧ୍ୟବିତ୍ତ ଶିକ୍ଷିତ ଶ୍ରେଣୀ ଓଡ଼ିଆ ପରିବର୍ତ୍ତେ ଇଂରାଜୀକୁ ନିଜର ଭାଷା ଭାବେ ଗ୍ରହଣ କଲେଣି । ଓଡ଼ିଶାରେ ପ୍ରକାଶ ପାଉଥିବା ପତ୍ରପତ୍ରିକା ଏବଂ ପୁସ୍ତକମାନଙ୍କ ପାଠକ ସଂଖ୍ୟା ଆମର ଲୋକସଂଖ୍ୟା ଦୃଷ୍ଟିରୁ କ୍ରମଶଃ କମି କମି ଯାଉଛି । ଏହା ଆମ ଭାଷା ପାଇଁ ଶୁଭସୂଚନା ନୁହେଁ । ସରକାରୀ ସ୍କୁଲ ମାନଙ୍କରେ ଓଡ଼ିଆ ଶିକ୍ଷକ ପଦବୀ ନାହିଁ । ସ୍କୁଲମାନଙ୍କରେ ଓଡ଼ିଆ ଶିକ୍ଷାର ମାନ ଖୁବ୍ ନିମ୍ନମାନର । କଲେଜ ଓ ବିଶ୍ୱବିଦ୍ୟାଳୟ ମାନଙ୍କରେ ଓଡ଼ିଆ ପିଲାମାନେ ଓଡ଼ିଆ ପଢ଼ିବାକୁ ଆଗ୍ରହ ପ୍ରଦର୍ଶନ କରୁନାହାନ୍ତି । ସେମାନେ କହୁଛନ୍ତି ଓଡ଼ିଆରେ ସବୁକାର୍ଯ୍ୟ ଇଂରାଜୀରେ ହେଉଛି । ଆମେ ଓଡ଼ିଆ ପଢ଼ି କ'ଣ କରିବୁ ଆମକୁ

କିଏ ପଚାରିବ । ଆମର ନୂଆ ପିଢ଼ୀଙ୍କ ମଧ୍ୟରେ ଯଦି ଏହି ଚିନ୍ତା ଜାଗ୍ରତ ହେବ ତେବେ ଓଡ଼ିଆ ଭାଷାକୁ କିଏ ବଞ୍ଚାଇବ । ଆମେ ଯଦି ଅନ୍ୟ ପ୍ରଦେଶମାନଙ୍କ ପରି ନିଜ ଭାଷାକୁ ପ୍ରଶାସନିକ, ବିଚାର କ୍ଷେତ୍ରରେ ବିଭାଗ ଆଦି ବ୍ୟବହାର କରିଆସିଥାନ୍ତେ ତେବେ ଆଜି ଓଡ଼ିଆ ଭାଷାର ଏପରି ଅବସ୍ଥା ହେଉନଥାନ୍ତା । ଭାଷା ହେଉଛି ଗୋଟିଏ ଜାତିର ଆତ୍ମା ଏବଂ ତା'ର ପରିଚୟ। ଭାଷା ବଂଚିରହେ ତା'ର ବ୍ୟବହାରିକତା ଉପରେ । ଭାଷାକୁ ଆମେ ବ୍ୟାପକ ଭାବରେ ବ୍ୟବହାର ନକଲେ ସେ ଭାଷା ସଂକୁଚିତ ହୋଇଯିବ । ତେଣୁ ମୁଁ କହୁଛି ଓଡ଼ିଆ ଭାଷାକୁ ଓଡ଼ିଆ ଯୁବକ ଯୁବତୀଙ୍କ ଜୀବନ, ଜୀବିକା ସହ ସଂପୃକ୍ତି ନକରି ପାରିଲେ ଓଡ଼ିଆ ଭାଷା ପ୍ରତି ସେମାନଙ୍କର ଆଗ୍ରହ ରହିବନାହିଁ । ମୁଁ ଇଂରାଜୀ ଭାଷାର ବିରୋଧି ନୁହେଁ, ଆମକୁ ଇଂରାଜୀ ଶିଖିବାକୁ ହେବ। କିନ୍ତୁ ଆମ ଭାଷାରେ, ଆମ ବାଣିଜ୍ୟ ବ୍ୟବସାୟ, ପ୍ରଶାସନିକ କାର୍ଯ୍ୟ ଯଦି ଚାଲେ ହୁଏ ତେବେ ଓଡ଼ିଆ ଲୋକେ ଓଡ଼ିଆ ଶିଖିବାକୁ ବିଶେଷ ଆଗ୍ରହ ପ୍ରକାଶ କରିବେନାହିଁ ଏବଂ ଓଡ଼ିଆ ଭାଷାର ବ୍ୟାବହାରିକତା ଦିନକୁ ଦିନ ବଢ଼ିବ । ଓଡ଼ିଶାରେ ଥିବା ଅଣ ଓଡ଼ିଆ ଲୋକ ଓଡ଼ିଆ ଶିଖିବାକୁ ବାଧ୍ୟ ହେଉଥାନ୍ତେ। ଏଥିପାଇଁ ଓଡ଼ିଶାରେ ଜନ ଆନ୍ଦୋଳନର ଆବଶ୍ୟକତା ରହିଛି । ଉତ୍କଳ ସମ୍ମିଳନୀ ପରି ଭାଷା ସୁରକ୍ଷା ସମ୍ମିଳନୀ ଏହି କାର୍ଯ୍ୟଟି କରିବାକୁ ବାହାରିଛି । ଆମେ ସରକାରଙ୍କଠାରେ ଦୃଢ଼ ଦାବୀ କରିଚାଲିଛୁ ଶୀଘ୍ର ଓଡ଼ିଆ ଭାଷାକୁ ସବୁ କ୍ଷେତ୍ରରେ ବ୍ୟବହାର କରାଯାଉ ଏବଂ ଓଡ଼ିଆ ଶିକ୍ଷାକୁ ଉନ୍ନତ କରିବା ପାଇଁ ସରକାର ପଦକ୍ଷେପ ନିଅନ୍ତୁ ।

ପ୍ରଶ୍ନ: ଆପଣଙ୍କ ଚିନ୍ତାଧାରା କାହା ଦ୍ୱାରା ଅନୁପ୍ରେରିତ ହୋଇଛନ୍ତି ?

ଉତ୍ତର: ମୋ ଛାତ୍ର ଜୀବନରୁ ଗାନ୍ଧୀଜୀଙ୍କ ବିଚାରଧାରା ଓ ମାର୍କ୍ସବାଦ ମୋତେ ପ୍ରଭାବିତ କରିଆସିଛି । ମାର୍କ୍ସଙ୍କର ବିଶ୍ୱ ଦୃଷ୍ଟିକୋଣ ଏବଂ ଗାନ୍ଧୀଙ୍କର ଅନ୍ୟାୟ ବିରୁଦ୍ଧରେ ସତ୍ୟାଗ୍ରହକୁ ମୁଁ ମୋ ସଂଗ୍ରାମର ପଦ୍ଧତି ଭାବରେ ନେଇଛି । ତତ୍ ସହିତ ଭାରତର ସାମାଜିକ ଅର୍ଥନୈତିକ ଦୃଷ୍ଟିରୁ ଡଃ ରାମମୋହନ ଲୋହିଆ ଓ ବାବା ସାହେବ ଆମ୍ବେଦକରଙ୍କ ଲେଖା ଓ ସଂଗ୍ରାମରୁ ମୁଁ ବହୁଶିକ୍ଷା ଲାଭ କରିଛି ।

ପ୍ରଶ୍ନ: ଓଡ଼ିଶା ଅର୍ଥନୀତିକୁ ସୁଦୃଢ଼ କରିବାକୁ ବର୍ତ୍ତମାନ କ'ଣ କରିବା ଉଚିତ୍ ?

ଉତ୍ତର: ଓଡ଼ିଶା ତଥା ଓଡ଼ିଶା ଲୋକଙ୍କର ବିକାଶ ପାଇଁ ପ୍ରକୃତି ଓଡ଼ିଶାକୁ ଅକଳନ ସଂପଦ ଦେଇଛି ମାନବ ସମ୍ବଳର ବିକାଶ ଓ ସେହି ସଂପଦର ସୁବିନିଯୋଗ ଏବଂ

ନ୍ୟାୟପୂର୍ଣ୍ଣ ବଣ୍ଟନ ଦ୍ୱାରା ହିଁ ଓଡ଼ିଶାର ବିକାଶ ସମ୍ଭବ । ଓଡ଼ିଶା ଆଜି ଭାରତ ବର୍ଷରେ ସବୁଠାରୁ ଦରିଦ୍ରତମ ରାଜ୍ୟ । ଅଶିକ୍ଷା, ଦାରିଦ୍ର୍ୟ ଏବଂ ପୋଷଣହୀନତାରେ ଓଡ଼ିଶାର ଅର୍ଦ୍ଧାଧିକ ଲୋକ ଆଜି ପୀଡ଼ିତ । ଏହିସବୁ ଦୂର କରିବାକୁ ହେଲେ ଯୋଜନାବଦ୍ଧ ଭାବରେ କୃଷିର ବିକାଶ ଓ ଶିଳ୍ପାୟନ ଆବଶ୍ୟକ । ରାଜ୍ୟର ଆଦିବାସୀ ଓ ଦଳିତ ସଂପ୍ରଦାୟ ମଧ୍ୟରୁ ବହୁ ପରିବାର ଦାରିଦ୍ର୍ୟର ସୀମା ରେଖା ତଳେ ରହିଛନ୍ତି । ସେମାନଙ୍କୁ ଜମି ପ୍ରଦାନ କରିବା, ଶିକ୍ଷା ଓ ପ୍ରଶିକ୍ଷଣଦେଇ ଦ୍ୱାରା ସେମାନଙ୍କ କର୍ମଶକ୍ତିକୁ ଉନ୍ନତ କରିବା ସହିତ କର୍ମନିଯୁକ୍ତି ପ୍ରଦାନ କରି ସ୍ୱାବଲମ୍ବି କରିବା ହେଉଛି ଅତ୍ୟନ୍ତ ଜରୁରୀ । ଦୂରଦୃଷ୍ଟି ସଂପନ୍ନ ସାମାଜିକ ପ୍ରତିବଦ୍ଧତା ଥିବା ନେତୃତ୍ୱ ଏହି କାର୍ଯ୍ୟ କରିପାରିବେ । ଏଥିପାଇଁ ସାମାଜିକ, ଅର୍ଥନୈତିକ କ୍ଷେତ୍ରରେ ବହୁ ମୌଳିକ ପରିବର୍ତ୍ତନ ଆବଶ୍ୟକ ।





# ଓଡ଼ିଆ ପାଠକ ପରି ପାଠକ କେଉଁଠି ନାହାନ୍ତି

## ବୈଷ୍ଣବ ଚରଣ ମହାନ୍ତି:

**ସେ** ଏକାଧାରରେ କବି, ନାଟ୍ୟକାର, ଗାଳ୍ପିକ ଓ ପ୍ରାବନ୍ଧିକ। ଜଣେ କଳାକାର ଭାବେ ପରିଚିତ ମଧ୍ୟ। ଅନ୍ୟ ଅର୍ଥରେ ନାଟୁଆ। ଜୀବନକୁ ଅତି ନିକଟରୁ ଦେଖିଛନ୍ତି ବୈଷ୍ଣବ ଚରଣ ମହାନ୍ତି। ଉପନ୍ୟାସକୁ ଛାଡି ଓଡ଼ିଆ ସାହିତ୍ୟର ପ୍ରାୟ ସମସ୍ତ ବିଭାଗରେ ଲେଖନୀ ଚାଳନା କରିଥିବା ଶ୍ରୀ ମହାନ୍ତିଙ୍କ ସହ ଆଳାପ।

ପ୍ରଶ୍ନ. ଏବେ କ'ଣ ଲେଖୁଛନ୍ତି ?

ଉତ୍ତର: 'ବିଧବା ବେଶ ବିରୋଧରେ' ପୁସ୍ତକ ଲେଖାରେ ବ୍ୟସ୍ତ ଅଛି। ମୋ ଜୀବନର ଗୋଟିଏ ନିଛକ ଅନୁଭୂତି ଏହି ପୁସ୍ତକର ଲେଖନ। ମୋତେ ସେତେବେଳେ ୯ ବର୍ଷ। ମୋ ବୋଉ ବିଧବା ହେବା ବେଳର ସେହି କରୁଣ ଦୃଶ୍ୟ ଆଖିରେ ଲାଖି ରହିଥିଲା। ସେହି ଦୁଃଖ ମୋତେ ଏତେ ମାତ୍ରାରେ ପ୍ରଭାବିତ କରିଥିଲା ଯେ ତାକୁ ମୋ ଲେଖନୀରେ ରୂପରେଖ ନ ଦେଇ ରହିପାରୁ ନଥିଲି।

ପ୍ରଶ୍ନ. ଏତେ ବର୍ଷ ପରେ ଏହି ଦୁଃଖକୁ ଶବ୍ଦାୟିତ କରିବା ଚିନ୍ତା କଲେ କାହିଁକି ?

ଉତ୍ତର: ସେହି ଦୃଶ୍ୟ ଆଦୌ ଭୁଲିବାର ନୁହେଁ। ଏପରିକି ମୋ ବୋଉର ବିଧବା ଦୃଶ୍ୟ ଦେଖିଲା ପରେ ମୁଁ ଆଜି ପର୍ଯ୍ୟନ୍ତ ଆଉ ଅନ୍ୟ କୌଣସି ସଦ୍ୟ ବିଧବାକୁ ଦେଖିପାରୁନାହିଁ। ଏଣୁ କାହାର ବିଧବା ଖବର ଶୁଣି ମୁଁ ତାଙ୍କୁ ଦେଖା କରିବାକୁ ମଧ୍ୟ ଯାଇପାରୁ ନାହିଁ।

ପ୍ରଶ୍ନ. ଆପଣ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ଏବେ ପ୍ରବନ୍ଧରେ ସାଧନାରତ ଅଛନ୍ତି।

ଉତ୍ତର: ପ୍ରବନ୍ଧ ଲେଖିବା ସବୁଠୁଁ କଷ୍ଟ। ସବୁ ତୁଠରୁ ପାଣି ପିଇଆସି ପ୍ରବନ୍ଧ ତୁଠରେ ପହଞ୍ଚିଛି। ପ୍ରଜ୍ଞା ପାକଳ ହେବା ପରେ ପ୍ରବନ୍ଧ ଲେଖା ହୁଏ। ମୁଁ ମୋର ସେହିସବୁ ଅନୁଭୂତିକୁ ଗୋଟିଏ ବଳିଷ୍ଠ ମାଧ୍ୟମରେ ଆକାର ଦେବାକୁ ଯାଉଛି।

ପ୍ରଶ୍ନ. ଆପଣଙ୍କ ମତରେ ପ୍ରବନ୍ଧ କିପରି ହେବା ଦରକାର ?

ଉତ୍ତର: ପ୍ରବନ୍ଧ ଆଦୌ ନିରସ ଶୁଷ୍କ ନୁହେଁ। ଏଥିରେ ସ୍ୱାଦ ରହିବ, ଆବେଗ ଜର୍ଜିତ ହେବ ନାହିଁ। ପାଠକ ପ୍ରବନ୍ଧଟି ପଢ଼ି ତା' ହୃଦୟ ଆନ୍ଦୋଳିତ ହେବା ଦରକାର, ଆବେଗ ଆସିବା ଦରକାର। ତେବେ ଯାଇ ତାହା ପ୍ରବନ୍ଧ ହେବ।

ପ୍ରଶ୍ନ. ସାହିତ୍ୟର କେଉଁ ବିଭାଗରେ ଆପଣ ନିଜକୁ ସ୍ପଷ୍ଟ କରିପାରୁଛନ୍ତି ?

ଉତ୍ତର: ମୋତେ ଗଳ୍ପ କବିତା ପ୍ରବନ୍ଧ ସବୁ ଭଲ ଲାଗୁଛି। ବୟସାନୁଯାୟୀ ସାହିତ୍ୟର ଅମଳ ବଦଳେ। ହୁଏତ ଗୋଟିଏ ସମୟରେ ମୁଁ କବିତାକୁ ଯେଉଁ ଆବେଗରେ ଲେଖିପାରୁଥିଲି ଆଜି ସେହି ଭାବରେ ଲେଖିପାରୁନାହିଁ। ଏବେ କେବଳ ପ୍ରବନ୍ଧରେ ହିଁ ନିଜ ଚିନ୍ତନକୁ ଠିକ୍ ରୂପାୟନ କରିପାରୁଛି।

ପ୍ରଶ୍ନ. ସାହିତ୍ୟର ସମାଜ ଉପରେ ପ୍ରଭାବ ସମ୍ପର୍କରେ ଅପଣଙ୍କ ମତ କ'ଣ ?

ଉତ୍ତର: ସାହିତ୍ୟ ସମାଜର ପରିବର୍ତ୍ତନ ଆଣିପାରିବ। ସାହିତ୍ୟରେ ଆବେଗ ଏବଂ ସତ୍ୟକୁ ସ୍ଥାନିତ କରିବା ଦରକାର, ଯାହାକି ସମାଜକୁ ପରିବର୍ତ୍ତନର ବଳିଷ୍ଠ ମାଧ୍ୟମ ହେବ।

ପ୍ରଶ୍ନ. ବର୍ତ୍ତମାନ ସାହିତ୍ୟକୁ କେଉଁ ଭାବରେ ଗତି କରାଇ ସମାଜର ପରିବର୍ତ୍ତନ ଅଣାଯାଇପାରିବ ଭାବୁଛନ୍ତି ?

ଉତ୍ତର: ଯୁବ ସମାଜ ସବୁ କିଛି କରିପାରିବ। ଏଣୁ ଯୁବ ସମାଜଙ୍କ ପାଇଁ ସାହିତ୍ୟ ସୃଷ୍ଟି କରିବା ଦରକାର। ବର୍ତ୍ତମାନ ଯୁବସମାଜ ଅର୍ଥ ଉପାର୍ଜନରେ ବ୍ୟସ୍ତ। ଆମୋଦପ୍ରମୋଦ ମାଧ୍ୟମ ଭାବରେ ସାହିତ୍ୟ ସେମାନଙ୍କୁ ସଂଶ୍ଳିଷ୍ଟ କରିବାକୁ ପଡିବ। ଏଣୁ ସେମାନଙ୍କୁ ଆକର୍ଷିତ କଲାପରି ସହିତ୍ୟ ହେବା ଦରକାର। ଆମ ସାହିତ୍ୟିକମାନଙ୍କୁ ଏଥିପ୍ରତି ସଚେତନ ହେବାକୁ ପଡିବ।

ପ୍ରଶ୍ନ. 'ପାନ ଓ ପ୍ରିୟତମା' ଲେଖିବା ବେଳର ଅନୁଭୂତି ସମ୍ପର୍କରେ କୁହନ୍ତୁ ?

ଉତ୍ତର: ମୋ ବୋଉ ଦ୍ୱାରା ମୁଁ ବହୁତ ପ୍ରଭାବିତ। ମୋ ବାପା ମରିଯିବା ପରେ ଆମ ଚଳଣି ଉପରେ ବହୁତ ଖରାପ ପ୍ରଭାବ ପଡ଼ିଲା। ମୋ ବୋଉ ପାନ ଖାଇବା ଛାଡିଦେଲା ଏବଂ କହିଥିଲା ମୋ ପୁଅ ରୋଜଗାର କଲା ପରେ ପାନ ଖାଇବି। କିନ୍ତୁ ମୋ ରୋଜଗାର କରିବା ବେଳକୁ ସେ ଆଉ ନ ଥିଲା।

ମୋ ଭିତରେ ସେହି ଚିତ୍ରଟି ଛାପିହୋଇ ରହିଥିଲା, ଯାହାର ପ୍ରେରଣାରେ ମୋର ଏହି 'ପାନ ଓ ପ୍ରିୟତମା'ର ସୃଷ୍ଟି।

ପ୍ରଶ୍ନ. ବର୍ତ୍ତମାନ ସାହିତ୍ୟରେ ପାଠକ ଅଭାବ ଦେଖା ଦେଇଛନ୍ତି କି ?

ଉତ୍ତର: ବର୍ତ୍ତମାନ ପାଠକଙ୍କ ଅଭାବ – ଧାରଣା ଭୁଲ୍। ଓଡ଼ିଆ ପାଠକଙ୍କ ପରି ପାଠକ ଆଉ କେଉଁଠି ନାହାନ୍ତି। ଯେଉଁଠି ତାଳପତ୍ର ପୋଥିର ସଂଖ୍ୟା ଅଧିକ ଏବଂ ଯେଉଁ ପୋଥିକୁ ପୂଜା କରାଯାଏ, ସେଠି ପାଠକ ଅଭାବ ବୋଲି କୁହାଯିବ କିପରି।

ପ୍ରଶ୍ନ. ଆପଣ ପ୍ରଥମେ କବିତା ତା'ପରେ ନାଟକ-ଗଳ୍ପ-ବ୍ୟଙ୍ଗ-ଲଳିତ ନିବନ୍ଧ ଏବଂ ପ୍ରବନ୍ଧ ଲେଖିଛନ୍ତି। ଗୋଟିଏ ଛାଡି ଆଉ ଗୋଟିଏ ନିମଗ୍ନ ହୋଇଥାନ୍ତି କିପରି ? ଏହି ସ୍ୱତନ୍ତ୍ରତାର ରହସ୍ୟ କ'ଣ ?

ଉତ୍ତର: ମୁଁ ଭୋଜନ ଯେପରି କରେ ସାହିତ୍ୟ ମଧ୍ୟ ସେପରି କରେ। ଆଉ ଟିକେ ସ୍ପଷ୍ଟ ଭାବରେ କହିଦେଉଛି ମୁଁ ଭୋଜନ କଲାବେଳେ ଆଗ ଭାତତକ ଖାଇଦିଏ ତା'ପରେ ଗୋଟିଏ ତରକାରି ତା'ପରେ ଆଉ ଗୋଟିଏ ବ୍ୟଞ୍ଜନକୁ ଶେଷ

କରେ। ମୋ ପାଟି ଭିତରେ ଏକାବେଳକେ ୨ଟି ବ୍ୟଞ୍ଜନ କେବେ ରହନ୍ତି ନାହିଁ। ପିଲାଟିଦିନରୁ ମୋର ଏହି ଅଭ୍ୟାସ ଆଜିଯାଏ ଅଛି। ସେହି କ୍ରମରେ ସାହିତ୍ୟର ମଧ୍ୟ ଗୋଟିଏ ସମୟରେ ଗୋଟିଏ ହିଁ ମାଧ୍ୟମରେ ନିମଗ୍ନ ରହିଛି।

ପ୍ରଶ୍ନ. ଆପଣ ରାଇଟର କମ୍ ଟ୍ରାନ୍ସଲେଟର ଥିବାବେଳେ କ'ଣ କରିଛନ୍ତି, ଯାହା ଆଜି ଆପଣଙ୍କୁ ଗୌରବ ଦେଉଛି ?

ଉତ୍ତର: ରାଇଟର୍ କମ୍ ଟ୍ରାନ୍ସଲେଟର ଏହି ପଦବୀରେ ମୋ ପୂର୍ବରୁ ଓଡ଼ିଆ ସାହିତ୍ୟ ଜଗତର ବରେଣ୍ୟ ଏବଂ ବିଶିଷ୍ଟ ଲେଖକମାନେ ଥିଲେ। ସେମାନେ ହେଲେ ମାୟାଧର ମାନସିଂ, ରାଧାମୋହନ ଗଡ଼ନାୟକ, ବୈକୁଣ୍ଠ ପଟ୍ଟନାୟକ, ଭଞ୍ଜ କିଶୋର, ନରସିଂହ ମିଶ୍ର, ବିଭୂତି ପଟ୍ଟନାୟକ ପରେ ମୁଁ ସେ ଦାୟୀତ୍ୱ ନେଲି ଯାହାକି ଏବେ ସେହି ପଦବୀ ଉଠିଯାଇଛି। ତେବେ ମୋ ସମୟରେ ମୁଁ ସରକାରଙ୍କ ପାଇଁ ୩୯ଟି ବହି ଲେଖିଛି, ସେଥିମଧ୍ୟରୁ ପ୍ରାୟ ୨୧ ଖଣ୍ଡ ବହି ୧୨ଲକ୍ଷ ଲେଖାଏଁ ପ୍ରକାଶ ପାଇଛି।

ପ୍ରଶ୍ନ. ଆପଣ ଜୀବନକୁ କେଉଁଭଳି ଦେଖନ୍ତି ?

ଉତ୍ତର: ମୁଁ ଜୀବନକୁ ଖୁବ୍ ତୀକ୍ଷ୍ଣ ଭାବରେ ଅନୁଭବ କରିଛି। ମୋ ବାପା ଚାଲିଯିବା ପରର ଦୟନୀୟ ଅବସ୍ଥା ଏବଂ ମୋ ବୋଉର ମୃତ୍ୟୁ ପରେ ମୁଁ ଖୁବ୍ ଦୁଃଖୀ ଏବଂ ଅଭାବ ଜୀବନ ଅତିବାହିତ କରିଛି। ଜୀବନକୁ ଖୁବ୍ ପାଖରୁ ଦେଖିଛି ବୋଲି ଆଜି ମୋ ଲେଖନୀରେ ସେସବୁ ପ୍ରତିଫଳିତ, ଯାହାକୁ ଆପଣମାନେ ଆଜି ପସନ୍ଦ କରୁଛନ୍ତି ବୋଲି ଜାଣି ଖୁସି ହେଉଛି। କିନ୍ତୁ ମୋର ସେହି ସମସ୍ତ ସୃଷ୍ଟି ପଛରେ ରହିଛି ମୋ ଅଙ୍ଗେନିଭା ଅନୁଭବ, ଯାହା ମୋତେ ରକ୍ତାକ୍ତ କରିଛି, କନ୍ଦାଇଛି, ମୋ ଭିତରେ ଆବେଗ ଭରୁଛି।





# ଲେଖକ ଦରଦୀ ନ ହେଲେ କାଳଜୟୀ ସୃଷ୍ଟି ଅସମ୍ଭବ

## କୃପାସାଗର ସାହୁ:

**କ**ଥାକାର କୃପାସାଗର ସାହୁ। କବିତାରୁ ସାହିତ୍ୟ ସାଧନା ଆରମ୍ଭ କରି ପରବର୍ତ୍ତୀ ସମୟରେ ଗଳ୍ପ, ଉପନ୍ୟାସ ଲିଖନରେ ନିଜକୁ ନିମଜ୍ଜିତ କରି ରଖିଛନ୍ତି। ଲେଖକଟିଏ ଯଦି ଦରଦୀ ନ ହୁଏ ତେବେ କାଳଜୟୀ ସୃଷ୍ଟି ସମ୍ଭବ ନୁହେଁ ବୋଲି ସେ ମତ ଦିଅନ୍ତି। ତାଙ୍କ ସହ ସ୍ୱତନ୍ତ୍ର ଆଳାପ।

ପ୍ରଶ୍ନ: ଆପଣଙ୍କ ସାହିତ୍ୟ ଜୀବନର ଅୟମାରମ୍ଭ କିପରି ? ଆପଣଙ୍କ ପ୍ରଥମ ପ୍ରକାଶିତ ଲେଖା କ'ଣ ?

ଉତ୍ତର: ପିଲାଟି ଦିନରୁ କବିତା ଲେଖା ଆରମ୍ଭ କରିଥିଲି। କଲେଜ ପଢ଼ିଲା ପରେ ବିଭିନ୍ନ ପତ୍ରପତ୍ରିକାରେ ଲେଖା ପ୍ରକାଶିତ ହେଲା। ୧୯୬୯ ମସିହାରେ ଦୈନିକ କଳିଙ୍ଗରେ ମୋର ପ୍ରଥମ କବିତା 'ଶାମୁକାର କକ୍ଷଚ୍ୟୁତି' ପ୍ରକାଶିତ ହୋଇଥିଲା। ସେବେଠାରୁ ଲେଖିଚାଲିଛି।

ପ୍ରଶ୍ନ: ଆପଣ ଚାକିରି ଜୀବନରେ କ୍ରମାଗତ ଭାବେ ସହରରେ ବାସକରି ଅଛନ୍ତି। କିନ୍ତୁ ଗଳ୍ପଗୁଡ଼ିକରେ ନିଛକ ଗାଁର କଥା ବେଶି ଲେଖିଛନ୍ତି କିପରି ?

ଉତ୍ତର: ତିନି ଦଶନ୍ଧି ପୂର୍ବରୁ ଗାଁ ଛାଡିଥିଲେ ମଧ୍ୟ ଗାଁକୁ ପୂରା ଛାଡ଼ି ହୋଇଛି କାହିଁ ? ଟିକିଏ ସୁଯୋଗ ମିଳିଲେ ମୁଁ ଗାଁକୁ ଛୁଟେ। ପରିବାର, ବନ୍ଧୁବର୍ଗ ଏବଂ ଗ୍ରାମୀଣ ଲୋକଙ୍କ ସୁଖଦୁଃଖରେ ସାମିଲ ହୁଏ। ପିଲାଦିନର ଗାଁର ଚିତ୍ରପଟ୍ଟ ଅଦ୍ୟାବଧି ମୋର ସ୍ମୃତିରେ ଉଜ୍ଜୀବିତ ହୋଇରହିଛି। ସେହି ସ୍ମୃତିଗୁଡ଼ିକ ବାରମ୍ବାର ମୋର ଲେଖାଗୁଡ଼ିକରେ ଧସେଇ ପଶିଯାଆନ୍ତି।

ପ୍ରଶ୍ନ: ଆପଣ ଏକାଧାରରେ ଜଣେ ପ୍ରଶାସକ, କବି ଏବଂ କଥାକାର। ଏଥିରୁ କେଉଁ ପରିଚୟ ଦ୍ୱାରା ଆପଣ ପରିଚିତ ହେବାକୁ ଶ୍ରେୟସ୍କର ଭାବନ୍ତି ?

ଉତ୍ତର: ପ୍ରଶାସକ, କବି, ଔପନ୍ୟାସିକ ପ୍ରଭୃତି ବିଶେଷଣ, ପଦପଦବୀ ମୋତେ ଆଦୌ ପ୍ରଭାବିତ କରନ୍ତି ନାହିଁ। ଓଡ଼ିଶାରେ ତଥା ଓଡ଼ିଶା ବାହାରେ କାମ କରିଥିବା କ୍ଷେତ୍ରଗୁଡ଼ିକରେ ଲୋକେ ମୋତେ ଜଣେ ଭଲ ମଣିଷ ଭାବେ ଜାଣନ୍ତି। କାରଣ ମୁଁ ଲୋକମାନଙ୍କୁ ଅଯାଚିତ ଭାବେ ସାହାଯ୍ୟ କରେ। ପରୋପକାରକୁ ମୁଁ ଜୀବନର ବ୍ରତ ଭାବି ନେଇଛି।

ପ୍ରଶ୍ନ: ଆପଣ କବିତାରୁ ଲେଖା ଆରମ୍ଭ କରି ଏବେ ଗଳ୍ପ ଓ ଉପନ୍ୟାସ ଲେଖାରେ ମନୋନିବେଶ କରିଛନ୍ତି। ଆଉ କବିତା ଲେଖୁନାହାନ୍ତି କାହିଁକି ?

ଉତ୍ତର: ଯଦିଓ କବିତାରୁ ମୋର ସୃଜନଶୀଳତାର ଅୟମାରମ୍ଭ, ଅଦ୍ୟାବଧି ମୁଁ ଶତାଧିକ ଗଳ୍ପ ସୃଷ୍ଟି କରିଛି। ତିନୋଟି ଉପନ୍ୟାସ ମଧ୍ୟ ଲେଖିଛି। ମୁଁ ଭାବେ କବିତା ଲେଖା ପାଇଁ ବୋଧହୁଏ ଗୋଟିଏ ବୟସ ଥାଏ। ମୋର ଗଳ୍ପ ରଚନା ପାଇଁ ମୁଁ ଯେତିକି ଉତ୍ସାହ ଓ ପାଠକୀୟ ଶ୍ରଦ୍ଧା ପାଇଛି, କବିତା ପାଇଁ ସେତିକି ପାଇପାରି ନଥିଲି। ତାହା ହିଁ କବିତା ଲେଖା ଛାଡିବାର ମୁଖ୍ୟ କାରଣ ହୋଇପାରେ।

ପ୍ରଶ୍ନ: ଯଦିଓ ଆପଣ କବିତା ଲେଖୁ ନାହାନ୍ତି, ଆପଣଙ୍କ ଗଳ୍ପ ଓ ଉପନ୍ୟାସରେ ଏବେ ବି କବିତାର ଝଲକ ମିଳେ। ଏ ସମ୍ପର୍କରେ ଆପଣ କ'ଣ କହିବେ ?

ଉତ୍ତର: କବିତା ଲେଖା ଛାଡ଼ିଲେ ମଧ୍ୟ ମୁଁ ଅନ୍ତରରେ ଜଣେ କବି। ସେଥିପାଇଁ କବିତାର କିଛି କିଛି ବିଭବ ଆପଣଙ୍କ ଦୃଷ୍ଟିଗୋଚର ହୁଏ। ଜଣେ ପ୍ରଖ୍ୟାତ ଔପନ୍ୟାସିକ ମୋର 'ଶେଷ ଶରତ' ଉପନ୍ୟାସକୁ ଏକ 'ନିଃସର୍ଗ କାବ୍ୟଖଣ୍ଡ' ବୋଲି ଅଭିହିତ କରିଛନ୍ତି।

ପ୍ରଶ୍ନ: ଆପଣଙ୍କ ରଚିତ ଚରିତ୍ରମାନଙ୍କ ମଧ୍ୟରୁ କେଉଁ ଚରିତ୍ର ପ୍ରତି ଆପଣଙ୍କର ବେଶୀ ଦୁର୍ବଳତା ରହିଛି ?

ଉତ୍ତର: ମୋର କାହାଣୀ-୨୦୦୫ରେ 'ଲାଜକୁରୀ', 'ସାବି' ଓ 'ସତୀ' ଭଳି କେତୋଟି ଗ୍ରାମ୍ୟ ଲଳନାମାନଙ୍କର ଚରିତ୍ରକୁ ନେଇ ଗପ ଅଛି। 'ଗଡ଼ଜାତ ଗଳ୍ପ'ରେ 'ହୁରୁଦା'ବୋଲି ଏକ ହୁଣ୍ଡା ତରୁଣର ଚରିତ୍ର ଅଛି। ଏସବୁ ଚରିତ୍ର ଚିତ୍ରଣରେ ମୁଁ ଯଥେଷ୍ଟ ଆତ୍ମସନ୍ତୋଷ ଲାଭ କରିଥିଲେ ହେଁ 'ଲାଜକୁରୀ' ଚରିତ୍ର ଦ୍ୱାରା ମୁଁ ବେଶୀ ଆନ୍ଦୋଳିତ ହୋଇଛି।

ପ୍ରଶ୍ନ: ଆପଣଙ୍କ ଗଳ୍ପଗୁଡିକ କାହାଣୀଧର୍ମୀ, ଯାହାକି ପାଠକମାନଙ୍କୁ ଭରପୂର ଆନନ୍ଦ ଦିଏ। ଆପଣ ଗଳ୍ପଗୁଡ଼ିକୁ କାହାଣୀଧର୍ମୀ କରିବା ପାଇଁ ପ୍ରାଧାନ୍ୟ ଦିଅନ୍ତି କି ?

ଉତ୍ତର: ଜଣେ ପ୍ରଖ୍ୟାତ କବିଙ୍କ ମତରେ, ଗଳ୍ପଟିଏ ପଢ଼ିଲାବେଳେ ପାଠକ କାହାଣୀଟିଏ ଖୋଜେ। କାହାଣୀ ନ ଥିବା ଗଳ୍ପ ତାକୁ ନିରାଶ କରେ। ମୋର ମତ ମଧ୍ୟ ସେୟା। ଗଳ୍ପରେ ବେଶୀ ଚାତୁରୀ, ଗବେଷଣା, ଦର୍ଶନ, ଶବ୍ଦାଡ଼ମ୍ବର ପ୍ରଭୃତି ରହିଲେ ତାହା ପାଠକର ମନକୁ ଭାରାକ୍ରାନ୍ତ କରେ। ସେଭଳି ଗଳ୍ପ ସ୍ମରଣୀୟ ହୋଇ ରହେନି। ଏଥିପାଇଁ ମୁଁ କାହାଣୀକୁ ପ୍ରାଧାନ୍ୟ ଦିଏ।

ପ୍ରଶ୍ନ: ଆପଣଙ୍କ ଗଳ୍ପଗୁଡିକ ଅନୁଭୂତିର ଉଷ୍ମ ସ୍ପର୍ଶରେ ସଜୀବ ଓ ସତେଜ। ତେବେ କ'ଣ ବାସ୍ତବ ଘଟଣା ରାଜିକୁ ନେଇ କେବଳ ଲେଖନ୍ତି ନା ସେଥିରେ କଳ୍ପନାର ପୁଟ ଥାଏ।

ଉତ୍ତର: ପ୍ରତ୍ୟେକ ଲେଖକ ନିଜର ଅନୁଭୂତି ଓ ନିତ୍ୟ ଦୃଶ୍ୟମାନ ପାରିପାର୍ଶ୍ୱିକ ଘଟଣାବଳୀକୁ ଦେଖି ଲେଖେ ବୋଲି ମୁଁ ବିଶ୍ୱାସ କରେ। ଅନୁଭୂତିର ହାଡ଼ ଓ ମାଂସରେ କଳ୍ପନାର ରକ୍ତ ଦେଇ ମୁଁ ମଧ୍ୟ ଲେଖେ। ପ୍ରଚୁର ଅନୁଭୂତି ନ ଥିଲେ ଉପନ୍ୟାସ ଲେଖିବା ସମ୍ଭବ ହେବନାହିଁ ବୋଲି ମୁଁ ମନେକରେ।

ପ୍ରଶ୍ନ: ଲେଖକ ଭାବେ ଆପଣ ଜଣେ ଆଶାବାଦୀ ନା ନିରାଶାବାଦୀ ?

ଉତ୍ତର: ଲେଖକ ଜାଣିଶୁଣି କେବେ ଆଶାବାଦୀ ବା ନିରାଶାବାଦୀ ହୁଏନା। ନିଜ ଚାରିପଟେ ଦେଖୁଥିବା ଦୁନିଆ ଏବଂ ଚରିତ୍ରମାନଙ୍କୁ ନେଇ ସେ ସାହିତ୍ୟ ସୃଷ୍ଟି କରେ। ଉଭୟ ମନୁଷ୍ୟର ହସକାନ୍ଦ, ସୁଖ, ଦୁଃଖ, ଜୟ ଓ ପରାଜୟ ତା'କଲମ ମୁନରେ ଫୁଟିଉଠେ। ମୁଁ ଅନ୍ୟ ଲେଖକମାନଙ୍କଠାରୁ ଭିନ୍ନ ନୁହେଁ। ତେବେ ଘମାଘୋଟ ଦୁଃଖ ମଧ୍ୟରେ ଚିରୁଲାଏ ହସ ଥିଲେ ମୁଁ ମୋ ରଚନାରେ ତାକୁ ଫୁଟାଇବାକୁ ଚେଷ୍ଟା କରେ।

ପ୍ରଶ୍ନ: କେଉଁ ଲେଖକମାନେ ଆପଣଙ୍କର ପ୍ରିୟ ? ଆପଣ କେତେଦୂର ସେମାନଙ୍କ ଦ୍ୱାରା ପ୍ରଭାବିତ ?

ଉତ୍ତର: ମୁଁ ରୁଷୀୟ ସାହିତ୍ୟର ଜଣେ ମୁଗ୍ଧ ପାଠକ। ରୁଷୀୟ ପୃଷ୍ଠଭୂମି ଓ ଭାରତୀୟ ପୃଷ୍ଠଭୂମି ମଧ୍ୟରେ ଅନେକ ସାମଞ୍ଜସ୍ୟ ରହିଛି। ତେଣୁ ଟଲଷ୍ଟୟ, ଚେକଭ, ଦସ୍ତୋଭସ୍କି ପ୍ରମୁଖ ଲେଖକମାନଙ୍କ ଦ୍ୱାରା ମୁଁ ବିଶେଷ ପ୍ରଭାବିତ। ଓଡ଼ିଆ ସାହିତ୍ୟରେ ସୁରେନ୍ଦ୍ର ମହାନ୍ତି, ମନୋଜ ଦାସ, ମହାପାତ୍ର ନୀଳମଣି ସାହୁ ପ୍ରମୁଖଙ୍କ ଲେଖା ପଢ଼ି ଛାତ୍ରାବସ୍ଥାରେ ସେମାନଙ୍କୁ ଆଦର୍ଶ ମନେକରି ଗଳ୍ପ ଲେଖୁଥିଲି। ଏବେ ମୁଁ ନିଜର ସ୍ୱାଭାବିକ ଶୈଳୀରେ ହିଁ ଲେଖୁଛି।

ପ୍ରଶ୍ନ: ଆପଣଙ୍କ ଲେଖାରେ ସମ୍ବେଦନଶୀଳତା ବହୁଳ ଭାବେ ପରିଲକ୍ଷିତ ହୁଏ। ଏହା ଆପଣଙ୍କ ବ୍ୟକ୍ତିଗତ ଜୀବନର ପ୍ରତିଫଳନ କି ?

ଉତ୍ତର: ଲେଖକ ପରୋକ୍ଷରେ ବା ପ୍ରତ୍ୟକ୍ଷରେ ନିଜର ବ୍ୟକ୍ତିତ୍ୱକୁ ଦର୍ଶାଉ ନ ଥାଏ କି ? ସାହିତ୍ୟରେ ସମ୍ବେଦନା ଏକ ମୁଖ୍ୟ ଅଂଶବିଶେଷ। ତାହା ହିଁ ପାଠକଙ୍କ ମନରେ ଗଭୀର ଛାପ ସୃଷ୍ଟି କରେ। ଜଣେ ଲେଖକ ବ୍ୟକ୍ତିଗତ ଜୀବନରେ ଦରଦୀ ନ ହେଲେ କାଳଜୟୀ ସୃଷ୍ଟି ସମ୍ଭବ ନୁହେଁ। ଦଳିତ, ନିପୀଡିତ ଲୋକଙ୍କ ଜୀବନଚର୍ଯ୍ୟା ଚିତ୍ରଣରେ ମୁଁ ବେଶୀ ଆତ୍ମସନ୍ତୋଷ ଲାଭ କରେ।

ପ୍ରଶ୍ନ: ବୃତ୍ତିଗତ ଜୀବନ ଆପଣଙ୍କ ସାହିତ୍ୟକୁ କିଭଳି ଭାବେ ପ୍ରଭାବିତ କରିଛି ?

ଉତ୍ତର: ଅଧ୍ୟାପନାରୁ କର୍ମମୟ ଜୀବନ ଆରମ୍ଭ କରିଥିଲି। ସେ ପର୍ଯ୍ୟନ୍ତ ମୁଁ ବେଶୀ କବିତା ଲେଖୁଥିଲି। ରେଳବାଇ ଚାକିରିରେ ପଶି ଅନେକ ସ୍ଥାନ ଦେଖିବାର ସୁଯୋଗ ପାଇଛି ଏବଂ ଅନେକ ଚରିତ୍ରଙ୍କୁ ଭେଟିବାର ସୁଯୋଗ ପାଇଛି। ଅଧ୍ୟାପକ ଭାବେ ରହିଥିଲେ, ସାହିତ୍ୟ ସାଧନା ପାଇଁ ଆହୁରି ବେଶୀ ସୁଯୋଗ ପାଇପାରିଥାନ୍ତି। ରେଳବାଇ ଚାକିରି ମୋର ଦୃଷ୍ଟିର ଦିଗ୍‌ବଳୟକୁ ବେଶ୍ ପ୍ରସାରିତ କରିଛି।



# ମନେହୁଏ ଆଜିର ସାହିତ୍ୟ ଅସ୍ମିତା ପ୍ରାଧାନ୍ୟ

## ସୁପ୍ରଭା ରାୟ:

ଶିକ୍ଷକତା ଜୀବନରେ ସାହିତ୍ୟକୁ ଏକ ଅଧ୍ୟାୟ ମନେକରି ସୃଜନଶୀଳତାର ମନୋନିବେଶ କରିଆସିଛନ୍ତି ସୁପ୍ରଭା ରାୟ। ମୌଳିକ ସୃଷ୍ଟିଠାରୁ ସେ ଅଧିକ ପ୍ରାଧାନ୍ୟ ଦେଇଛନ୍ତି ଅନୁବାଦରେ। ନିଜସ୍ୱ ଦୁଇଟି କବିତା ସଂକଳନ, ଗୋଟିଏ ଗଳ୍ପ ସଂକଳନ ଓ ଗୋଟିଏ ଶିଶୁ କବିତା ସଂକଳନକୁ ବାଦ୍ ଦେଲେ ସେ ଅନୁବାଦ କରିଛନ୍ତି ଅନେକ ଗଳ୍ପ ଓ ଉପନ୍ୟାସ। ସାରସ୍ୱତ ସାଧକ ପାଇଁ ସେ ମଧ୍ୟ ପାଇଛନ୍ତି ଏକାଧିକ ସମ୍ମାନ।

ପ୍ରଶ୍ନ: ଆପଣଙ୍କର କେଉଁ କୃତିଟି ପାଠକଙ୍କ ନିକଟରେ ବହୁ ଭାବରେ ଆଦୃତ ହୋଇଛି ବୋଲି ଭାବୁଛନ୍ତି ?

ଉତ୍ତର: ମୋର ଅନୁବାଦ ଉପନ୍ୟାସ 'ପ୍ରଥମ ଅଙ୍କ ଶେଷ ଦୃଶ୍ୟ' ପୁସ୍ତକଟି ପାଠକମାନଙ୍କ ନିକଟରେ ବହୁଳ ଭାବରେ ଆଦୃତ ହୋଇଛି ବୋଲି ବିଶ୍ୱାସ। ଏହାର ମୂଳ ବଙ୍ଗଳା ଲେଖକ ଡଃ ନିହାର ରଞ୍ଜନ ଗୁପ୍ତା। ଏହି ଉପନ୍ୟାସ ସାହିତ୍ୟରେ ସମକାଳୀନ ସମାଜରେ ଦୃଷ୍ଟିଭଙ୍ଗୀ ବହୁ ଭାବରେ ପ୍ରତିଫଳିତ ହୋଇ ପାଠକୀୟ ପ୍ରତିକ୍ରିୟା ସୃଷ୍ଟି କରିବାରେ ସମର୍ଥ ହୋଇଛି।

ପ୍ରଶ୍ନ: ଆପଣ ଉଭୟ ସୃଷ୍ଟିରେ (ନିଜସ୍ୱ/ଅନୁବାଦ) ଓଡ଼ିଆ ସାହିତ୍ୟରେ ପିରାମିଡ ଗଢୁଛନ୍ତି ଏବଂ ସଫଳ ବି ହୋଇଛନ୍ତି, ତେବେ ନିଜସ୍ୱ ଲେଖାରେ ନା ଅନୁବାଦରେ କେଉଁଥିରେ ଅଧିକ ଆତ୍ମସନ୍ତୁଷ୍ଟି ପାଇଛନ୍ତି ?

ଉତ୍ତର: ସୃଜନର ଦୃଷ୍ଟିଭଙ୍ଗୀ ସର୍ବଦା ମଙ୍ଗଳକର, ସ୍ରଷ୍ଟା ତା'ର ପ୍ରତ୍ୟେକ ସୃଷ୍ଟିକୁ ନିଖୁଣ ଭାବରେ ଚିତ୍ରିତ କରିବାକୁ ଚାହେଁ। ହୃଦୟର ସବୁ ଭଲପଣକୁ ସେ ତା'ର ସୃଷ୍ଟିରେ ନିହିତ କରେ। ମୌଳିକ ହେଉ ଅଥବା ଅନୁବାଦ ତାକୁ ସବୁଗୁଡ଼ିକ ଆତ୍ମୀୟ ପରି ଲାଗନ୍ତି। ସ୍ରଷ୍ଟା କେବେ ତା'ର ଦୃଷ୍ଟିଭଙ୍ଗୀରେ ପାତର ଅନ୍ତର କରେନା, ସେହି କାରଣରୁ ମୁଁ ଦୁଇଟି ଯାକ ବିଭାଗରେ ସର୍ଜନା କରି ଆତ୍ମସନ୍ତୁଷ୍ଟି ପାଇଛି।

ପ୍ରଶ୍ନ: ଶିଶୁ କବିତା ଲେଖୁ ଲେଖୁ ବଡଙ୍କ ସାହିତ୍ୟ ରଚନାକୁ ପଶିଗଲେ କେମିତି ?

ଉତ୍ତର: ପ୍ରତ୍ୟେକ ସୃଜନ କର୍ମ ଆରମ୍ଭରୁ ହିଁ କୋମଳ ଥାଏ। ପରବର୍ତ୍ତୀ ସମୟରେ ତାହା ଶାଖା ମେଲାଇବା ସ୍ୱାଭାବିକ। ଜୀବନର ଅୟମାରମ୍ଭ ହିଁ ଶୈଶବ। ତେଣୁ ଶୈଶବର ଦରୋଟି କଥା ପ୍ରଥମେ ମନକୁ ଛୁଏଁ। ଶିଶୁର ମନସ୍ତତ୍ତ୍ୱ ଭିତରେ ମଣିଷର ସମଗ୍ର ଜୀବନକାଳକୁ ନିରେଖି ଦେଖି ହୁଏ।

ପ୍ରଶ୍ନ: ଆପଣ ଦୁଇପିଢ଼ିର ସାହିତ୍ୟ ଓ ପାଠକଙ୍କୁ ଦେଖିଛନ୍ତି, କହିବେ କି ଏ ଦୁଇ ପିଢ଼ିର ସାହିତ୍ୟ ଓ ପାଠକଙ୍କ ସମ୍ପର୍କରେ ?

ଉତ୍ତର: ପୂର୍ବରୁ ଯେଉଁ ସାହିତ୍ୟ ପାଠକୀୟ ମାଧୁର୍ଯ୍ୟ ଥିଲା ତାହା ଏବେ ଆଉ ନାହିଁ। ଏବେ ସାହିତ୍ୟ ସୁବୋଧ୍ୟ ଓ ବେଳେ ବେଳେ ଅସ୍ମିତାକୁ ପ୍ରାଧାନ୍ୟ ଦେବା ପରି ମନେ ହେଉଛି। ଜଣେ ଭାଷା ସାହିତ୍ୟର ଭଲ ପାଠକ କେବେହେଲେ ଅ-ସାହିତ୍ୟ ପ୍ରତି ଆଗ୍ରହ ପ୍ରକାଶ କରିବ ନାହିଁ। ଏଥିନେଇ ଅନେକ ସମୟରେ ସାହିତ୍ୟ ଓ ପାଠକୀୟ ପରୀକ୍ଷା ନିରୀକ୍ଷା କରାଯାଇ ନିର୍ଯ୍ୟାସ ମଧ୍ୟ ବାହାରିଛି।

ପ୍ରଶ୍ନ: ଅନୁବାଦ କରିବା ପୂର୍ବରୁ କେଉଁ ଦିଗରେ ବିଶେଷ ଧ୍ୟାନ ଦିଅନ୍ତି ?

ଉତ୍ତର: ଅନୁବାଦ କରିବା ପୂର୍ବରୁ ପ୍ରଥମେ ଯେଉଁ ଭାଷାକୁ ତାହା ଅନୁବାଦ କରାଯାଉଛି, ସେହି ଭାଷାର ମୌଳିକ ଢାଞ୍ଚାକୁ ପ୍ରତିହତ ନ କରି ସାବଲୀଳ ଭାଷାର ପ୍ରୟୋଗ ଜରୁରୀ। ଭାଷାର ସଂରଞ୍ଚନା ସହିତ ମୂଳ ରଚନାର ଭାବକୁ ଏକ ସକାରାତ୍ମକ ଦୃଷ୍ଟିଭଙ୍ଗୀରେ ଉପସ୍ଥାପନା କରିବା ହିଁ ଜଣେ ଭଲ ଅନୁବାଦକର ପ୍ରକୃତ ସଫଳତା।

ପ୍ରଶ୍ନ: ଏବେ କ'ଣ ଲେଖୁଛନ୍ତି ?

ଉତ୍ତର: ଏବେ କିଛି ମୌଳିକ ଗଳ୍ପ ଓ କବିତା ରଚନାରେ ମନୋନିବେଶ କରିଛି। ଅନୁବାଦ କାର୍ଯ୍ୟ ମଧ୍ୟ ଏହା ସହିତ ସମତାଳରେ ଚାଲିଛି।

ପ୍ରଶ୍ନ: ଜୀବନକୁ କେଉଁଭଳି ଦେଖନ୍ତି ?

ଉତ୍ତର: ଜୀବନର ଅର୍ଥ ବ୍ୟାପକ। ଏ ଦୁଃଖ ସୁଖର ପୃଥିବୀ ଭିତରେ ଜୀବନକୁ ନେଇ ସମତାଳରେ ବଞ୍ଚିବାକୁ ପଡ଼ିବ। ନିଜେ ବଞ୍ଚିବା ସହିତ ଅନ୍ୟକୁ ବଞ୍ଚାଇବା ପାଇଁ ସାହସ ମଧ୍ୟ କରିଛି।

ପ୍ରଶ୍ନ: ଅନ୍ୟମାନଙ୍କ ସାହିତ୍ୟ ପ୍ରତି ଆପଣଙ୍କ ପ୍ରତିକ୍ରିୟା କିପରି ?

ଉତ୍ତର: ପ୍ରତ୍ୟେକ ଲେଖକର ସକାରାତ୍ମକ ଲେଖାକୁ ମୁଁ ପ୍ରଶଂସା କରେ। ନକାରାତ୍ମକ ଲେଖାକୁ କେବେହେଲେ ପସନ୍ଦ କରେ ନାହିଁ। ସାହିତ୍ୟ ସର୍ବଦା ହିତକାରକ ଓ ମାନବ ଚେତନାର ଦ୍ୟୁତି। ତେଣୁ ଯେ କୌଣସି ନକାରାତ୍ମକ ରଚନାକୁ ମୁଁ ଘୃଣା ବି କରେ।

ପ୍ରଶ୍ନ: ଆଶାପୂର୍ଣ୍ଣା ଦେବୀଙ୍କ ରଚନାକୁ ଅଧିକ ଅନୁବାଦ କରିଛନ୍ତି ଆପଣ, କାହିଁକି ?

ଉତ୍ତର: କେବଳ ଆଶାପୂର୍ଣ୍ଣା ନୁହନ୍ତି, ଅନେକ ଭଲ ବହି ମଧ୍ୟ ଅନୁବାଦ କରିଛି। ମାତ୍ର ଆଶାପୂର୍ଣ୍ଣା ଦେବୀଙ୍କ ସୃଷ୍ଟିରେ ପରିବାରର ନିଛକ ଚିତ୍ର ଦେଖିବାକୁ ମିଳେ, ଯେଉଁଥିପାଇଁ ଅଧିକ ଅନୁବାଦ କରିବା ଲାଗି ମୁଁ ଆଗ୍ରହ ପ୍ରକାଶ କରିଛି। ଏହାଛଡା ଆଶାପୂର୍ଣ୍ଣା ଦେବୀଙ୍କ ଶ୍ରେଷ୍ଠ ଉପନ୍ୟାସ ମଧ୍ୟରୁ ଅନ୍ୟତମ 'ଶବ୍ ସାଧକ' ମୋ ଦ୍ୱାରା ଅନୁଦିତ ହୋଇ ଓଡିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ହୋଇଛି ।

ପ୍ରଶ୍ନ: ଆପଣଙ୍କ ମୌଳିକ ସୃଷ୍ଟି ବିଶେଷକରି ପାରିବାରିକ ଜୀବନଧାରା ଉପରେ ପର୍ଯ୍ୟବେସିତ। ଏହା କେତେ ବାସ୍ତବ, କେତେ କଳ୍ପନା ?

ଉତ୍ତର: କଳ୍ପନା ସହିତ ନିଜସ୍ୱ ଅନୁଭବ ଥାଏ। ଖାଲି କଳ୍ପନାରେ ସବୁ କିଛି କହିହୁଏନା। ପ୍ରଗାଢ଼ ଅନୁଭୂତି ସେଥିରେ ଅନୁରଣିତ ହେଲେ ରଚନା ମର୍ମସ୍ପର୍ଶୀ ହୋଇଥାଏ।

ପ୍ରଶ୍ନ: ଏବେ ଭାରତୀୟ ସାହିତ୍ୟରେ କେଉଁ ଅଭାବ ରହିଛି ?

ଉତ୍ତର: ଏବେ ଭାରତୀୟ ସାହିତ୍ୟରେ ମାନବୀୟ ମୂଲ୍ୟବୋଧର ଅଭାବ ରହିଛି ବୋଲି ମୋର ବ୍ୟକ୍ତିଗତ ମତ।

ପ୍ରଶ୍ନ: ଓଡ଼ିଆ ସାହିତ୍ୟର ଭବିଷ୍ୟତ କ'ଣ ବୋଲି ଭାବନ୍ତି ?

ଉତ୍ତର: ଓଡ଼ିଆ ସାହିତ୍ୟର ଭବିଷ୍ୟତ ମଙ୍ଗଳମୟ। ଅଥଚ ଅନେକ ଲେଖକ ସେମାନଙ୍କର ସୃଜନ ଦୃଷ୍ଟିଭଙ୍ଗୀ ପ୍ରତି ଅଣହେଳା କରୁଛନ୍ତି। ମୋ ମତରେ ଓଡ଼ିଆ ସାହିତ୍ୟ ପାଇଁ ପ୍ରତ୍ୟେକ ସାହିତ୍ୟିକ ସାମୂହିକ ଉଦ୍ୟମ ପ୍ରକାଶ କଲେ ଆମ ସାହିତ୍ୟର ପୂର୍ଣ୍ଣ ବିକାଶ ଆହୁରି ବେଗମାନ ହୋଇପାରିବ।

ପ୍ରଶ୍ନ: ଓଡ଼ିଆ ସାହିତ୍ୟର ଅନୁବାଦ ସମ୍ପର୍କରେ ଆପଣଙ୍କ ମତ ?

ଉତ୍ତର: ଓଡ଼ିଆ ସାହିତ୍ୟର ଅନୁବାଦ ଅନ୍ୟ ଭାରତୀୟ ଭାଷାରେ ହେବା ଅତ୍ୟନ୍ତ ଜରୁରୀ। ଏଥିପାଇଁ ସରକାରୀ ଓ ବେସରକାରୀ ଅନୁଷ୍ଠାନ ଜରିଆରେ ପ୍ରୋତ୍ସାହନ ଦେବା ଆବଶ୍ୟକ। ଆମ ସାହିତ୍ୟର ଅନେକ ସଫଳ କୃତି ଅନ୍ୟାନ୍ୟ ଭାରତୀୟ ଭାଷାରେ ଏ ଯାବତ୍ ଅନୁଦିତ ହୋଇନାହିଁ। ଏଥିପାଇଁ ସହୃଦୟତା ଲୋଡ଼ା। ସମ୍ମିଳିତ ଉଦ୍ୟମ ଜାରି ରହିଲେ ଏହା ସମ୍ଭବ ହୋଇପାରେ।





# କବିତା ନ ଥିଲେ
# ଜୀବନ ଯେମିତି ମରଣ ସମାନ

## ପ୍ରଭାକର ଶତପଥୀ:

କେବଳ କବିତା ନୁହେଁ, ସେ ମଧ୍ୟ ଗଦ୍ୟ ରଚନାରେ ହାତ ଦେଇଛନ୍ତି। କିନ୍ତୁ ପ୍ରଭାକର ଶତପଥୀ ପରିଚିତ ହେବାକୁ ଚାହାନ୍ତି କବି ଭାବରେ। କବିତା ଭିତରେ ସେ ଖୋଜନ୍ତି ଭଲ ପାଇବାର ମନ୍ତ୍ର। ତାଙ୍କ ମତରେ କବିତା ନ ଥିଲେ ଜୀବନ ଯେମିତି ମରଣ ସମାନ। କବିତାକୁ ନିଜର କରିଥିବା ଏହି କବିଙ୍କ ସହ ଅନ୍ତରଙ୍ଗ ଆଳାପ।

ପ୍ରଶ୍ନ: ଆପଣ କବିତା ଲେଖିବାକୁ କାହିଁକି ମନସ୍ଥ କଲେ ?

ଉତ୍ତର: କାରଣ କବିତା ମୋତେ ଭଲ ପାଇବାର ମନ୍ତ୍ର ଶିଖାଇଛି। ତେବେ ମୁଁ ଯେ ଗଳ୍ପ କି ଅନ୍ୟାନ୍ୟ ଗଦ୍ୟ ରଚନା ନ ଲେଖେ ତା ନୁହେଁ। କିନ୍ତୁ ସେ ସବୁ ରଚନା ଭିତରେ ମୁଁ କବିତାକୁ ଖୋଜେ। କବିତାକୁ ସେଠାରେ ଲାଳନ କରିବାକୁ ଚେଷ୍ଟାକରେ। କବିତା ନ ଥିଲେ ଜୀବନ ଯେମିତି ମରଣ ସମାନ ଗଦ୍ୟ ରଚନା ସେମିତି କବିତା ବିହୁନେ ରସଶୂନ୍ୟ ହୋଇଯାଏ। ସେଥିପାଇଁ କବିତାକୁ ମୁଁ ସବୁଠି ଓ ସବୁ ବସ୍ତୁରେ ଦେଖିଥାଏ।

ପ୍ରଶ୍ନ: କେଉଁ ନିର୍ଦ୍ଦିଷ୍ଟ ଲକ୍ଷ ଓ ଉଦ୍ଦେଶ୍ୟରେ ଆପଣ କବିତା ଲେଖନ୍ତି ?

ଉତ୍ତର: କବିତା ଲେଖିବାର ପ୍ରଥମ ଉଦ୍ଦେଶ୍ୟ ନିଜକୁ ସୂକ୍ଷ୍ମ ଓ ସଚେତନ ଭାବରେ ଚିହ୍ନିବା ଓ ପ୍ରକାଶ କରିବା। ଦ୍ୱିତୀୟରେ ସାରା ସଂସାର ପାଇଁ ସେ କବିତାକୁ ପ୍ରେରଣାର ଉତ୍ସ କରିବା। ଶେଷରେ ଜୀବନର ଉତ୍ତରଣ ପାଇଁ କବିତା ଭିତରେ ନିଃଶେଷ ହୋଇଯିବା। କବିତା ଆଟମ୍ ବମ୍ ଖାଲି ତିଆରି କରେ ନାହିଁ। ସମଗ୍ର ଜାଗତିକ ଓ ମହାଜାଗତିକ ବିଶ୍ୱକୁ ଧରି ରଖିବାର ସାମର୍ଥ୍ୟ ସୃଷ୍ଟି କରେ।

ପ୍ରଶ୍ନ: ତେବେ ବି ଏବର କବିତାରେ ସେହି ସ୍ଫୁରଣ ଅଭାବ ପରିଲକ୍ଷିତ ହୁଏ। ଆପଣ କ'ଣ କହିବେ ?

ଉତ୍ତର: କବିତା ଆଟମବମ୍ ତିଆରି କରେ ନାହିଁ, ଆଟମବମ୍‌ଠାରୁ ଆହୁରି ଶକ୍ତିଶାଳୀ ବିସ୍ଫୋରକ ପ୍ରାଣ ଭିତରେ ସୃଷ୍ଟି କରିପାରେ। ତେବେ ସେ ବିସ୍ଫୋରଣ କିଛି ଭାଙ୍ଗିଦେଇପାରେ ଧ୍ୱଂସ ବି କରିପାରେ। ହେଲେ ଧ୍ୱଂସାବଶେଷ ଭିତରେ ଗଢ଼ିବାର, ସର୍ଜନା କରିବାର ବୀଜଟିକୁ ସୂକ୍ଷ୍ମ ଭାବରେ ସାଇତି ବି ଦିଏ ଯାହାପାଇଁ ଆପଣ ଏକ ଚରମ ଆନନ୍ଦର କଥାକୁ ଅନୁଭବ କରିପାରନ୍ତି। କବିତାର ଯେଉଁ ସାମର୍ଥ୍ୟ କଥା ପଚାରୁଛନ୍ତି ତାହା ଯଦି ଆଜିର କବିତାରେ ନାହିଁ ବୋଲି ଅନୁଭବ କରୁଛନ୍ତି ତା'ହେଲେ ଆପଣଙ୍କୁ ସେହିଦିନକୁ ଅପେକ୍ଷା କରି ରହିବାକୁ ପଡ଼ିବ, ଯେଉଁଦିନ ସେପରି କବିତାର ସ୍ଫୁରଣ ଘଟିବ। କବିତା ସବୁବେଳେ ଆସେ ନାହିଁ। କେତେବେଳେ ବୁନ୍ଦାଏ ଲୁହରେ ତ କେତେବେଳେ ଛୋଟିଆ ସ୍ମିତଟିରେ ଆପଣଙ୍କର ଆକାଂକ୍ଷିତ କବିତା ହୁଏତ ଆସିଯାଇପାରେ।

ପ୍ରଶ୍ନ: ବେଳେ ବେଳେ କବିଙ୍କ କବିତାରେ ଯୋଗସୂତ୍ର ରହୁ ନ ଥିବା ଅନୁମିତ ହୁଏ ଏହାର କାରଣ କ'ଣ ହୋଇପାରେ ?

ଉତ୍ତର: କାରଣ ହେଉଛି ସାମର୍ଥ୍ୟ। ସାମର୍ଥ୍ୟ ନ ଥିଲେ ସଂହତି ଆସିବ କେମିତି ?

ପ୍ରଶ୍ନ: ଆପଣଙ୍କ କବିତାରେ ସାମାଜିକ ଚେତନା ଭରପୂର। ଏହା ସମାଜକୁ କେତେ ଜାଗ୍ରତ କରିଛି ବୋଲି ଭାବୁଛନ୍ତି ?

ଉତ୍ତର: ଏ ପ୍ରଶ୍ନର ଉତ୍ତର ଦେଇପାରିବି ନାହିଁ, ଦେବେ ମୋର କବିତାର ପାଠକଗଣ। ତେବେ କବିର ସାମାଜିକ ଚେତନା କହିଲେ ମୁଁ ତଥାକଥିତ ସମାଜକୁ ବୁଝେନାହିଁ। ବୁଝେ ଏକ ବୃହତ୍ତର ମଣିଷ ଗୋଷ୍ଠୀକୁ। ସେହି ମଣିଷମାନଙ୍କ ଆବେଦନ, ଦୁଃଖ, ଯନ୍ତ୍ରଣା ଓ ଭଲପାଇବା ହିଁ ମୋ ସାମାଜିକ ଚେତନା କବିତାଗୁଡ଼ିକର ମୁଖ୍ୟ ଉପଜୀବ୍ୟ।

ପ୍ରଶ୍ନ: ଅପଣଙ୍କ କବିତାରେ କେଉଁ ସ୍ୱର ବିଶେଷ ଗୁରୁତ୍ୱ ପାଇଛି ବୋଲି ଭାବନ୍ତି ?

ଉତ୍ତର: ମୋ ପ୍ରତିରୋଧ ରକ୍ତ ବୁହାଇବା ପାଇଁ ନୁହେଁ, ରକ୍ତ ବୋହୁଥିବା ଘା'ରେ ମଲମ ଟିକେ ବୋଳିଦେବା ପାଇଁ। ଲୁହ ଢ଼ଳ ଢ଼ଳ ଆଖିକୁ ଅପୂର୍ବ ସ୍ମିତଟିଏ ଫେରାଇ ଦେବାପାଇଁ ସେମାନଙ୍କୁ ମୁଁ ଦୟାଦେଖାଏ ନାହିଁ। ସେମାନଙ୍କ ପ୍ରାଣରୁ ନିଗିଡ଼ି ଆସୁଥିବା କରୁଣାକୁ ସାରା ସଂସାରକୁ ବାଣ୍ଟି ଦେବା ପାଇଁ ମୁଁ କବିତା ଲେଖେ।

ପ୍ରଶ୍ନ: ଯୋଜନା କରି କବିତା ଲେଖନ୍ତି ନା ଆକସ୍ମିକ ?

ଉତ୍ତର: ନା, କବିତା ଆସେ ଯେମିତି ଫୁଲ ଭିତରୁ ସୁଗନ୍ଧ। ତେବେ କବିତା ଲେଖିବାର ପ୍ରଚେଷ୍ଟାଟିଏ ନିଜ ଭିତରେ ମୁଁ ସବୁବେଳେ ଜାରି ରଖିଥାଏ। ସେହି ପ୍ରଚେଷ୍ଟାରୁ କେତେବେଳେ କବିତାଟିଏ ଉତୁରିପଡ଼େ। ତେବେ 'କାଳିସୀ ଲାଗିବା' କଥା ଯେଉଁମାନେ କହନ୍ତି ସେମାନେ ତୁଚ୍ଛା ପ୍ରବଣତାରେ ହିଁ ବିଶ୍ୱାସ କରନ୍ତି, କବିତାର ସୂକ୍ଷ୍ମ ଚେତନାରେ ନୁହେଁ।

ପ୍ରଶ୍ନ: ଜଣେ କବି ପାଇଁ କ'ଣ କ'ଣ ପ୍ରତିବନ୍ଧକ ଥାଇପାରେ ?

ଉତ୍ତର: ପ୍ରତିବନ୍ଧକର କିଛି ନିର୍ଦ୍ଦିଷ୍ଟତା ନ ଥାଏ। ପ୍ରତିବନ୍ଧକମାନଙ୍କୁ ଏଡ଼େଇ ଚାଲିବା ତ କବି କର୍ମ। ତେଣୁ ସେମାନଙ୍କ ହିସାବ କରି କିଛି ଲାଭ ନାହିଁ। କବିକୁ ଯଦି ଜୀବନ ଜିଇବାର ମାର୍ଗ ଜଣାଅଛି ତେବେ ସକଳ ପ୍ରତିବନ୍ଧକକୁ ଏଡ଼େଇ ତା'ର କବିତା ମହାନଦୀ ଜୀବନର ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ଚାଲିଯିବ। ଆରମ୍ଭ କି ଶେଷ ଖୋଜାଯିବ ନାହିଁ। ପ୍ରତିରୋଧ ଓ ପ୍ରତିବନ୍ଧକକୁ ସାମ୍ନା କଲେ ସିନା କବିତା ବିଜୁଳି ପରି ଚକ୍‌ଚକ୍ କରିବ।

ପ୍ରଶ୍ନ: ଆପଣଙ୍କ କବିତାରେ ପାବ୍‌ଲୋ ନେରୁଦାଙ୍କ ଝଲକ ମିଳେ, ଏହି ସଂଯୋଗ କିପରି ?

ଉତ୍ତର: ପାବ୍ଲୋ ନେରୁଦା ? ଆପଣଙ୍କ ଏ ପ୍ରଶ୍ନ ମୋତେ ଗଭୀର ଭାବେ ଆଲୋଡ଼ିତ କରୁଛି। ନେରୁଦା ମୋର ପ୍ରିୟ କବି। ବେଳେ ବେଳେ ଇଚ୍ଛା ହୁଏ ସେ ଟେକି ଧରିଥିବା ମଦ ଗ୍ଲାସଟିକୁ ଛଡେଇ ଆଣି ଢ଼କ ଢ଼କ ପିଇଯିବାକୁ। ହେଲେ ସେ ଭାଗ୍ୟ ମୋର କାହିଁ ? ପାବ୍ଲୋ ନେରୁଦାଙ୍କର ଝଲକ ଆପଣ ଯଦି ମୋ କବିତାରେ ଆବିଷ୍କାର କଲେ ସେ ଆବଷ୍କାର ତ ଆପଣଙ୍କର। ମୋର ଖୁସି ଆପଣ ମୋ କବିତାକୁ ଜଣେ ସମଧର୍ମା ଭାବରେ ସହୃଦୟତାର ସହ ପଢ଼ିଛନ୍ତି ଓ ମତେ ଚିହ୍ନିବାକୁ ଚେଷ୍ଟା କରିଛନ୍ତି। ତାହା ହିଁ ଯଥେଷ୍ଟ।





# କବିତା ହୃଦୟର ସ୍ପନ୍ଦନ

## ରାଜୁ ସାମଲ:

କେବଳ ଓଡ଼ିଆରେ ନୁହେଁ, ଇଂଲିଶରେ କବିତା ମଧ୍ୟ ଲେଖନ୍ତି ରାଜୁ ସାମଲ। ଅଦ୍ୟାବଧି ତାଙ୍କର ୪ଟି ଓଡ଼ିଆ କବିତା ସଂକଳନ, ୪ଟି ଇଂଲିଶ କବିତା ସଂକଳନ ପ୍ରକାଶିତ। ପୁଣେସ୍ଥିତ ନ୍ୟାସ୍‌ନାଲ ଇନ୍‌ସ୍ୟୁରାନ୍ସ କମ୍ପାନୀରେ ପ୍ରଫେସରଥିବା ସାମଲଙ୍କ କବିତା ପ୍ରେମ, ରହସ୍ୟବାଦ, ଜୀବନର ସୁନ୍ଦର ଭାବନା ସହ ଆମେ ଭୋଗୁଥିବା ଯନ୍ତ୍ରଣାର ସ୍ୱୀକାରୋକ୍ତି ପ୍ରକାଶିତ। ତାଙ୍କ ମତରେ କବିତା ହୃଦୟର ସ୍ପନ୍ଦନ, ସେହି ସ୍ପନ୍ଦନ କେତେବେଳେ କେଉଁ ଭାଷାରେ କେଉଁ ରୂପରେ ଜନ୍ମନିଏ ତାହା କବି ଜାଣି ନ ଥାଏ। ସାମଲଙ୍କ ସହ ହୋଇଥିବା ସଂକ୍ଷିପ୍ତ ଆଳାପ...

ପ୍ରଶ୍ନ: ଜୀବନର ଚଲାପଥରେ ନିଜକୁ କବି ଭାବେ କେତେବେଳେ ଆବିଷ୍କାର କରନ୍ତି ଓ ପ୍ରଥମ କବିତାର ପୁଲକରେ ଶିହରିତ ହେଲେ କେବେ ?

ଉତ୍ତର: କବିତା କେତେବେଳେ ଆସେ ତାହା କବି ଜାଣିବା ଅସମ୍ଭବ, କବିତା ଆସିଲେ ପୃଥିବୀର ସମସ୍ତ ଆନନ୍ଦ ଶରୀରକୁ ପୁଲକିତ କରେ, କବିତାର ବର୍ଷାରେ ଭିଜିଯାଏ କବିର ସତ୍ତା। ମୋ ଜୀବନରେ କବିତା ଆସିଥାଏ ଯାତ୍ରା କରିବାବେଳେ ଆକାଶର ଜହ୍ନକୁ ଦେଖି। ନୀଳନଦୀର ଡଙ୍ଗା ଉପରେ ଶୋଇରହି, ଏମିତି କିଛି... ପ୍ରତ୍ୟେକ କବିତା ମୋତେ ପ୍ରଥମ କବିତା ଭଳି ଲାଗେ।

ପ୍ରଶ୍ନ: ଓଡ଼ିଆ କବିତାରେ ନୂତନ ଶୈଳୀରେ ଆପଣ ଲେଖିଛନ୍ତି ଓ ସରଳ ଶବ୍ଦ ସଂଯୋଜନାରେ ପ୍ରେମ ଓ ରହସ୍ୟବାଦୀ ଚିନ୍ତନକୁ କେମିତି ଆପଣେଇ ପାରିଛନ୍ତି ?

ଉତ୍ତର: ସତକଥା କହିବାକୁ ଗଲେ ମୁଁ କେଉଁ ଶୈଳୀରେ କବିତା ଲେଖିଛି, ଜାଣିନି। ମନକୁ ଖାଲି କବିତା ଆସେନି, କେଉଁ ଶୈଳୀରେ ଏହା ଲେଖାଯିବ ତାହା ଆସେ। କବିତାର ଉତ୍ସ ଓ ପ୍ରକାଶନ ଭିତରେ ମୁଁ ନ ଥାଏ। ଏ ପ୍ରଶ୍ନର ଉତ୍ତର ଭାଷାରେ ପ୍ରକାଶ କରିବା ସମ୍ଭବ ନୁହେଁ।

ପ୍ରଶ୍ନ: ଆପଣ ଉଭୟ ଓଡ଼ିଆ ଓ ଇଂଲିଶ ଭାଷାରେ କବିତା ଲେଖନ୍ତି। ନିଜକୁ ଅଭିବ୍ୟକ୍ତ କରିବାରେ କେଉଁଠି ସହଜ ଓ ସାବଲୀଳ ମନେହୁଏ ?

ଉତ୍ତର: କବିତା ଆସିବା ପୂର୍ବରୁ ମୋ ହୃଦୟ ଭିତରେ ଏକ ସ୍ପନ୍ଦନ ଆସିଯାଏ, ଯାହାର କିଛି ଭାଷା ନ ଥାଏ। ତା' ପରେ ପରେ ତାହା କେଉଁ ଭାଷାର ରୂପ ନିଏ, ତା'ର ଅଭିବ୍ୟକ୍ତି ମୋ ହାତରେ ନ ଥାଏ। ସେଇ ଭାବ ଆପେ ଆପେ ତା'ର ଭାଷା ବାଛିନିଏ।

ପ୍ରଶ୍ନ: ଆମେ ବଞ୍ଚୁଥିବା ସମୟର ସ୍ୱର ଓ ଜୀବନ ଦର୍ଶନକୁ ଆପଣଙ୍କ ଇଂଲିଶ କବିତା ସଂକଳନ "Many moods of Mumbai"ରେ କେମିତି କରିଛନ୍ତି ?

ଉତ୍ତର: ମୁମ୍ବାଇ ଏକ ଅଦ୍ଭୁତ ସହର। ଯେଉଁଠି ମଣିଷ ନିଜକୁ ବ୍ୟସ୍ତତା ଭିତରେ ହଜେଇ ଦେଇ ତା'ର ମାନବିକତାକୁ ବଳି ଦେଇଛି। ସେଠି ମଣିଷ ପାଖରେ ପଇସା ଅଛି, ବଞ୍ଚିବା ପାଇଁ ସମୟନାହିଁ। ପ୍ରତିଟି ମଣିଷ ମନରେ ଉଦ୍‌ବେଗ, ଲକ୍ଷ୍ୟହୀନ ଭାବେ ଦଉଡ଼ି ଚାଲିବାର ଭାବ ପ୍ରସ୍ଫୁଟିତ। ଏହା ସଭ୍ୟ ସମାଜ ପାଇଁ ସବୁଠୁ ଦୁଃଖଦାୟକ କଥା। ସେଠି ସଭ୍ୟତା ଆଗକୁ ଚାଲିଛି ଓ ଜୀବନର

କବିତା ଶୁଣି ଶୁଣି ନିଷ୍ପ୍ରାଣ ହୋଇଯାଉଛି। ସେ ସହରରେ ଜଣେ କବି ଜନ୍ମନେବା ଅସମ୍ଭବ। ସେଠି ମଣିଷ ହୃଦୟକୁ କବିତାର କୋମଳତା ଆସିବା ବେଶ୍ ଅସମ୍ଭବ। ଷ୍ଟକ୍ ଏକ୍ସଚେଞ୍ଜର ଉତ୍ଥାନ ଓ ପତନରେ ମଣିଷର ହୃଦୟ ସ୍ପନ୍ଦିତ ହୁଏ। ଏହି ସାମାଜିକ ବ୍ୟବସ୍ଥା ଭିତରେ ଭାଙ୍ଗିଯାଉଥିବା ମଣିଷର ଦୃଶ୍ୟ ଏଇ କବିତା ସଂକଳନ ଲେଖିବାକୁ ପ୍ରେରଣା ଦେଇଛି।

ପ୍ରଶ୍ନ: ଆପଣଙ୍କ କବିତା ସଂକଳନମାନଙ୍କରେ ଆପଣ ସରା ମଧ୍ୟରେ ଧରା ଧରିବାର ପ୍ରୟାସ କରି କେତେ ମାତ୍ରାରେ ସଫଳ ଭାବୁଛନ୍ତି ?

ଉତ୍ତର: ପ୍ରୟାସ କରି କବିତା ଲେଖିବା ଅପେକ୍ଷା କବିତା ନ ଲେଖିବା ବରଂ ଭଲ। ତେଣୁ ଯେଉଁ କବିତା ହୃଦୟରୁ ଆସେ ତାହା ଆପେ ଆପେ ଆସେ। ଏଇସବୁ କବିତା ଆସିବାବେଳେ ମୁଁ ଆକାଶଛୁଆଁ ଆନନ୍ଦ ପାଇଥାଏ। ଯେଉଁ କବିତା କବିକୁ ସ୍ୱର୍ଗୀୟ ଆନନ୍ଦ ଦେଇଥାଏ ତାହା ପାଠକକୁ ସେଇ ଅନୁପାତରେ ଆନନ୍ଦ ଦେଇଥାଏ ବୋଲି ମୋର ଆଶା।

ପ୍ରଶ୍ନ: ତେବେ କ'ଣ ବୌଦ୍ଧିକ କବିତା ଲେଖିବା ଉଚିତ ନୁହେଁ ?

ଉତ୍ତର: କେଉଁ ପ୍ରକାର କବିତା କବି ଲେଖିବ ତାହା ତା'ର ଅନୁଭୂତି, ଭାବ ପ୍ରବଣତା ଓ ପାରିପାର୍ଶ୍ୱିକ ସ୍ଥିତି ଉପରେ ନିର୍ଭର କରେ। କବିତାର ବିଷୟବସ୍ତୁ ଉପରେ ନ କରି ବିଷୟବସ୍ତୁର ନୂତନତ୍ୱ ଓ ସମସ୍ତଙ୍କ ହୃଦୟକୁ ଛୁଇଁପାରିଲା ଭଳି ହେବା କଥା। ଯେମିତି କବିର, ଭୀମ ଭୋଇ ତାଙ୍କ କବିତାର ଗଠନ କିମ୍ବା ତତ୍ତ୍ୱ ଜାଣିଶୁଣି ନିର୍ଣ୍ଣୟ କରି ନ ଥିଲେ।

ପ୍ରଶ୍ନ: ଆପଣଙ୍କ କବିତା ବହୁ ସମୟରେ ବ୍ୟକ୍ତିଗତ ଅନୁଭବକୁ ଅତିକ୍ରମ କରି ଏକ ବୃହତ୍ତର ଜଗତକୁ ପ୍ରବେଶ କରିଥାଏ। ଯେଉଁଠି ଜୀବନ ଓ ଜଗତ ଉଭୟକୁ ଖୁବ୍ ପାଖରେ ଅନୁଭବ କରିହୁଏ। ସେମିତି କିଛି ଅନୁଭବର କଥା କହିବେ ?

ଉତ୍ତର: ମୁଁ ୧୯୯୩ ମସିହାରେ 'ଶାନ୍ତି ପ୍ରତିଧ୍ୱନି' ଲେଖିବାବେଳେ ମୋ ଭିତରେ ଯେମିତି ଜଣେ ମହାପୁରୁଷଙ୍କର ସତ୍ତା ଆବିର୍ଭାବ ହୋଇ ଅଡ଼ଚାଳିଶ ଘଣ୍ଟା ଭିତରେ ସମ୍ପୂର୍ଣ୍ଣ କବିତା ବହିଟିଏ ଲେଖେଇ ଦେଇଥିଲା। ତାହା ଭାଷାରେ ପ୍ରକାଶ କରିବା ସମ୍ଭବ ହୋଇ ନ ଥିବାରୁ ତାଙ୍କୁ କୃତଜ୍ଞତା ଜ୍ଞାପନ କରି 'ନ ଥିବା ଗଛର ଛାଇ' ଲେଖିଲାବେଳେ ବି ମୁଁ ସେଇ ସତ୍ତାଟିକୁ ଅନୁଭବ କରୁଥିଲି।

ପ୍ରଶ୍ନ: ଏକା ସମୟରେ ଲିଖିତ ଦୁଇଟି ପୁସ୍ତକ ପରସ୍ପର ଭିନ୍ନ କେମିତି ?

ଉତ୍ତର: ସେଇ ପ୍ରଜ୍ଞାପୁରୁଷଙ୍କର ଅସୀମତା ଖୁବ୍ ରହସ୍ୟମୟ। ସେ କେଉଁ ଭାବରେ ପ୍ରସ୍ଫୁଟିତ ହେବେ ତାହା କୌଣସି କବିର ହାତରେ ନ ଥାଏ। ତେଣୁ ବିଭିନ୍ନ ସମୟରେ ଆସି ସେ ହୃଦୟ ଭିତରେ ଯାହା ଗୁଞ୍ଜରିତ କରିଦେଇ ଯାଆନ୍ତି ତାହା କବିତା ହୋଇଥାଏ... ଯେତିକି "ଶବଦ ଭିତରେ ନିଃଶବଦେ ରହି ନିଜେ ଲେଖି ହୋଇଯାଅ/ଦୁନିଆଁ ଯାହାକୁ କବିତା କହଇ ସେ ଭାବରେ ତୁମେ ଥାଅ।"

ପ୍ରଶ୍ନ: ଓଡ଼ିଆ ସାହିତ୍ୟରେ ଅନେକ କ୍ଲାସିକ ଲେଖା ଥିଲେ ବି ବିଶ୍ୱ ସାହିତ୍ୟକୁ ପ୍ରବେଶ କରିପାରିନି କିନ୍ତୁ ଆପଣଙ୍କ ପକ୍ଷେ ଏହା ସମ୍ଭବ କିପରି ?

ଉତ୍ତର: ପ୍ରାଚୀନ ଓ ଆଧୁନିକ ଓଡ଼ିଆ ସାହିତ୍ୟ ପୃଥିବୀର ଯେ କୌଣସି ଉନ୍ନତ ଭାଷାର ସାହିତ୍ୟ ସମକକ୍ଷ ଅଟେ। ଆମର ଗଙ୍ଗାଧର ମେହେରଙ୍କର 'ତପସ୍ୱିନୀ' ରବୀନ୍ଦ୍ରନାଥ ଟାଗୋରଙ୍କ କବିତା ସହ ସମକକ୍ଷ ହେବାକୁ ଯୋଗ୍ୟ। ଗୋପୀନାଥ ମହାନ୍ତିଙ୍କର 'ପରଜା' (୧୯୪୪), ଆଫ୍ରିକା ମହାଦେଶର ଚିନୁଆ ଆଚିବିଙ୍କ 'Things Fall Apart' ଅପେକ୍ଷା କୌଣସି ଗୁଣରେ କମ୍ ନୁହେଁ। କିନ୍ତୁ ଆମର ନିମ୍ନକୋଟିର ଇଂଲିଶ ଅନୁବାଦ ଯୋଗୁ ଆମେ ଆମର ସାହିତ୍ୟକୁ ବିଶ୍ୱ ସ୍ତରରେ ପହଞ୍ଚାଇ ପାରିନାହୁଁ।

ପ୍ରଶ୍ନ: ଆପଣ ଉପନ୍ୟାସ ମଧ୍ୟ ଲେଖନ୍ତି, ସେ ସମ୍ପର୍କରେ କିଛି କହିବେ ?

ଉ. ମୁଁ ଏବେ ଏକ ଇଂଲିଶ ଉପନ୍ୟାସ ଲେଖିବାରେ ବ୍ୟସ୍ତ ଅଛି। ଭଗବାନଙ୍କର ଆର୍ଶୀବାଦ ଥିଲେ ଏଇ ଉପନ୍ୟାସଟି ଭବିଷ୍ୟତରେ ପାଠକମାନଙ୍କ ପାଖରେ ଉପଲବ୍ଧ ହେବ। ଏଇ ଉପନ୍ୟାସରେ ଆମେ ଭୋଗୁଥିବା ସମୟ ଓ ସମାଜର ସ୍ୱର ପ୍ରତିଫଳିତ ହେଉଛି।

ପ୍ରଶ୍ନ: ଆପଣଙ୍କ ପାଠକୀୟ ଆଦୃତି ଖୁବ୍ ଅଧିକ ଏବଂ ଦୃଢ଼। ଏ ସମ୍ପର୍କରେ ଆପଣଙ୍କ ପ୍ରତିକ୍ରିୟା କିପରି ?

ଉ. ମୋର 'Beyond the clouds' ବରିଷ୍ଠ ସମାଜସେବୀ ସ୍ୱର୍ଗତ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ରବି ରାୟ, ବିଶିଷ୍ଟ ଔପନ୍ୟାସିକ ଦିଲୀପ ବନ୍ଦୋପାଧ୍ୟାୟଙ୍କର ପାଠକୀୟ ଅଭିବ୍ୟକ୍ତି ଅବିସ୍ମରଣୀୟ। ଦିଲୀପ ବନ୍ଦୋପାଧ୍ୟାୟଙ୍କ ଉକ୍ତି After Tagore's Gitanjali, the book I enjoyed most is Raju Samal's Beyond the clouds' ଏବଂ ପ୍ରସିଦ୍ଧ ସାହିତ୍ୟିକ ଖୁସ୍‌ୱନ୍ତ ସିଂହଙ୍କର ପାଠକୀୟ ପ୍ରତିକ୍ରିୟା ଥିଲା "Samal writes short poems which speak volumes", 'Many moods of Mumbai' ପଢ଼ି ପ୍ରସିଦ୍ଧ ଚଳଚ୍ଚିତ୍ର ନିର୍ଦ୍ଦେଶକ ଶ୍ୟାମ ବେନେଗାଲ୍ ପ୍ରଶଂସା କରିଥିଲେ।



# ମୂଳ ରଚନାର ଅନୁଭବ ହିଁ ଅନୁବାଦର ସାର୍ଥକତା

## ଚନ୍ଦ୍ରଶେଖର ଦାସବର୍ମା:

ପନ୍ଦରଟି ଗଳ୍ପ ସଂକଳନ, ସାତଟି ଅନୁବାଦ ପୁସ୍ତକ, ତିନୋଟି ନାଟକ ରଚନା କରିଥିବା ଚନ୍ଦ୍ରଶେଖର ଦାସବର୍ମା ପେସାରେ ଜଣେ ଇଞ୍ଜିନିୟର। ଜନସ୍ୱାସ୍ଥ୍ୟ ବିଭାଗର ମୁଖ୍ୟଯନ୍ତ୍ରୀ ପଦରୁ ଅବସର ଗ୍ରହଣ କରିଥିବା ଦାସବର୍ମା ଦୀର୍ଘ ୩୫ବର୍ଷ ଧରି ସାହିତ୍ୟ ସାଧନାରେ ନିଜକୁ ନିମଜ୍ଜିତ କରି ରଖିଆସିଛନ୍ତି। ଓଡ଼ିଶା ସାହିତ୍ୟ ଏକାଡେମୀର ସମ୍ପାଦକଭାବେ ଦୁଇବର୍ଷ କାର୍ଯ୍ୟ କରିଛନ୍ତି ସେ। ଏବେ ଏକାଡେମୀର ଉପସଭାପତି ପଦରେ କାର୍ଯ୍ୟରତ। ଏତଦ୍‌ବ୍ୟତୀତ ସେ ଉତ୍କଳ ସାହିତ୍ୟ ସମାଜ, ଓଡ଼ିଶା ଲେଖକ ସାମ୍ମୁଖ୍ୟ, ସାରଳା ସାହିତ୍ୟ ସଂସଦ ଆଦିରେ ଆଜୀବନ ସଦସ୍ୟ ମଧ୍ୟ ଅଛନ୍ତି। 'ଗୋଟିଏ ଗଧର ଆତ୍ମକଥା' ଅନୁବାଦ ପୁସ୍ତକ ପାଇଁ ୧୯୯୯ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିବା ଦାସବର୍ମା କହନ୍ତି- ଓଡ଼ିଆ ଭାଷା ସାହିତ୍ୟର ଖ୍ୟାତନାମା ସ୍ରଷ୍ଟାମାନଙ୍କ ପୁସ୍ତକ ଅନ୍ୟଭାଷାରେ ଅନୂଦିତ ହେବା ଆବଶ୍ୟକ, ଯଦ୍ଦ୍ୱାରା ଆମ ସାହିତ୍ୟ ବାହାରେ ପରିଚିତ ହୋଇପାରିବ। ତାଙ୍କ ସହ ହୋଇଥିବା ସଂକ୍ଷିପ୍ତ ଆଳାପ।

ପ୍ରଶ୍ନ: କେବଳ ଗଳ୍ପ ଲେଖାରେ ମନୋନିବେଶ କଲେ କାହିଁକି ?

ଉତ୍ତର: ସାହିତ୍ୟ ଅର୍ଥହେଲା ସମାଜର ହିତସାଧନ କରିବା। ଏଣୁ ଯଦି ଲେଖନୀ ମାଧ୍ୟମରେ ମୁଁ ସମାଜର ଚଳଣିରେ, ଆଚାର ବ୍ୟବହାରରେ କିଛି ପରିବର୍ତ୍ତନ ଆଣିପାରିଲି ତାହା ହିଁ ହେବ ମୋର ସମାଜ ପ୍ରତି କିଛିଟା କର୍ତ୍ତବ୍ୟ। ଏଣୁ ମୋର ଗଳ୍ପଗୁଡିକରେ ସାଧାରଣ ମଣିଷମାନଙ୍କର ଜଞ୍ଜାଳ, ଦୁଃଖକଷ୍ଟ ଇତ୍ୟାଦି ପ୍ରତିଫଳିତ। ତା'ପରେ ଗଳ୍ପ ଏକ ସୂକ୍ଷ୍ମକଳା ଏବଂ ସବୁଠାରୁ ଏକ ଭଲ ଗଳ୍ପର କଳା ହେଲା ତାହା କିଭଳି ଭାବରେ ପାଠକ ମନରେ ପ୍ରଭାବ ବିସ୍ତାର କରିପାରୁଛି। ସେଥିପାଇଁ ମୁଁ ଗଳ୍ପ ଲେଖାରେ ମନୋନିବେଶ କରିଛି।

ପ୍ରଶ୍ନ: 'ଗୋଟିଏ ଗଧର ଆତ୍ମକଥା'କୁ ଅନୁବାଦ କରିବାକୁ ଇଚ୍ଛା କଲେ କାହିଁକି ?

ଉତ୍ତର: 'ଗୋଟିଏ ଗଧର ଆତ୍ମକଥା' ପ୍ରଖ୍ୟାତ କଥାକାର କୃଷ୍ଣଚନ୍ଦ୍ରଙ୍କ ଏକ ଉପନ୍ୟାସ। ମୋର ବିଶିଷ୍ଟ ଅନୁବାଦକ ବନ୍ଧୁ ଡ଼ଃ ଶଙ୍କରଲାଲ ପୁରୋହିତ ଦିନେ ମତେ ଏହି ବହିଟି ଧରାଇ ଦେଇ କହିଲେ ଏଇଟିକୁ ପଢ଼ ଆଉ ଅନୁବାଦ କର। ଦେଖ କେମିତି ଲାଗୁଛି। କହିବା ବାହୁଲ୍ୟ, ବହିଟି ପଢ଼ିବା ପାଇଁ ଏତେ ଭଲ ଲାଗିଲା ଯେ, ମୁଁ ତାକୁ ଅନୁବାଦ ନ କରି ରହିପାରିଲି ନାହିଁ। ବହିଟି ମଣିଷର ଚରିତ୍ରକୁ ବଦଳାଇବାକୁ ଯଥେଷ୍ଟ ଉପାଦାନ ଯୋଗାଇଛି।

ପ୍ରଶ୍ନ: ଆପଣଙ୍କ ରଚିତ 'The cloudy sky' ସମ୍ପର୍କରେ କହିବେ ?

ଉତ୍ତର: 'The cloudy sky' ବହିଟି ମୋର ଗଳ୍ପ ସଂକଳନ 'ମେଘୁଆ ଆକାଶ'ର ଇଂଲିଶ ଅନୁବାଦ- ଏହାର ପ୍ରକାଶକ ହେଉଛନ୍ତି କଲିକତାର 'ରାଇଟର୍ସ ୱାର୍କଶପ୍'। ବହିଟି ଇଂଲିଶରେ ଅନୁବାଦ ହେଲାପରେ ଅନ୍ୟଭାଷାର ଲୋକଙ୍କୁ ଆକର୍ଷଣ କଲା ଏବଂ ଏହା ପରେ ପରେ ମୋର ଗଳ୍ପ ସଂକଳନ ହିନ୍ଦୀ, ବଙ୍ଗଳା ଏବଂ ସଂସ୍କୃତ ଭାଷାରେ ମଧ୍ୟ ଅନୂଦିତ ହୋଇଛି। ଆଗରୁ କହିଛି ମୋର ଗଳ୍ପଗୁଡ଼ିକରେ ସାଧାରଣ ମଣିଷର ଜୀବନ ସମସ୍ୟାଠାରୁ ପ୍ରତିଫଳିତ ହୋଇଥାଏ।

ପ୍ରଶ୍ନ: ଆପଣ ଗଳ୍ପ ରଚନାବେଳେ ବିଶେଷତଃ କେଉଁ ବିଷୟବସ୍ତୁକୁ ବେଶି ଗୁରୁତ୍ୱ ଦେଇଥାନ୍ତି ?

ଉତ୍ତର: ମଣିଷ ଜୀବନ ଜଞ୍ଜାଳମୟ। ଆପଣମାନେ ଦେଖୁଥିବେ ମଣିଷ ଜୀବନୀର ସମସ୍ୟା ନେଇ ବହୁ ସମସ୍ୟା ଦେଖାଦେଇଛି। ନାରୀମାନଙ୍କୁ ସମାଜରେ ଅଣଦେଖା କରାଯାଉଛି। ଦିନ ଦ୍ୱିପ୍ରହରରେ ବ୍ୟାଙ୍କ ଲୁଟି ଘଟଣାଠାରୁ ଆରମ୍ଭ

କରି ଚୋରି, ଡକାୟତି, ଲୁଣ୍ଠନଠାରୁ ଆରମ୍ଭ କରି ସରକାରୀ ରାଜକୋଷରୁ କିପରି ଲୁଣ୍ଠନ ଚାଲିଛି ଏ ସବୁକୁ ନେଇ ମୋର ଗଳ୍ପ ସୃଷ୍ଟି ହୋଇଛି – ମଣିଷର ସମସ୍ୟାକୁ ଲେଖା ମାଧ୍ୟମରେ ଉପଯୁକ୍ତ ଭାବରେ ଫୁଟାଇପାରିବା ହେଉଛି ସାହିତ୍ୟିକର ଧର୍ମ।

ପ୍ରଶ୍ନ: ସାହିତ୍ୟରେ ଅନୁବାଦକୁ ଆପଣ କିପରି ଭାବେ ଦେଖନ୍ତି ?

ଉତ୍ତର: ଅନୁବାଦ ଏକ ସ୍ୱତନ୍ତ୍ର କଳା। କେବଳ ଆକ୍ଷରିକ ଅନୁବାଦ କରିଦେଲେ ତାହା ଅନୁବାଦ ହୁଏ ନାହିଁ। ଅନୁବାଦ କଲାବେଳେ ତାହା ଯେମିତି ମୌଳିକ ରଚନା ଭଳି ଅନୁଭବ ହେବ ଏବଂ ଯାହାକୁ ପଢ଼ିଲେ ପାଠକ ଭାବିବ ସତେ ଯେପରି ସେ ଏକ ମୌଳିକ ରଚନା ପାଠ କରୁଛି – ତାହାହିଁ ହେବ ଅନୁବାଦର ସାର୍ଥକତା।

ପ୍ରଶ୍ନ: ଓଡ଼ିଆ ସାହିତ୍ୟ ବହୁଳମାତ୍ରାରେ ଅନ୍ୟଭାଷାକୁ ଅନୁବାଦ ହେଉନାହିଁ ବୋଲି ଅଭିଯୋଗ ଶୁଣିବାକୁ ମିଳେ। ଏ ସମ୍ପର୍କରେ ଆପଣଙ୍କ ମତ କ'ଣ ?

ଉତ୍ତର: ମୁଁ ସାହିତ୍ୟ ଏକାଡେମୀ ସମ୍ପାଦକ ଥିଲାବେଳେ ସବୁବେଳେ ଚେଷ୍ଟା କରିଛି କେମିତି ଓଡ଼ିଆ ସାହିତ୍ୟର ଭଲ ବହି ସବୁ ଅନୁବାଦ ହୋଇ ଅନ୍ୟଭାଷାର ପାଠକମାନଙ୍କ ପାଖକୁ ଯାଉ। ଆମ ଓଡ଼ିଆ ଭାଷାର ଅନେକ ଲେଖକ ଅଛନ୍ତି ଯେଉଁମାନେ କି ଅନ୍ୟ ଭାରତୀୟ ଭାଷାର ଲେଖକଙ୍କଠାରୁ ବହୁ ଉପରେ। ଯଥା – ମନୋଜ ଦାସ, କାଳିନ୍ଦୀ ପାଣିଗ୍ରାହୀ, କାହ୍ନୁଚରଣ ମହାନ୍ତି, ଗୋପୀନାଥ ମହାନ୍ତି, ପ୍ରତିଭା ରାୟ, ଶାନ୍ତନୁ ଆଚାର୍ଯ୍ୟ, ମହାପାତ୍ର ନୀଳମଣି ସାହୁ ଏବଂ ଚନ୍ଦ୍ରଶେଖର ରଥ। ଏମାନଙ୍କ ରଚନା ସବୁ ଓଡ଼ିଆ ଭାଷାରୁ ଅନ୍ୟ ଭାଷାକୁ ଅନୁବାଦିତ ହେଲେ ବାହାର ରାଜ୍ୟର ପାଠକମାନେ ଓଡ଼ିଆ ସାହିତ୍ୟରମାନ ସମ୍ପର୍କରେ ଅବହିତ ହୋଇପାରିବେ।

ପ୍ରଶ୍ନ: କେଉଁ ଗଳ୍ପ ଲେଖି ଆପଣ ଅଧିକ ସନ୍ତୁଷ୍ଟି ଲାଭ କରିଛନ୍ତି ?

ଉତ୍ତର: ପ୍ରତ୍ୟେକ ଲେଖକର ପ୍ରତ୍ୟେକଟି ସୃଷ୍ଟି ତା' ପାଇଁ ଶ୍ରେଷ୍ଠ। କାରଣ ମାଆ ଗର୍ଭରୁ ସନ୍ତାନଟିଏ ଜନ୍ମ ନେଲେ ତା' ପାଇଁ ସିଏ ହୁଏ ସର୍ବୋତ୍କୃଷ୍ଟ ସୃଷ୍ଟି, ସେହିପରି ଗଳ୍ପଟିଏ ଲେଖିସାରିଲେ ତାହା ଯଦି ପାଠକମାନଙ୍କୁ ଛୁଇଁପାରିଲା ତେବେ ମୋ ପାଇଁ ସବୁଠୁ ବଡ଼ ପୁରସ୍କାର ବୋଲି ମନେହୁଏ। ଏଣୁ ମୋ ପାଇଁ କେଉଁ ଗଳ୍ପଟି ସବୁଠାରୁ ଭଲ ସେ କଥା ନିର୍ଣ୍ଣୟ କରିବେ ସୁହୃଦୟ ପାଠକମାନେ।

ପ୍ରଶ୍ନ: ସାହିତ୍ୟରେ ଉନ୍ନତି ପାଇଁ ଏକାଡେମୀ ସେମାନଙ୍କ ଦାୟିତ୍ୱ ଠିକ୍ ଭାବେ ପାଳନ କରୁଛନ୍ତି କି ?

ଉତ୍ତର: ଓଡ଼ିଆ ସାହିତ୍ୟ ଏକାଡେମୀ ଏବଂ କେନ୍ଦ୍ର ସାହିତ୍ୟ ଏକାଡେମୀ ଏ ବିଷୟରେ ନିଶ୍ଚୟ ଭାବେ ଯତ୍ନବାନ ଅଛନ୍ତି ଏଥିରେ ମୋର ସନ୍ଦେହ ନାହିଁ। କିନ୍ତୁ ଏଥିପାଇଁ ଲେଖକମାନଙ୍କର ଏବଂ ପାଠକମାନଙ୍କର ଗୁରୁଦାୟିତ୍ୱ ମଧ୍ୟ ଅଛି। ସେମାନଙ୍କର ଭାଷା ରଚନା ଶୈଳୀରେ ପରିବର୍ତ୍ତନ ଆସିବା ଦରକାର, ଯାହାକି ପାଠକମାନଙ୍କ ଦ୍ୱାରା ଆଦୃତ ହେବ। ତାହା ଦ୍ୱାରା ନିଜ ଭାଷାର ଉନ୍ନତି ହେବା ସଙ୍ଗେ ସଙ୍ଗେ ସମାଜର ମଧ୍ୟ ଉନ୍ନତି ହେବ। କାରଣ ଭାଷାର ଉନ୍ନତି ହିଁ ଦେଶର ପ୍ରଗତି।

ପ୍ରଶ୍ନ: ଆପଣ ଓଡ଼ିଶା ସାହିତ୍ୟ ଏକାଡେମୀ ଉପସଭାପତି ହେଲା ପରେ କି କି ଉନ୍ନତିମୂଳକ କାର୍ଯ୍ୟ ଚିନ୍ତା କରିଛନ୍ତି ବା କରୁଛନ୍ତି ?

ଉତ୍ତର: ଓଡ଼ିଶା ସାହିତ୍ୟ ଏକାଡେମୀ ବର୍ତ୍ତମାନ ତା'ର ସୁବର୍ଣ୍ଣ ଜୟନ୍ତୀ ପାଳନ କରୁଛି। ଏଥିପାଇଁ ବର୍ଷସାରା ଏକାଡେମୀ ତା'ର କାର୍ଯ୍ୟକ୍ରମ ଜାରୀ ରଖିଛି। ରାଜ୍ୟ ଏବଂ ରାଜ୍ୟ ବାହାରେ ସାରସ୍ୱତ ସମାରୋହର ଆୟୋଜନ କରୁଛି। ବିଚ୍ଛିନ୍ନାଞ୍ଚଳମାନଙ୍କରେ ଯେଉଁଠି ଓଡ଼ିଆମାନେ ବାସ କରୁଛନ୍ତି ସେମାନଙ୍କ ପାଖରେ ସାହିତ୍ୟ ଏକାଡେମୀ ପହଞ୍ଚି ସାହିତ୍ୟ ସମାରୋହର ଆୟୋଜନ କରୁଛି। ତା'ଛଡା ବିଭିନ୍ନ ପୋଥିପୁରାଣକୁ ଲୋକଲୋଚନକୁ ଆଣି ତା'ର ପୁନଃ ପ୍ରକାଶନ ଏବଂ ଅନୁବାଦ କାମ ମଧ୍ୟ ହାତକୁ ନେଇଛି। ଆଉ କିଛି ଦୁର୍ଲଭ ପୁସ୍ତକର ମଧ୍ୟ ପ୍ରକାଶନ ଦାୟିତ୍ୱ ନେଇଛି। ଉପସଭାପତି ଭାବରେ ମୋର ସାହିତ୍ୟ ଏକାଡେମୀର କାର୍ଯ୍ୟକୁ ସୁଚାରୁରୂପେ କାର୍ଯ୍ୟ କରିବା ନିମନ୍ତେ ମୁଁ ପ୍ରତିଶ୍ରୁତିବଦ୍ଧ।

ପ୍ରଶ୍ନ: ଆଜିର ଓଡ଼ିଆ ଗଳ୍ପର କଥନ ଭଙ୍ଗୀ ଓ ବିଷୟବସ୍ତୁ ଉପରେ ଆପଣଙ୍କ ମତ କ'ଣ ?

ଉତ୍ତର: ମୁଁ ବିଶ୍ୱାସ କରେ ଆମ କଥା ସାହିତ୍ୟ ବିଶେଷତଃ ଗପ ସାହିତ୍ୟ ଭାରତୀୟ ପ୍ରାନ୍ତୀୟ ଭାଷାର ଗଳ୍ପ ତୁଳନାରେ ବେଶି ଉତ୍କୃଷ୍ଟ। ଯୁବପିଢ଼ିର ଅନେକ ଗାଳ୍ପିକ ଏ ଦିଗରେ ସାହିତ୍ୟର ଦିଗ୍‌ବଳୟକୁ ସମ୍ପ୍ରସାରିତ କରୁଛନ୍ତି। ସମ୍ପ୍ରତି ଯାହା ସବୁ ଘଟୁଛି ଆମର ଚାରିପାଖରେ ସେଥିରେ ଅଛି ଅନେକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ। ଏହି ପ୍ରସଙ୍ଗ ଆମ ସାଧାରଣ ଜୀବନ ଅର୍ଥନୈତିକ ଓ ରାଜନୈତିକ ପରିସରକୁ

ପ୍ରଭାବିତ କରୁଛି। ଏ ସମସ୍ତ ପ୍ରସଙ୍ଗକୁ ନେଇ ଆଜିର ଗଳ୍ପ ଉପନ୍ୟାସ ରଚିତ। କେବଳ ବର୍ଣ୍ଣନାର ଧର୍ମ ଭିନ୍ନ। ଏଣୁ ପ୍ରତ୍ୟେକ ସାହିତ୍ୟିକ ସୃଷ୍ଟି କଲାବେଳେ ତା'ର ରଚନା ମାଧ୍ୟମରେ ପାଠକକୁ ନିଜ ଆଡ଼କୁ ଆକର୍ଷିତ କରିବା ନିହାତି ଜରୁରୀ-ଏହାହିଁ ହେବ ତା' ପାଇଁ ଶ୍ରେଷ୍ଠ ଗପ/ଉପନ୍ୟାସ।

ପ୍ରଶ୍ନ: ଓଡ଼ିଆ ଗଳ୍ପର ଉନ୍ନତି ପାଇଁ କ'ଣ ଦରକାର ଭାବୁଛନ୍ତି ?

ଉତ୍ତର: ଜଣେ ଗଳ୍ପ ଲେଖକ ହିସାବରେ ମୁଁ ଏତିକି ଚାହେଁ ଯେ ପାଠକମାନେ ଏ ସବୁର ବିଚାରକ। ଲେଖକଟିର ମୁଖ୍ୟ ବିଚାରପତି ହେଲା ତା' ପାଠକ। ପାଠକମାନଙ୍କର ଶ୍ରଦ୍ଧା ଏବଂ ସ୍ୱୀକୃତି ପାଇଲେ ସେ ଆଗକୁ ବଢ଼ିବାକୁ ଚେଷ୍ଟା କରିବ। ତା'ପରେ ଏଥିପାଇଁ ପ୍ରକାଶକମାନଙ୍କର ମଧ୍ୟ ବେଶ୍ କର୍ତ୍ତବ୍ୟ ରହିଛି-ସେମାନେ ଲେଖାଟିକୁ ଉପଯୁକ୍ତ ସମ୍ମାନ ଦେଇ ତା'ର ପୁସ୍ତକ ପ୍ରକାଶନରେ ସାହାଯ୍ୟ କରିବା ପାଇଁ ଆଗେଇ ଆସିବା ଉଚିତ।





# କବିତା ପ୍ରତି ମୋହ କମିଛି, କିନ୍ତୁ ଲେଖାହେଉଛି ଅଧିକ

## ଗୀତା ହୋତା:

**କେ**ବଳ ଗଳ୍ପ ନୁହେଁ, ତାଙ୍କ ଲେଖନୀରୁ ସୃଷ୍ଟି ହୋଇଛି କବିତା, ଉପନ୍ୟାସ, ପିଲାମାନଙ୍କ ପାଇଁ ଗଳ୍ପ ଓ କବିତା, ପୁଣି ସେ ଅନ୍ୟଭାଷାରୁ ଅନୁବାଦ କରି ଓଡ଼ିଆ ଭାଷାରେ ଅନ୍ୟ ଅନେକ ବିଭାବ ପାଇଁ ମନନଶୀଳ ପ୍ରବନ୍ଧ ଲେଖି ସମୃଦ୍ଧ କରିଛନ୍ତି ଭାଷା ସାହିତ୍ୟକୁ। ଅପୂଜା ଫୁଲ, ରଙ୍ଗମଞ୍ଚ ବିଶ୍ୱାସ ଏକ ଅନ୍ଧଗଳି ଭଳି ଗଳ୍ପ ସଙ୍କଳନ, ଏକାଏକା ଈଶ୍ୱରୀ କବିତା ସଙ୍କଳନ, ମଧୁକ୍ଷରୀ, ମାନସ ମନ୍ଥନ ଆଦି ପ୍ରବନ୍ଧ ପୁସ୍ତକର ରଚୟିତା ଗୀତା ହୋତା ସାହିତ୍ୟ ପାଇଁ ପାଇଛନ୍ତି ଓଡ଼ିଆ ସାହିତ୍ୟ ଏକାଡେମୀ ପୁରସ୍କାର। ଏତଦ୍‌ବ୍ୟତୀତ ସ୍ୱାଧୀନତା ସ୍ୱର୍ଣ୍ଣଜୟନ୍ତୀ ସମ୍ମାନ, ଚଲାପଥ ସମ୍ମାନ ଆଦି ସ୍ୱୀକୃତି ମିଳିଛି ତାଙ୍କୁ। ଏକାଧିକ ସାହିତ୍ୟ ଅନୁଷ୍ଠାନ ସହ ସେ ଜଡ଼ିତ ଏବଂ କାର୍ଯ୍ୟରତ।

ପ୍ରଶ୍ନ. ଆପଣଙ୍କ ଲେଖକୀୟ ଜୀବନର ଅୟମାରମ୍ଭ କିପରି ?

ଉତ୍ତର: ହେତୁ ପାଇଲା ଦିନରୁ ମୁଁ ନିଜେ ନାଚିବା, ଗାଇବା କଳାପ୍ରତି ଆକୃଷ୍ଟ ହେବା ମୋର ସ୍ୱଭାବ । ଏମିତିରେ ମା', ମାଉସୀ ସମସ୍ତଙ୍କ ଆଗରେ କଥାରେ ନଥା ଯୋଡିଲା ପରି କିଛି କିଛି ଢ଼ଗ କବିତା ଭଳିଆ ଏଣୁତେଣୁ ଗାଉଥିଲି ଏବଂ ସେହିଥିରୁ ବୋଧହୁଏ ମୋର ଲେଖିବାର ଆସ୍ପୃହା ଧୀରେ ଧୀରେ ବଢୁଥିଲା ଏବଂ ମୁଁ ମୋର ସ୍ୱାମୀଙ୍କୁ ଚିଠି ଲେଖିଲେ କବିତା ଆକାରରେ ଲେଖୁଥିଲି । ଏହିସବୁ କାରଣରୁ ନିଜେ ନିଜେ ବସିଲା ବେଳେ ଏଣୁତେଣୁ ଲେଖୁଲେଖୁ କେତେବେଳେ ଲେଖକ ହୋଇଗଲି ।

ପ୍ରଶ୍ନ. ଆପଣ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀଚାଳନା କରିଛନ୍ତି । ତେବେ କେଉଁଥିରେ ନିଜ ବିଚାରକୁ ସ୍ପଷ୍ଟ କରିପାରନ୍ତି ?

ଉତ୍ତର: ଉପନ୍ୟାସ, ଗଳ୍ପ ଓ କବିତା ମଧ୍ୟରୁ ଗଳ୍ପ ଓ ଉପନ୍ୟାସରେ ଅନେକ କଥା ଚର୍ଚ୍ଚା କରିବାର ସୁଯୋଗ ଥିଲେ ମଧ୍ୟ ମୁଁ କବିତା ଲେଖିବାକୁ ଅଧିକ ପସନ୍ଦ କରେ । ଏଥିରେ ଅଳ୍ପ ଶବ୍ଦ ମଧ୍ୟରେ ଅନେକ ଭାବନା ବ୍ୟକ୍ତ କରାଯାଇପାରେ ।

ପ୍ରଶ୍ନ. ଆପଣଙ୍କ ଲେଖାରେ ବିଶେଷତଃ ସାମାଜିକ ଏବଂ ନାରୀର ଅନ୍ତଃସ୍ୱର ସ୍ପଷ୍ଟ । ଏ ସମ୍ପର୍କରେ କ'ଣ କହିବେ ?

ଉତ୍ତର: ଯେଉଁ ସମାଜରେ ମୁଁ ବାସକରେ ସେହି ସମାଜ ଏବଂ ମଣିଷଠାରୁ ଆରମ୍ଭ କରି ନଦୀ, ପର୍ବତ, ଫୁଲଫଳ, ପଶୁପକ୍ଷୀ ଏବଂ ଆମର ଦୈନନ୍ଦିନ ଜୀବନ ଧାରାକୁ ଅନୁଭବ କରେ ଏବଂ ଭଲପାଏ ମଧ୍ୟ । ତେଣୁ ସ୍ୱତଃସ୍ଫୂର୍ତ୍ତ ଭାବରେ ଏ ସମାଜର ସମସ୍ୟା ତଥା ନାରୀମାନଙ୍କର ସୁଖଦୁଃଖ ଯନ୍ତ୍ରଣାର ଅନୁଭବ ଏବଂ ନ୍ୟାୟ ନପାଇ ଅସହାୟ ଜୀବନ ବିତାଉଥିବା ନାରୀମାନଙ୍କ ସମସ୍ୟା ଓ ଦୁର୍ଦ୍ଦଶା ମୋ ମନକୁ ଆଚ୍ଛନ୍ନ କରେ । ମୁଁ ସେଇ ଅନୁଭବ ଓ ଅନୁଭୂତିକୁ ତଥା ନିଜର ପାରିପାର୍ଶ୍ୱିକ ଅବସ୍ଥାକୁ ଏକାଠି ମିଶାଇ ମୋ ଲେଖାରେ ସ୍ଥାନ ଦିଏ । ସମାଜ ଓ ଜୀବନକୁ ବାଦ୍ ଦେଇ ସାହିତ୍ୟ ତିଷ୍ଠି ପାରିବ ନାହିଁ । ତେଣୁ ମୋ ଲେଖାରେ ମୁଁ ସମସ୍ତଙ୍କ କଥା କହିବାବେଳେ ନାରୀର ଅସହାୟତା ଦୂର କରିବା ପାଇଁ ବାରମ୍ବାର ଲେଖିଥାଏ ।

ପ୍ରଶ୍ନ. ଅପଣଙ୍କ 'ହେ କବି କ୍ଷାନ୍ତ ହୁଅ'ରେ ଆଶାବାଦ ସହିତ ହତାଶାବୋଧ ପରିଲକ୍ଷିତ ହୁଏ କାହିଁକି ?

ଉତ୍ତର: ଜୀବନ ସାଧାରଣ ନୁହେଁ। ସାଧାରଣ ଭିତରେ ବେଳେ ବେଳେ ଅସାଧାରଣ। ତେଣୁ ଉତ୍‌ଥାନ ପତନ ଭିତରେ ଭାବନା ମଧ୍ୟ ସେମିତି ଉଠାପଡ଼ା ହୋଇ ରହିଥାଏ। କେତେବେଳେ ଜୀବନନୌକା ତରତର ବେଗରେ ଛୁଟୁଥିବ ତ ପୁଣି ଲହଡ଼ିମାଳରେ କେତେବେଳେ ଦିଗହରା ହୋଇ କାଣ୍ଡାରୀ (ନାଉରିଆ) ଖୋଜୁଥିବ। କିନ୍ତୁ ସେହି ପାଇବା ନ ପାଇବା ଭିତରେ ଧୈର୍ଯ୍ୟ, ସାହସ ଓ ଆତ୍ମବିଶ୍ୱାସକୁ ବଞ୍ଚାଇ ରଖିପାରିଲେ ଶକ୍ତି ସୃଷ୍ଟି ହୁଏ, ମନରେ ସଂଜୀବନୀ ଭାବେ କାର୍ଯ୍ୟକରେ। ତେଣୁ ଆଶାବାଦୀ ମଣିଷ ବହୁ ସଂଘର୍ଷ ମଧ୍ୟରେ ବି ନିଜେ ହାରିଯିବାଟା ବିଚିତ୍ର ନୁହେଁ। କିନ୍ତୁ ଆତ୍ମବିଶ୍ୱାସ ବଳରେ ଜିତିବା ପାଇଁ ଉଦ୍ୟମ କରିଚାଲିଲେ ଦିନେ ଯେ ବିଜୟ ହେବ ଏହା ନିଶ୍ଚିତ। ଆତ୍ମବିଶ୍ୱାସ ଦୃଢ଼ ଥିଲେ ହତାଶା ବୋଧ କ୍ରମେ କ୍ରମେ ହଜିଯାଏ।

ପ୍ରଶ୍ନ. ଏତେ ଜୀବନ ଜଞ୍ଜାଳରେ ଥାଇ ମଧ୍ୟ ଆପଣଙ୍କ ଅଧିକାଂଶ କବିତାରେ ଏକାକୀତ୍ୱ ପ୍ରକାଶିତ ହେଉଛି ? ଏହି ଏକୁଟିଆ ଭାବ କାହିଁକି ?

ଉତ୍ତର: ପିଲାକାଳରୁ ଏକାନ୍ନବର୍ତ୍ତୀ ପରିବାରର ଝିଅ, ଶ୍ୱଶୁରଘରର ମଧ୍ୟ ବିରାଟ ପରିବାର, ମୁଁ ମଧ୍ୟ ଏକ ରେଲ୍‌ୱେ ଅଫିସରଙ୍କର ସହଧର୍ମିଣୀ। ସାତକଡିବାବୁ ଏତେ କାର୍ଯ୍ୟବ୍ୟସ୍ତ ରହନ୍ତି ଯେ ବେଳେ ବେଳେ ମୁଁ ଏକୁଟିଆ ଅନୁଭବ କରେ। ବହୁ ଆଡ଼ମ୍ବର ଭିତରେ ରହି ମଧ୍ୟ ମୁଁ କାହିଁକି ଏକୁଟିଆ ଅନୁଭବ କରୁଥିଲି ଏହା ହିଁ ବୋଧହୁଏ ତାହାର କାରଣ କିନ୍ତୁ ସେ ନିରୋଳା ସମୟକୁ ମୁଁ ସଦୁପଯୋଗ କରି ମୁଁ ଯେତେବେଳେ ଏକୁଟିଆ ଭାବି ବସେ ସେତେବେଳେ ସାହିତ୍ୟ ମୋତେ ସାନ୍ନିଧ ଦିଏ। ଭାବୁ ଭାବୁ ଭାବନାଗୁଡ଼ିକ ଗାରେଇ ପକାଏ। ଏଇ କାରଣରୁ ବୋଧହୁଏ ଏକାକୀତ୍ୱ ମୋ କବିତାକୁ ମଧ୍ୟ ସ୍ପର୍ଶ କରିଛି।

ପ୍ରଶ୍ନ. ଆପଣଙ୍କ ଅନେକ ଲେଖାରେ ଈଶ୍ୱର ଚେତନା ବେଶ୍ ଶାଣିତ। ଈଶ୍ୱର ବିଶ୍ୱାସ ଆପଣଙ୍କୁ କିପରି ପ୍ରଭାବିତ କଲା ?

ଉତ୍ତର: ମୁଁ ଈଶ୍ୱରଙ୍କୁ ସମସ୍ତ ସମର୍ପଣ କରିଦେଇଛି ଏବଂ ସେହି ଭାବରେ "ଯାହା ମୁଁ କରଇ ଯାହା ମୁଁ ଚିନ୍ତଇ ମନେ, ଜଗତର କର୍ତ୍ତା ପରମ ଈଶ୍ୱର ଜାଣୁଛନ୍ତି ପ୍ରତିକ୍ଷଣେ" ଏହି ଭାବନା ସଦାସର୍ବଦା ମୋ ଭିତରେ କାର୍ଯ୍ୟ କରୁଛି। ତେଣୁ ପ୍ରଭୁଙ୍କ ବିନା ମୁଁ ପଦଟିଏ ମଧ୍ୟ କିଛି କହିପାରେ ନାହିଁ। ତାଙ୍କରି ପାଖରେ ମୋର ଅଳିଅର୍ଦ୍ଦଳି ସବୁ ସମର୍ପିତ।

ପ୍ରଶ୍ନ. ଆପଣଙ୍କ 'ସେକେଣ୍ଡ ଚୌରଙ୍ଗୀ' ଗଳ୍ପରେ ବିଚ୍ଛେଦ ଓ ମିଳନକୁ ଖୁବ୍ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି। ଏକା କାଳ୍ପନିକ ନା ସତ?

ଉତ୍ତର: ଗଳ୍ପ ବା ଉପନ୍ୟାସ ପୂରାପୁରି କାଳ୍ପନିକ ହେଲେ ତାହା ପାଠକକୁ ସ୍ପର୍ଶ କରିବନାହିଁ। ତେଣୁ ମୋର ଅନେକ ଗଳ୍ପରେ କିଛି ବାସ୍ତବତା ରହିଥାଏ। ଅଙ୍ଗେନିଭା କାହାଣୀ। ମୋର ଗୋଟିଏ ସାଙ୍ଗ ଥିଲା। ସେ ସାଙ୍ଗ ସହିତ ବହୁତ ଦିନ ପରେ ଦେଖାହେଲା କଲିକତାର ଚୌରଙ୍ଗୀରେ। ଘଟଣାରେ କିଛିଟା ସତ୍ୟତା ରହିଛି। କିନ୍ତୁ କାହାଣୀ ସବୁବେଳେ କଳ୍ପନା ବୋଲି ଧରାଯାଏ। ସତ୍ୟତା କେତେ ବା ଅସତ୍ୟ କେତେ ତାହା ବଡ କଥା ନୁହେଁ। ପାଠକ ଯେତେବେଳେ ପଢ଼େ ଲେଖାଯଦି ଅଙ୍ଗେନିଭା କାହାଣୀ ପରି ଲାଗେ ତେବେ ଲେଖକ ଉଲ୍ଲସିତ ହୁଏ। ସେତେବେଳେ ଗଳ୍ପଲେଖା ସାର୍ଥକ ହୁଏ।

ପ୍ରଶ୍ନ. 'ବିଶ୍ୱାସ ଏକ ଅନ୍ଧଗଳି' ପୁସ୍ତକ ସମ୍ପର୍କରେ କିଛି କୁହନ୍ତୁ?

ଉତ୍ତର: ବିଶ୍ୱାସ ଗୋଟିଏ ଏମିତି ଜିନିଷ ଯେ ଥରେ ମନକୁ ଯଦି ଆସିଯାଏ - ଏହି ବାଟଟା ହିଁ ଠିକ୍ ଏବଂ ଏହା କଲେ ହିଁ ସଫଳତା ପାଇପାରିବି ସେତେବେଳେ ବୋଲି ଧାରଣା ଆପେ ଆପେ ଜନ୍ମନିଏ। ଏହା ଏକ ମନସ୍ତତ୍ତ୍ୱ। ବିଶ୍ୱାସ ଗୋଟିଏ ଏପରି ଜିନିଷ ଯାହାକୁ ଦେଖିହୁଏନା କିନ୍ତୁ ଆସ୍ଥାରଖି ଅନେକ କିଛି କରିହୁଏ। ଏହି ବିଶ୍ୱାସ ଓ ଆସ୍ଥା ହିଁ ମୋତେ ଶକ୍ତି ଯୋଗାଇଥାଏ।

ପ୍ରଶ୍ନ. ଏବେ କବିତା ପ୍ରତି ମୋହ ବଢ଼ିବା ଦେଖାଯାଉଛି। ଏହାର କାରଣ କ'ଣ?

ଉତ୍ତର: କବିତା ପ୍ରତି ମୋର ଆଗ୍ରହ ସବୁବେଳେ ଥିଲା। କିନ୍ତୁ ଜଞ୍ଜାଳ ଯୋଗୁଁ ଲେଖିପାରୁନଥିଲି । କବିତା ଲେଖିବା ପାଇଁ ଭଲ ଲାଗେ। କବିତା ଅଳ୍ପ ଶବ୍ଦରେ ଅନେକ କିଛି କହିହୁଏ। କମ୍ ସମୟରେ କବିତାଟିଏ ଲେଖାହୋଇ ପାରୁଛି ଏବଂ ଆବୃତ୍ତି ଦ୍ୱାରା ଅନେକଙ୍କ ପାଖରେ ପହଞ୍ଚି ପାରୁଛି। କବିତାର ପାଠକ ସଂଖ୍ୟା କମୁଥିଲେ ବି କବିତା ପାଠ କରିବା ପାଇଁ ଅନେକ କବି ଆସନ୍ତି କବିତା ପଢ଼ିବା ପାଇଁ। କାରଣ କବିତାରେ ଏପରି କିଛି ଅନ୍ତରଙ୍ଗ ଅଭିବ୍ୟକ୍ତି ଥାଏ ଯାହା ସାର୍ବଜନୀନ। କବିତା ଯେତେ ସାର୍ବଜନୀନ ହେବ ସେତେ ପ୍ରିୟହେବ ପାଠକର।

ପ୍ରଶ୍ନ. ଯୁବ ଲେଖକ/ଲେଖିକାଙ୍କୁ ଆପଣଙ୍କ ବାର୍ତ୍ତା-

ଉତ୍ତର: ବର୍ତ୍ତମାନର ସାହିତ୍ୟିକ ଅର୍ଥାତ୍ ନୂଆକରି ଲେଖୁଥିବା ସାହିତ୍ୟିକମାନେ ଆମ ସାମାଜିକ ପରିସ୍ଥିତି, ଚଳଣୀ ଓ ମୂଲ୍ୟବୋଧ, ଜୀବନସଂଗ୍ରାମ ଉପରେ ଗୁରୁତ୍ୱ

ଦେବା ସହିତ ଭାଙ୍ଗି ଯାଉଥିବା ପରିବାର, ହଜିଯାଉଥିବାବିଶ୍ୱାସ ଓ ଆତ୍ମୀୟତାକୁ ପୁଣି ସାହିତ୍ୟ ମାଧ୍ୟମରେ ପ୍ରକାଶ କରିବା ପାଇଁ ଯତ୍ନଶୀଳ ହୁଅନ୍ତି । ସାହିତ୍ୟ ସମସ୍ତଙ୍କ ହିତ କରେ, ସମୟକୁ ନୂଆ ବାଟ ଦେଖାଏ, ନୂଆ ଭାବନା ସାହିତ୍ୟ ମାଧ୍ୟମରେ ଆସେ। ତେଣୁ ଯୁବକଯୁବତୀମାନେ ନିଜ ଲେଖାକୁ ଅଧିକ ବାସ୍ତବଧର୍ମୀ ଓ ସାର୍ବଜନୀନ କରିବା ଆବଶ୍ୟକ।





# ନାରୀବାଦୀ ଲେଖକ ଭାବେ ପରିଚିତ ହେବାକୁ ଅନେକ ପ୍ରସ୍ତୁତ ନୁହଁନ୍ତି

## ସରୋଜିନୀ ସାହୁ:

କଥାକାର ସରୋଜିନୀ ସାହୁ। ଜଣେ ନାରୀବାଦୀ ଲେଖିକା ଭାବେ ପରିଚିତ ସେ। ତେବେ ତାଙ୍କର ଅନେକ ଗଳ୍ପ ଓ ଉପନ୍ୟାସରେ ଶୁଣିବାକୁ ମିଳେ ଦଳିତ ଆଦିବାସୀ କୃଷକମାନଙ୍କ ସ୍ୱର। ଏପରି କି ଆଧାତ୍ମିକ ଯାତ୍ରା ଉପରେ ଆଧାରିତ ତାଙ୍କର 'ମହାଯାତ୍ରା' ଉପନ୍ୟାସ। ମନୁବାଦର ଘୋର ବିରୋଧୀ ଏହି ଲେଖିକାଙ୍କ ସହ ଆଳାପ।

ପ୍ରଶ୍ନ: ନିଜ ଲେଖା ସମ୍ପର୍କରେ ଆପଣଙ୍କ ଚିନ୍ତନ ?

ଉ. ନିଜ ଲେଖା ସମ୍ପର୍କରେ ମୁଁ ଖୁବ୍ ପୂର୍ବରୁ କିଛି ଚିନ୍ତା କରେନା। ସବୁ ଆଳାପ ଆପେ ନିଗିଡି ଆସେ ନିର୍ଦ୍ଦିଷ୍ଟ ସମୟରେ । ଏବେ ମୁଁ ଏକ ଇଂଲିଶ ଉପନ୍ୟାସ ଲେଖୁଛି। ଆଶା କରୁଛି ଖୁବ୍ ଶୀଘ୍ର କରିବି।

ପ୍ରଶ୍ନ: ପୂର୍ବର ସାହିତ୍ୟ ଏବଂ ବର୍ତ୍ତମାନର ସାହିତ୍ୟ ମଧ୍ୟରେ କିଛି ପରିବର୍ତ୍ତନ ଘଟିଛି ବୋଲି ମନେ କରନ୍ତି, ଏହି ଲେଖାଗୁଡିକର ସାମାଜିକ ଦିଗ୍‌ଦର୍ଶନ ରହିଥିବା ଅନୁଭବ କରନ୍ତି କି ?

ଉତ୍ତର: ଖୁସିର ବିଷୟ, ନବେ ଦଶକରେ ଦେଖାଦେଉଥିବା ସ୍ଥୂଳତା ଦୂର ହୋଇଛି ଏକବିଂଶ ଶତାବ୍ଦୀ ଆରମ୍ଭରେ। ବିଗତ ଦଶ ବର୍ଷରେ ଅନେକ ଭଲ ଗଳ୍ପ ଲେଖିଛନ୍ତି ନୂଆ ନୂଆ ଗାଳ୍ପିକମାନେ । କାହାଣୀକୁ ସିଧାସଳଖ ଥୋଇ ନ ଦେଇ ତଥ୍ୟ ଭଙ୍ଗୀକୁ ନେଇ ଖେଳିବା, ଖେଳାଇବା ଭଙ୍ଗୀରେ ପ୍ରକାଶ କରୁଛନ୍ତି। ସାହିତ୍ୟ କେବେ ବି ସମାଜିକ ଦିଗ୍‌ଦର୍ଶନ ଦେବା ପାଇଁ ଲେଖାଯାଏ ନାହିଁ ବରଂ ସାମାଜିକ ପରିବର୍ତ୍ତନରେ ବ୍ୟଥିତ ଓ ପ୍ରତିକ୍ରିୟାଶୀଳ ହେଲେ ଲେଖକ ଲେଖିଥାଏ। ଯେତେବେଳେ ସାହିତ୍ୟ ସାମାଜିକ ଦିଗ୍‌ଦର୍ଶନର କଥା କହେ ସେତେବେଳେ ତାହା ସ୍ଲୋଗାନଧର୍ମୀ ହୋଇଯାଏ।

ପ୍ରଶ୍ନ: ଓଡ଼ିଆ ସାହିତ୍ୟରେ ନାରୀମୁକ୍ତି ଚିନ୍ତାଧାରାର ପରିପ୍ରକାଶ ଘଟିଛି ବୋଲି ଭାବୁଛନ୍ତି କି ?

ଉତ୍ତର: ଓଡ଼ିଆ ସାହିତ୍ୟରେ ମୋ ପୂର୍ବରୁ ଅନେକ ଲେଖାରେ ନାରୀ ଆର୍ତ୍ତି, ନାରୀର ଅନୁଭବ, ଅନୁଭୂତି ପ୍ରକାଶ ପାଇଛି ହେଲେ ନିଜକୁ ନାରୀବାଦୀ କହିବାକୁ କୌଣସି ଲେଖିକା ପ୍ରସ୍ତୁତ ହେଇନାହାନ୍ତି। ଅସଲରେ 'ନାରୀବାଦୀ' କଥା ସମ୍ପର୍କରେ ଗୋଟେ ଭୁଲ୍ ଧାରଣା ରହିଛି ଯେ ନାରୀବାଦୀଟିଏ ଖଣ୍ଡାଖର୍ପର ଧରି ଛିଡା ହୋଇଥିବା ନାରୀଟିଏ ହେଇଥିବ, ତାହା ସମ୍ପୂର୍ଣ୍ଣ ଭୁଲ୍ ଧାରଣା।

ପ୍ରଶ୍ନ: ଜଣେ ପୁରୁଷ ଲେଖକ ନାରୀବାଦୀ ହୋଇପାରେ ?

ଉତ୍ତର: ହଁ ଜଣେ ପୁରୁଷ ଲେଖକ ନାରୀବାଦୀ ହୋଇପାରିବେ, ତେବେ ନାରୀଟିଏ ନାରୀର ଅନୁଭୂତିକୁ ଯେଭଳି ପ୍ରକାଶ କରିପାରିବ ପୁରୁଷ ନୁହେଁ। ଯେମିତି ମୋର ବିଭିନ୍ନ ଗଳ୍ପରେ ପ୍ରଥମେ ଋତୁମତୀ ଝିଅର ଅନୁଭୂତି ଠୁଁ ମେନୋପଜ୍ (ଋତୁବନ୍ଦ) ନାରୀର ମାନସିକତା, ଗର୍ଭବତୀ ନାରୀ, ବନ୍ଧ୍ୟାନାରୀ, ସମଲୀଙ୍ଗୀ

ନାରୀର ଅନୁଭୂତିର କଥା ରହିଛି, ସେ ସବୁକୁ ପୁରୁଷଟିଏ ବର୍ଣ୍ଣନା କରିପାରିବ କି ନାହିଁ କେଜାଣି। ସେଭଳି ପୁରୁଷର କିଛି ଅନୁଭୂତି ନାରୀଟିଏ ସ୍ୱଚ୍ଛନ୍ଦରେ ଲେଖିପାରିବ ନାହିଁ।

ପ୍ରଶ୍ନ: ସମାଜରେ ଶ୍ରମିକ, କୃଷକ, ଆଦିବାସୀ ଦଳିତଙ୍କ ସମସ୍ୟା ପ୍ରବଳ ଥିବା ବେଳେ ଆପଣ ନାରୀମୁକ୍ତି, ସମାନତା, ଯୌନ ସମାନତା କଥା ବେଶି ଲେଖୁଛନ୍ତି କାହିଁକି ?

ଉତ୍ତର: ସମ୍ଭବତଃ ମୋର ସମସ୍ତ ସୃଜନକର୍ମ ସହ ଆପଣଙ୍କ ପରିଚୟ ନାହିଁ। ମୋ ସ୍ୱପ୍ନ ଖୋଜାଳୀମାନେ ମହାଯାତ୍ରା, ପକ୍ଷୀବାସ ଉପନ୍ୟାସ ଓ ଅନେକ ଗଳ୍ପରେ ଦଳିତ ଆଦିବାସୀ କୃଷକମାନଙ୍କ କଥା ଲେଖିଛି। 'ପକ୍ଷୀବାସ' ପଶ୍ଚିମ ଓଡ଼ିଶାର ସତ୍‌ନାମୀମାନଙ୍କ ଜୀବନଯାପନ ଉପରେ ଆଧାରିତ। ସେହିପରି 'ସ୍ୱପ୍ନଖୋଜାଳିମାନେ' ଉପନ୍ୟାସ ଦଳିତଙ୍କ ଉପରେ, 'ମହାଯାତ୍ରା' ଉପନ୍ୟାସ ଏକ ଆଧ୍ୟାତ୍ମିକ ଯାତ୍ରା ଉପରେ ଆଧାରିତ। ଲେଖକ ବିଭିନ୍ନ କଥା ଲେଖିବ। ମୁଁ ଲେଖିକା ହେଇଥିବାରୁ ନାରୀମୁକ୍ତି, ନାରୀ ସମାନତା ମୋ ଲେଖାରେ ଆସିବା ସ୍ୱାଭାବିକ। ଯୌନ ସମାନତାଟା କ'ଣ ଅଯୌକ୍ତିକ ? ଏ ସଂସାରରେ ଆମକୁ ସବୁର ଅଧାଭାଗ ମିଳିବା ଦରକାର ଏମିତି କି ଯୌନ ସମାନତା ବି। ନାରୀଟି କେବଳ ପୁରୁଷର ମନୋରଞ୍ଜନ ପାଇଁ ରହିବ କାହିଁକି ? ମୁଁ 'ମନୁବାଦ'ର ଘୋର ବିରୋଧୀ।

ପ୍ରଶ୍ନ: ଫେମିନିଜମ୍ କିଛି ସୀମିତ ଲୋକଙ୍କ ଚିନ୍ତାଧାରା ନା ସମାଜରେ ସର୍ବସାଧାରଣ ଗ୍ରହଣୀୟ ହେବ ବୋଲି ଭାବୁଛନ୍ତି ?

ଉତ୍ତର: 'ଫେମିନିଜମ୍ ବା ନାରୀବାଦ ଜିନିଷଟି ବଡ଼ ଜଟିଳ। ବାହାରେ ନାରୀମୁକ୍ତି ଓ ସ୍ୱାଧୀନତାକୁ ସମର୍ଥନ କରୁଥିବା ବ୍ୟକ୍ତିଟି ନିଜ ଘରେ ନାରୀଟିକୁ ବିଭିନ୍ନ କଟକଣା ଭିତରେ ବାନ୍ଧୀ ରଖିଥାଏ। ଯେତେବେଳେ ପ୍ରତିଟି ବ୍ୟକ୍ତି ନାରୀକୁ ତା'ର ବନ୍ଧୁ ଭାବିବ ସେତେବେଳେ ହିଁ କିଛି ପରିବର୍ତ୍ତନ ଘଟିପାରେ। ଆମ ସମାଜରେ କୌଣସି ଆଦର୍ଶ ସର୍ବସାଧାରଣ ଗ୍ରହଣୀୟ ନୁହେଁ। ସେଇଥିପାଇଁ ତ ଏତେ ଜାତି, ଏତେ ଧର୍ମ, ଏତେ ବର୍ଣ୍ଣବୈଷମ୍ୟ।

ପ୍ରଶ୍ନ: ଆପଣ ଜଣେ ନାରୀବାଦୀ ଲେଖିକା ବୋଲି କୁହାଯାଉଛି, ସେ ଦୃଷ୍ଟିରୁ ଭାରତ ଏବଂ ଭାରତ ବାହାରେ ନାରୀଙ୍କ ପ୍ରତି ଆପଣଙ୍କ ଦୃଷ୍ଟିକୋଣ କ'ଣ ?

ଉତ୍ତର: ମୁଁ 'ଫେମିନିଜମ୍ ସେକ୍ସୁଆଲିଟି ଆଣ୍ଡ ଲିଟରେଚର'କୁ ନେଇ ୨୦୦୫ରୁ 'ସେକ୍ସ ଆଣ୍ଡ ସେକ୍ସୁଆଲିଟି' ନାଁରେ ବ୍ଲଗ ଲେଖି ଆସୁଅଛି। ଏଇ 'ସେକ୍ସ

ଆଣ୍ଡ ସେନ୍ସୁଆଲିଟି' ପ୍ରବନ୍ଧଗୁଡ଼ିକ ଏବେ 'ସେନ୍ସିବଲ୍ ସେନ୍ସୁଆଲିଟି' ନାଁରେ ବହିଟିଏ ପ୍ରକାଶ ପାଇଛି ଅଥର୍ସ ପ୍ରେସ୍-ଦିଲ୍ଲୀରୁ। ସେଥିପାଇଁ ମୁଁ ପାଶ୍ଚାତ୍ୟ ନାରୀବାଦ ଓ ପ୍ରାଚ୍ୟ ନାରୀର ତୁଳନା କରିଛି। ସୁଖର ବିଷୟ ବିଦେଶରେ ମୋ ବ୍ଲଗର ଚାହିଦା ବେଶି। ମୋର ଏଇ ପ୍ରବନ୍ଧ ପଢ଼ିବା ପରେ ଆମେରିକାର ଖବରକାଗଜ ନ୍ୟୁୟର୍କ ଟାଇମ୍ସର ୱେବ୍‌ପୋର୍ଟାଲ ଏବାଉଟ୍ ଡଟ୍‌କମ୍‌ରେ ଏକ ଇଣ୍ଟରଭ୍ୟୁ ନେଇଛନ୍ତି ଲିଣ୍ଡାୟେନ୍। ପ୍ରାଚ୍ୟ ଜଗତ ହେଉ ଅବା ପାଶ୍ଚାତ୍ୟ, ନାରୀ ଚାହୁଁଥିବା ସ୍ୱାଧୀନତା ଅଦ୍ୟାବଧି ପାଇନାହିଁ।

ପ୍ରଶ୍ନ: ନାରୀବାଦ ଅଢୁଆଳରେ ଯୌନ ଉଚ୍ଛୃଙ୍ଖଳତା ବୃଦ୍ଧି ପାଉନି କି ?

ଉତ୍ତର: ନାରୀ ଟିକିଏ ସ୍ୱାଧୀନତା ପାଇଲେ ଯୌନ ଉଚ୍ଛୃଙ୍ଖଳତା ବୃଦ୍ଧିପାଇବ ବୋଲି କାହିଁକି ଭାବୁଛନ୍ତି। ଯୌନ ସ୍ୱାଧୀନତା ଅର୍ଥ ନୁହେଁ ପରିବାର ଭାଙ୍ଗିଦେଇ ବେଶ୍ୟାବୃତ୍ତି କରିବା। ନାରୀଟିଏ ସବୁବେଳେ ପୁରୁଷର ସୁଖସାଧନର ବସ୍ତୁ ହୋଇରହିବ ଏ କେମିତି କଥା ? ତେବେ ତା' ମନକୁ ଉଡ଼େଇ ଦିଆଯାଉ, କେବଳ ଚାବିଦିଆ କଣ୍ଢେଇ ହେଇ ରହୁ ଏହା ଚାହାନ୍ତି କି ଆପଣ ? ଦାମ୍ପତ୍ୟ ଜୀବନରେ ବି ଅନେକ ନାରୀ ଯୌନସୁଖ କ'ଣ ଜାଣନ୍ତି ନାହିଁ। ଅଥଚ ଅନେକ ସନ୍ତାନର ଜନନୀ ହେଇଥାନ୍ତି ତା କ'ଣ ସୁସ୍ଥ ଜୀବନଯାପନର ପରିଚାୟକ ?

ପ୍ରଶ୍ନ: ନିଜର ଗୋଟିଏ ୱେବସାଇଟ୍ ବ୍ଲଗ ଖୋଲିଛନ୍ତି। ଏହା ଦ୍ୱାରା କିଭଳି ପିରବର୍ତ୍ତନ ଘଟୁଛି ବୋଲି ଆପଣ ଭାବୁଛନ୍ତି ?

ଉତ୍ତର: ଆପଣ ଯଦି ମୋ ବ୍ଲଗ ପଢ଼ିଥାନ୍ତି ଦେଖିଥିବେ, ଦେଶ ଓ ବିଦେଶରେ କିଭଳି ଆଦୃତି ଲାଭ କରିଛି 'ସେନ୍ସ ଆଣ୍ଡ ସେନ୍ସୁଆଲିଟି'। ହଁ ଅନେକ ନାରୀ (ବିଭିନ୍ନ ବୟସର) ମୋତେ କଲ୍ କରି ତାଙ୍କର ସମସ୍ୟା ଜଣେଇ ପରାମର୍ଶ ମଧ୍ୟ ମାଗନ୍ତି। ମୁଁ ସେମାନଙ୍କୁ ପାରୁ ପର୍ଯ୍ୟନ୍ତ ସହାଯ୍ୟ କରିଥାଏ।

ପ୍ରଶ୍ନ: ଆପଣଙ୍କ ଭଳି କିଛି ବ୍ୟକ୍ତି ନାରୀମୁକ୍ତି ଉପରେ ସ୍ଲୋଗାନ ଦେବା ବେଳେ କିଛି ନାରୀ ନିଜ ଅଧିକାର ପାଇବାକୁ ସଫଳ ହେଲେଣି। ତେବେ ଆମ ସମାଜରେ ପିରବାର ପ୍ରତି ପୁରୁଷର ଯେଉଁ ଦାୟୀତ୍ୱ ତାକୁ ନାରୀ ପାଖକୁ ଆଣିବାକୁ କିଛି ଉଦ୍ୟମ କରୁଛନ୍ତି କି ?

ଉତ୍ତର: ନାରୀ-ପୁରୁଷ, ପୁରୁଷ ତାନ୍ତ୍ରିକ ସମାଜ, ଏସବୁ ଅଲଗା ଅଲଗା ଅସ୍ତିତ୍ୱ। ଅନେକ ସମୟରେ ନାରୀ ପୁରୁଷ ସୁସମ୍ପର୍କର ପରିପନ୍ଥୀ ହୋଇ ଛିଡା ହୋଇଥାଏ ପୁରୁଷ ତାନ୍ତ୍ରିକ ସମାଜ। ଏଇ ପୁରୁଷତାନ୍ତ୍ରିକ ସମାଜର ବାସିନ୍ଦା

କେବଳ ପୁରୁଷ ନୁହନ୍ତି, ଉଭୟ ନାରୀ ପୁରୁଷ ଏହାର ଅନ୍ତର୍ଭୁକ୍ତ। ନାରୀ ପୁରୁଷରେ ବନ୍ଧୁତା ଲୋଡ଼ା, ତେଣୁ ସଂସ୍କାର ଲୋଡ଼ା।

ପ୍ରଶ୍ନ: ପୁରୁଷର ଏକାଧିକ ନାରୀଙ୍କ ସହ ଯୌନ ସମ୍ପର୍କକୁ ଯଦି ଖରାପ ଆଖ୍ୟା ଦିଆଯାଉଛି ତେବେ ନାରୀର ଫ୍ରି ସେକ୍ସକୁ ଗ୍ରହଣ କରିନେବାରେ ତାକୁ ମଧ୍ୟ ଖରାପ ଆଖ୍ୟା ଦିଆଯିବ ନାହିଁ କି ?

ଉତ୍ତର: ବିଦେଶରେ 'ପୋଲିଆମରି' ସମ୍ପର୍କ ଦେଖାଯାଏ। କିନ୍ତୁ ସେମାନେ ମଧ୍ୟ ପରିବାରକୁ ଅଗ୍ରାଧିକାର ଦେଇଥାନ୍ତି। ପରିବାର ସମାଜର ମିନି ରୂପ। ତାକୁ ଶୃଙ୍ଖଳିତ ରଖିବା ଉଚିତ। ନଚେତ୍ ବିଭିନ୍ନ ସମସ୍ୟା ଦେଖାଦେବ। ପରିବାରରେ କେବଳ ସ୍ୱାମୀ-ସ୍ତ୍ରୀ ନ ଥାନ୍ତି, ଅନ୍ୟାନ୍ୟ ସମ୍ପର୍କୀୟଙ୍କୁ ନେଇ ପରିବାର। ତେଣୁ ସମସ୍ତଙ୍କ ପ୍ରତି ଆମର କର୍ତ୍ତବ୍ୟ ରହିଛି।

ପ୍ରଶ୍ନ: ଆଜିକାଲି ପରିବାର ଭାଙ୍ଗୁଥିବା ଦେଖାଯାଉଛି, ଏଭଳି ସ୍ଥିତିରେ ନାରୀର ଭୂମିକା କ'ଣ ?

ଉତ୍ତର: ଗୋଟିଏ ହାତରେ ତାଳି ବାଜେନା। ପରିବାର ଭାଙ୍ଗିବା ପଛରେ ନାରୀ ପୁରୁଷ ଉଭୟଙ୍କର ଭୂମିକା ଥାଏ। ପୂର୍ବରୁ ନାରୀ ମାଡ଼ଗାଳି ଖାଇ, ନିର୍ଯାତନା ସହି ମୁଣ୍ଡଗୁଞ୍ଜି ସ୍ୱାମୀ ସଂସାରରେ ପଡ଼ି ରହୁଥିଲେ। ଆଜିର ନାରୀ ଶିକ୍ଷା ଦୀକ୍ଷା ପାଇଥିବାରୁ ନିର୍ଯାତନା ସହିବା ପାଇଁ ପ୍ରସ୍ତୁତ ହୋଇପାରୁ ନାହିଁ।

ପ୍ରଶ୍ନ: ଆପଣ ସବୁବେଳେ ଯୌନତା ଉପରେ ଲେଖନ୍ତି ଏହା ଏକ ରିସ୍କ, ଏହାର ପ୍ରଭାବ ଆପଣଙ୍କ ବ୍ୟକ୍ତିଗତ ଜୀବନରେ ପଡ଼େନି କି ?

ଉତ୍ତର: ମୁଁ ସବୁବେଳେ ଆଡ୍‌ଭେଞ୍ଚର୍ସ। ମୋ ପାଇଁ କିଛି ରିସ୍କ ନୁହେଁ। ଅଜି ବଞ୍ଚିଛି କାଲି ମରିଯିବି। ମରିବା ପୂର୍ବରୁ ନାରୀ ମନତଳର ସମସ୍ତ ଗୋପନ ଇଚ୍ଛା ଆକାଂକ୍ଷାକୁ ପ୍ରକାଶ କରିବାରେ କୁଣ୍ଠାପ୍ରକାଶ କରିବି କାହିଁକି ? ମୋ ପାରିବାରିକ ଜୀବନ ବେଶ୍ ସୁଖମୟ। ଆମ ଭିତରେ ବେଶ୍ ଭଲ ବୁଝାମଣା ଅଛି।





# ସମଗ୍ର ଭାରତୀୟ ସାହିତ୍ୟରେ ଭଞ୍ଜ ମହାନ୍

## କବିପ୍ରସାଦ ମିଶ୍ରः

**ଡା**କ୍ତରୀ ପେସା ସହ ସାରସ୍ୱତ ସାଧନାକୁ ଫେଣ୍ଟିଥିବା ବ୍ୟକ୍ତି ଡାକ୍ତର କବିପ୍ରସାଦ ମିଶ୍ର। କଳିଙ୍ଗ ଭାରତୀର ପ୍ରତିଷ୍ଠାତା ସ୍ୱର୍ଗତ ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ ଶିଷ୍ୟ ଭାବରେ ନିଜକୁ ପରିଚିତ କରିବାକୁ ଅତ୍ୟନ୍ତ ଆଗ୍ରହ ରଖୁଥିବା ଡାକ୍ତର ମିଶ୍ର ଉତ୍କଳୀୟ ସଂସ୍କୃତି, କଳା, ଧର୍ମ ଓ ସାହିତ୍ୟ ଉପରେ ଲେଖିଛନ୍ତି ଅନେକ ପ୍ରବନ୍ଧ, ଯାହା କେବଳ ଓଡ଼ିଆ ଭାଷାରେ ଓଡ଼ିଶାରେ ସୀମିତ ହୋଇ ନ ରହି ଓଡିଶା ବାହାରେ ମଧ୍ୟ ବିଭିନ୍ନ ଭାଷାରେ ପ୍ରକାଶିତ। ରେଭେନ୍ସା କଲିଜିଏଟ୍ ସ୍କୁଲରୁ ଚଣ୍ଡିଗଡର ଭେଷଜ ବିଜ୍ଞାନ ବିଷୟକ ଶିକ୍ଷା ଓ ଗବେଷଣା ପ୍ରତିଷ୍ଠାନ ପର୍ଯ୍ୟନ୍ତ ଛାତ୍ରଜୀବନରେ ଥିଲା ତାଙ୍କର ଅନେକ ପ୍ରଶଂସା। କୃତୀ ଛାତ୍ର ଭାବେ ଡାକ୍ତର ମିଶ୍ର ଥିଲେ ଶିକ୍ଷକମାନଙ୍କର ପ୍ରିୟ। ତାଙ୍କର ସାରସ୍ୱତ ସାଧନା ସମ୍ପର୍କରେ ଜାଣିବା ପାଇଁ ଡାକ୍ତର ମିଶ୍ରଙ୍କ ସହ ଆଳାପ।

ପ୍ରଶ୍ନ: ଲେଖାଲେଖିରେ ଆରମ୍ଭ କିପରି ?

ଉତ୍ତର: ସ୍କୁଲରେ ପଢ଼ିଲାବେଳେ ଛୋଟ ଛୋଟ କବିତା ଲେଖୁଥିଲି। ସେତେବେଳେ ସ୍ୱର୍ଗତ ବିଚ୍ଛନ୍ଦ ଚରଣଙ୍କ ସଂସ୍ପର୍ଶରେ ଆସି ପ୍ରାଚୀନ ଓ ମଧ୍ୟଯୁଗ ସାହିତ୍ୟ ସମ୍ପର୍କରେ ଲେଖାଲେଖି ଆରମ୍ଭ କଲି। ବକ୍ତୃତା ଏବଂ ଲେଖାରେ ବହୁତ ପୁରସ୍କାର ପାଇଲି। ଏହାଦ୍ୱାରା ବହୁ ଉତ୍ସାହିତ ହେଲି, କିନ୍ତୁ ମେଡିକାଲ କଲେଜରେ ପଢୁଥିବାବେଳେ ଏବଂ ତା' ପରେ ବିଦେଶରେ ଓ ଓଡ଼ିଶା ବାହାରେ ପ୍ରାୟ ୪୦ବର୍ଷ ରହିବା ପରେ ଓଡ଼ିଆରେ ଲେଖିବା ଅଭ୍ୟାସ କମିଗଲା। ମଝିରେ ମଝିରେ ବିଭିନ୍ନ ପ୍ରବନ୍ଧ ଲେଖି ପତ୍ରପତ୍ରିକାକୁ ପଠାଉଥିଲି। ହୃଦ୍‌ରୋଗ ବିଷୟରେ ଓଡ଼ିଆରେ ପୁସ୍ତକ ଲେଖିବାରେ ମୁଁ ପ୍ରଥମ ବ୍ୟକ୍ତି। ପୁସ୍ତକଟି ଲୋକପ୍ରିୟ ହୋଇ ପଞ୍ଚମ ସଂସ୍କରଣରେ ପ୍ରକାଶ ପାଇ ସାରିଲାଣି। ଛଅ ବର୍ଷ ତଳେ ମଧ୍ୟରେ ଓଡ଼ିଶା ଫେରିବା ପରେ ବିଭିନ୍ନ ବିଷୟରେ ବିଶେଷତଃ ସାମାଜିକ ଏବଂ ମୂଲ୍ୟବୋଧ ବିଷୟରେ ଅନେକ ଲେଖା ଲେଖୁଛି। ଓଡ଼ିଆ ପତ୍ରପତ୍ରିକାରେ ଏବେ ମୋ ଲେଖା ଓ ସ୍ତମ୍ଭ ନିୟମିତ ପ୍ରକାଶ ପାଉଛି।

ପ୍ରଶ୍ନ: ଆପଣଙ୍କ ରଚିତ 'ବାଇଶି ପାହାଚ' ପୁସ୍ତକ ଖୁବ୍ ଲୋକପ୍ରିୟତା ହାସଲ କରିଛି। ସେ ସମ୍ପର୍କରେ କିଛି କହିବେ ?

ଉତ୍ତର: ମାଡ୍ରାସରେ ଥିବାବେଳେ ଆମେ ଗୋଟିଏ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲୁ, ଯାହା ପାଇଁ ପ୍ରାୟ ଚାରି କୋଟି ଟଙ୍କା ଖର୍ଚ୍ଚ ହୋଇଛି। ସେ ସମୟରେ ଘଟିଥିବା ଚମତ୍କାର ଅନୁଭୂତିରେ ଆଧାରିତ ମୋର ପୁସ୍ତକ 'ବାଇଶୀ ପାହାଚ'। ଏହି ପୁସ୍ତକ ୫ଟି ଭାଷାରେ ଅନୁବାଦ ହୋଇ ପ୍ରକାଶ ପାଇଛି। ଏବେ ଏହା ପଞ୍ଚଦଶ ସଂସ୍କରଣରେ ପହଞ୍ଚିଲାଣି। ଏ ପୁସ୍ତକର ଅଦ୍ଭୁତ ଲୋକପ୍ରିୟତା ନିଶ୍ଚିତ ଭାବରେ ଏକ ବିସ୍ମୟ। ଏହା ପ୍ରଭୁ ଜଗନ୍ନାଥଙ୍କର ଆଶୀର୍ବାଦ।

ପ୍ରଶ୍ନ: ବର୍ତ୍ତମାନ କ'ଣ ଲେଖୁଛନ୍ତି ?

ଉତ୍ତର: ବର୍ତ୍ତମାନ ମୁଁ ନିୟମିତ ଭାବରେ ସାମାଜିକ ସମସ୍ୟା, ମୁଲ୍ୟବୋଧ, ଦର୍ଶନ, ଭଞ୍ଜସାହିତ୍ୟ ଏବଂ ହୃଦରୋଗ ବିଷୟରେ ବିଭିନ୍ନ ପ୍ରବନ୍ଧ ଲେଖୁଛି। ଆସନ୍ତା ଦୁଇ ମାସ ମଧ୍ୟରେ ମୋର ତିନୋଟି ଓଡ଼ିଆ ବହି ପ୍ରକାଶିତ ହେବ। ଗୋଟିଏ ଭଗବାନ ଶ୍ରୀରମଣ ମହର୍ଷିଙ୍କ ଜୀବନୀ ଉପରେ ଆଧାରିତ ଏବଂ ଦ୍ୱିତୀୟରେ ମୋର ପ୍ରକାଶିତ ପ୍ରବନ୍ଧ ସବୁର ସଂଗ୍ରହ ଯାହାର ନାମ 'ଭିନ୍ନ ଭିନ୍ନ ଭାବନା... ଅଭିନ୍ନ ଚିନ୍ତାଧାରା' ଏବଂ ତୃତୀୟରେ 'ଜ୍ଞାନର ମୁକ୍ତାମାଳା'।

ପ୍ରଶ୍ନ: ଡାକ୍ତରୀ ପେସା ଭଳି ବ୍ୟସ୍ତ ଜୀବନ ଭିତରେ ଲେଖାଲେଖିକୁ କିପରି ସମୟ ଦିଅନ୍ତି ?

ଉତ୍ତର: ଭଗବାନଙ୍କ ଦୟାରୁ ମୁଁ ପିଲାଦିନେ 'କଳିଙ୍ଗ ଭାରତୀ'ର ପ୍ରତିଷ୍ଠାତା ସ୍ୱର୍ଗତ ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ ସଂସ୍ପର୍ଶରେ ଆସିଲି। ସେ ଜଣେ ମହାନ୍ ସଂଗଠକ ଏବଂ ବିଶିଷ୍ଟ ସାହିତ୍ୟିକ ଥିଲେ। ତାଙ୍କର ପ୍ରେରଣା ପାଇ ଏବଂ ତାଙ୍କ ଦ୍ୱାରା ବିଶେଷ ଭାବରେ ଅନୁପ୍ରାଣିତ ହୋଇ ସାହିତ୍ୟ, ସଂସ୍କୃତି, ଦର୍ଶନ, ଧର୍ମ ଚିନ୍ତାଧାରାରେ ଆଗେଇଲି। ସାହିତ୍ୟ କ୍ଷେତ୍ରରେ ମନୋନିବେଶ କଲି। ଡାକ୍ତରୀ ବିଦ୍ୟା ସାଙ୍ଗରେ ମୁଁ ସାହିତ୍ୟ ସେବା କରିପାରୁଛି କାରଣ ମୁଁ ମୂଳରୁ କେବେ ଘରୋଇ ଚିକିତ୍ସା କରିନାହିଁ। ତେଣୁ ସାହିତ୍ୟ ଏବଂ ଅନ୍ୟାନ୍ୟ କାର୍ଯ୍ୟ ପାଇଁ ମୋତେ ସମୟ ମିଳେ। ମୁଁ ପଢ଼ିବାକୁ ଏତେ ଭଲପାଏ ଯେ ମୋର ବ୍ୟକ୍ତିଗତ ପୁସ୍ତକାଗାରରେ ପ୍ରାୟ ୨୦ ହଜାର ବହି ଅଛି।

ପ୍ରଶ୍ନ: ପ୍ରକାଶିତ ହେବାକୁ ଯାଉଥିବା 'ଜ୍ଞାନର ମୁକ୍ତାମାଳା'ରେ କେଉଁ ବିଷୟ ଉଲ୍ଲେଖ କରିଛନ୍ତି ?

ଉତ୍ତର: 'ଜ୍ଞାନର ମୁକ୍ତାମାଳା' ବହି ଦିଲ୍ଲୀର ପ୍ରସିଦ୍ଧ ପ୍ରକାଶନ ସଂସ୍ଥା 'ରୂପା' କମ୍ପାନୀ ଦ୍ୱାରା 'ପର୍ଲସ ଅଫ୍ ଓ୍ୱିଜଡମ୍' ଶୀର୍ଷକରେ ପ୍ରକାଶ ପାଇସାରିଛି। ସେଥିରେ ପୃଥିବୀର ସବୁ ବିଶିଷ୍ଟ ଲୋକଙ୍କ ବିଷୟରେ ଏବଂ ତାଙ୍କ ବକ୍ତବ୍ୟରେ ଅତ୍ୟନ୍ତ ଶିକ୍ଷାମୂଳକ ଏବଂ ଜ୍ଞାନଗର୍ଭକ ବିଷୟ ଦିଆଯାଇଛି। ବହିଟି ଇଂଲିଶରେ ତୃତୀୟ ସଂସ୍କରଣରେ ପ୍ରକାଶିତ ହୋଇସାରିଛି। ବହିଟି ଓଡ଼ିଆରେ ପ୍ରକାଶ ପାଇବାକୁ ଯାଉଛି। ଏହାକୁ ଅଧ୍ୟାପକ ଶରତ ଚନ୍ଦ୍ର ରଥ ଓଡ଼ିଆ ରୂପାନ୍ତର କରିଛନ୍ତି।

ପ୍ରଶ୍ନ: ଆପଣ ଉପେନ୍ଦ୍ର ଭଞ୍ଜଙ୍କ ଉପରେ ଅନେକ ପ୍ରବନ୍ଧ ଆଲୋଚନା ଲେଖିଛନ୍ତି, ତେବେ ଆପଣଙ୍କ ଦୃଷ୍ଟିରେ ଭଞ୍ଜ କିପରି ?

ଉତ୍ତର: କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଏକ ବିରାଟ ଏବଂ ବିରଳ ବ୍ୟକ୍ତିତ୍ୱ। ସେ କେବଳ ଓଡ଼ିଶାର ନୁହନ୍ତି ସମଗ୍ର ଭାରତୀୟ ସାହିତ୍ୟରେ ଜଣେ ଅସାଧାରଣ ଏବଂ ମହାନ କବି। ପିଲାଦିନରୁ ଗତ ୬୦ବର୍ଷ ଧରି ମୁଁ ତାଙ୍କ କାବ୍ୟ କବିତା ପଢ଼ିଛି, ପଢୁଛି ଏବଂ ତାଙ୍କ ବିଷୟରେ ଅନେକ ପ୍ରବନ୍ଧ ଓଡ଼ିଆ ଏବଂ ଇଂଲିଶରେ ଲେଖିଛି। ତାଙ୍କ ବିଷୟରେ ଦେଶ ବଦେଶରେ ଭାଷଣ ଦେଇଛି। ଏସବୁ କେବଳ ଜଣକ ପାଇଁ ସମ୍ଭବ ହୋଇଛି। ସେ ହେଉଛନ୍ତି

ମୋର ସାରସ୍ୱତ ସାଧନାର ଗୁରୁ ସ୍ୱର୍ଗତ ବିଚ୍ଛନ୍ଦ ଚରଣ ଯେ କି ମୋର ଚପଳ ବାଲୁତ ବୟସରେ ମଧ୍ୟ ଉପେନ୍ଦ୍ର ଭଞ୍ଜଙ୍କ ବିଷୟରେ ଆଖି ଖୋଲିଦେଲେ ଏବଂ ବିଶେଷ ଅନୁପ୍ରାଣିତ କଲେ। ଉପେନ୍ଦ୍ର ଭଞ୍ଜଙ୍କ ପ୍ରତିଭାର ବିସ୍ତାର ଅସୀମ।

ପ୍ରଶ୍ନ: ଆପଣ କେବେ କବିତା ଲେଖିବାକୁ ଚେଷ୍ଟା କରିଛନ୍ତି ?

ଉତ୍ତର: ପିଲାଦିନେ କିଛି ଲେଖୁଥିଲି। ପିଲାଦିନେ ନବମ ଶ୍ରେଣୀରେ ଉପେନ୍ଦ୍ର ଭଞ୍ଜଙ୍କ କବିତାଗୁଡିକ ପଢ଼ି ମନେ ମନେ ବୋଲୁଥିଲି ଏବଂ ଆନନ୍ଦ ବିଭୋର ହେଉଥିଲି। ଆଉ ମୁଁ ବି ଛୋଟ ଛୋଟ କବିତା ଲେଖୁଥିଲି।

ପ୍ରଶ୍ନ: କବିତା ଲେଖା ଛାଡିଦେଲେ କାହିଁକି ?

ଉତ୍ତର: ମୁଁ ଭଲ କବି ନୁହେଁ। ଅଳ୍ପ କିଛି ଛୋଟ ଛୋଟ କବିତା ଲେଖିଥିଲି କିନ୍ତୁ କବିତା ଲେଖିବାର ବିଶେଷ ପାରଙ୍ଗମତା ଦେଖାଇପାରିଲି ନାହିଁ। ଏଣୁ କବିତା ଲେଖା ସେତିକିରେ ବନ୍ଦ କଲି।

ପ୍ରଶ୍ନ: ଓଡ଼ିଆ କବିତା ପଢ଼ନ୍ତି, କାହାକୁ ପଢ଼ିଛନ୍ତି ?

ଉତ୍ତର: ଅଧୁନିକ କବିତାକୁ ଭଲ ପାଇପାରେନି। ଗଙ୍ଗାଧର, ରାଧାନାଥ ପ୍ରଭୃତି କବି ଏବଂ ମଧ୍ୟଯୁଗୀୟ କବିଙ୍କ କବିତାକୁ ପଢ଼ିବାକୁ ଅଧିକ ପସନ୍ଦ କରେ। ମୋ ମନଟା ପ୍ରାଚୀନ ମଧ୍ୟରେ ରହିଯାଇଛି। ଉପେନ୍ଦ୍ର ଭଞ୍ଜ ଏବଂ ଗଙ୍ଗାଧର ହେଉଛନ୍ତି ମୋର ପୂଜ୍ୟ କବି। ଗଙ୍ଗାଧର ମୋର ଆଦର୍ଶ କବି। ତାଙ୍କ ଜୀବନୀ ମୋତେ ଖୁବ୍ ପ୍ରଭାବିତ କରିଛି। ଜଣେ ଅଳ୍ପଶିକ୍ଷିତ ପୁରପଲ୍ଲୀର ମଣିଷ ଏପରି ଜଣେ ମହାନ୍ କବି ହୋଇପାରନ୍ତି; ମୁଁ ତାଙ୍କ ଦ୍ୱାରା ଖୁବ୍ ପ୍ରଭାବିତ।





# ମିଡିଆ ସାହିତ୍ୟ ପ୍ରବାହମାନ ସାହିତ୍ୟ ସ୍ରୋତର ଉପନଦୀ

## ଡ଼ଃ ହରିହର କାନୁନ୍‌ଗୋ:

**ଗ**ଳ୍ପ, କବିତା, ଉପନ୍ୟାସ କିମ୍ବା ନାଟକ ନୁହେଁ, ମୁଖ୍ୟତଃ ପ୍ରବନ୍ଧ, ସମାଲୋଚନା, ଆଲୋଚନା ଆଦି ଲେଖାଲେଖିରେ ମନୋନିବେଶ କରିଛନ୍ତି ଡ଼ଃ ହରିହର କାନୁନ୍‌ଗୋ। କେନ୍ଦ୍ରାପଡ଼ାର ପାଟକୁରା ଅନ୍ତର୍ଗତ ଚଅଁପୁରରେ ୧୯୬୦ ମସିହାରେ ଜନ୍ମଲାଭ କରିଥିବା ହରିହର ବିଜେବି ସ୍ୱୟଂଶାସିତ ମହାବିଦ୍ୟାଳୟର ଓଡ଼ିଆ ବିଭାଗର ମୁଖ୍ୟଭାବେ କାର୍ଯ୍ୟକରି ଅବସର ନେଇଛନ୍ତି। ଓଡ଼ିଆ ସାହିତ୍ୟରେ ବିଶ୍ୱଭାରତୀ ଶାନ୍ତିନିକେତନରୁ ସ୍ନାତକୋତ୍ତର ଶିକ୍ଷା ଲାଭ କରିଛନ୍ତି ସେ। ଶାରଳା ମହାଭାରତରେ ଶ୍ରୀଜଗନ୍ନାଥଙ୍କ ଉପରେ ପିଏଚ୍.ଡି କରିଛନ୍ତି। ଧର୍ମ, ସଂସ୍କୃତି, ସାହିତ୍ୟ ଓ ଇତିହାସ ଉପରେ ପର୍ଯ୍ୟବସିତ ତାଙ୍କର ପ୍ରବନ୍ଧଗୁଡ଼ିକ ଅନେକ ସଂଭ୍ରାନ୍ତ ପତ୍ରପତ୍ରିକାରେ ପ୍ରକାଶିତ। 'ବିବର୍ତ୍ତନ ଧାରାରେ ଶ୍ରୀଜଗନ୍ନାଥ' ତାଙ୍କ ବହୁଚର୍ଚ୍ଚିତ। ପ୍ରାବନ୍ଧିକ ଭାବେ ତାଙ୍କୁ ମିଳିଛି ରାଜଧାନୀ ପୁସ୍ତକମେଳା ପୁରସ୍କାର ଓ ବୋଧିଚକ୍ର ସମ୍ମାନ। ତାଙ୍କ ସହ ହୋଇଥିବା ଆଳାପର କିୟଦଂଶ।

ପ୍ରଶ୍ନ: ଲେଖା ଲେଖି କେବେଠାରୁ ?

ଉତ୍ତର: ବିଶ୍ୱଭାରତୀ,ଶାନ୍ତିନିକେତନରୁ ୧୯୮୧ରେ ଓଡ଼ିଆରେ ଏମ୍.ଏ. ପାଶ୍ କରିବା ପରେ ସଙ୍ଗେ ସଙ୍ଗେ ସରକାରୀ କଲେଜ୍‌ରେ ଅଧ୍ୟାପକ ଚାକିରି ପାଇଲି। ପିଶ୍ୱ ଭାରତୀ ଥିଲା ସାରସ୍ୱତ ସାଧନାର ପ୍ରକୃଷ୍ଟ କ୍ଷେତ୍ର। ଅଧ୍ୟୟନ ଓ ଗବେଷଣା ଭିତରେ ସାହିତ୍ୟିକ ଜୀବନ ଗଢ଼ିବାର ଭିତ୍ତିଭୂମି ରହିଛି ସେଠି। ସେଇଠି ପଢ଼ିଲା ବେଳେ ଗବେଷଣାଧର୍ମୀ ସାହିତ୍ୟ ପ୍ରବନ୍ଧ ଦୁଇ ତିନିଟା ଲେଖିବାର ଧାରା ପାଇଥିଲି। ଲେଖାପଢ଼ା ପାଇଁ ସର୍ବଦାଅନୁକୂଳ ପରିବେଶ ହେଉଛି ଶାନ୍ତିନିକେତନ। ଏହାଛଡା ଶ୍ରୀ କୃଷ୍ଣ ଗଜପତ ମହାବିଦ୍ୟାଳୟ ଓ ତାର ପାଠାଗାର ମତେ ପ୍ରେରଣା ଦେଇଥିଲା ପି.ଏଚ୍.ଡି କରିବା ପାଇଁ। ତେଣୁ ଏହିଭଳି ସାରସ୍ୱତ ପରିବେଶରୁ ମୋର ଲେଖକୀୟ ଜୀବନ ଆରମ୍ଭ।

ପ୍ରଶ୍ନ: ଆପଣ ଓଡିଶାର ଇତିହାସ, ସାହିତ୍ୟ, ସଂସ୍କୃତି, ଧର୍ମ, ଦର୍ଶନ ଉପରେ ଅନୁସନ୍ଧାନ କରିବା ସହ ଅନେକ ପ୍ରବନ୍ଧ ମଧ୍ୟ ରଚନା କରିଛନ୍ତି। ଏ ସବୁ ରୁଚି ବଢ଼ିଲା କିପରି ?

ଉତ୍ତର: ସାହିତ୍ୟ ସହିତ ଇତିହାସର ସମ୍ପର୍କ ଯୁଗ ଯୁଗର। ଓଡିଆ ଭାଷା ସାହିତ୍ୟର ଛାତ୍ର ହେଲେ ମଧ୍ୟ ଇତିହାସ ସଂସ୍କୃତି ପ୍ରତି ମୋର ଦୁର୍ବଳତା ବେଶି। ବିଶେଷକରି ଆମ ଓଡିଶାର ସଂସ୍କୃତି, ଇତିହାସ, ପର୍ବପର୍ବାଣୀ, ଜଗନ୍ନାଥ ଉପାସନା ଓ ଧର୍ମଦର୍ଶନ ସମ୍ବନ୍ଧରେ ଅଧିକ ଜାଣିବା ପାଇଁ ଆଗ୍ରହ ଥିବାରୁ ଯୁଆଡେ ଗଲେ ସେଠୁ ତଥ୍ୟ ସଂଗ୍ରହ କରିପକାଏ। ତେଣୁ ଆଗ୍ରହ ଉତ୍କଣ୍ଠା ହିଁ ମତେ ଇତିହାସ ଓ ସଂସ୍କୃତି ଆଡକୁ ଟାଣିଆଣିଲା।

ପ୍ରଶ୍ନ: ବର୍ତ୍ତମାନ ଓଡ଼ିଶାର ସଂସ୍କୃତି ଅବକ୍ଷୟମୁଖୀ ବୋଲି ଭାବୁଛନ୍ତି କି ?

ଉତ୍ତର: ବର୍ତ୍ତମାନ ଓଡ଼ିଶାର ସଂସ୍କୃତି ଅବକ୍ଷୟମୁଖୀ କହିବା ଠିକ୍ ନୁହେଁ। କାରଣ ସଂସ୍କୃତି ଏକ ଅଚଳ ପାହାଡ- ତାହା ଏକ ପ୍ରବାହମାନ ନଦୀ। ତେଣୁ ବର୍ତ୍ତମାନ ଓଡ଼ିଆ ସଂସ୍କୃତିକୁ ପୂର୍ବ ସଂସ୍କୃତିର କ୍ରମପ୍ରସାରଣଶୀଳତା ବୋଲି କୁହାଯାଇପାରେ।

ପ୍ରଶ୍ନ: ଯୁଗ ଏବଂ ସମୟ ବଦଳିଛି। ଲୋକଙ୍କ ଭିତର ଦର୍ଶନ ମଧ୍ୟ ବଦଳୁଛି। ଏ ସମ୍ପର୍କରେ ଆପଣଙ୍କ ମତ କ'ଣ ?

ଉତ୍ତର: ଯୁଗ ଏବଂ ସମୟ ସ୍ଥିର ନୁହେଁ-ତାହା ବଦଳେ, ବଦଳିଛି ଏବଂ ବଦଳୁଛି ମଧ୍ୟ। ନିରବଧି କାଳ। ପ୍ରବାହମାନତା ତାର ନିୟତି। ପରିବର୍ତ୍ତନଶୀଳତାର

ସଂକେତରେ ତହିଁରେ ପରିପ୍ରକାଶ। ରାମାୟଣ ମୂଲ୍ୟବୋଧକୁ ମହାଭାରତ ସମୟର ମୂଲ୍ୟବୋଧ ମଧ୍ୟରେ ଖୋଜି ବସିଲେ ଯେଉଁ ତଫାତ୍ ଦେଖାଯାଏ, ପ୍ରାଚୀନ ମୂଲ୍ୟବୋଧ ଦେଇ ବର୍ତ୍ତମାନ ଲୋକଚଳଣି ଓ ସେମାନଙ୍କ ଜୀବନଧାରାକୁ ତଉଲି ବସିଲେ ଜୀବନ ଦର୍ଶନରେ ବେଖାପ ଆସୁଥିବା ଯେ କେହି ଲକ୍ଷ୍ୟ କରିପାରନ୍ତି। କିନ୍ତୁ ପରିବର୍ତ୍ତନଶୀଳତା ଯେହେତୁ ପ୍ରବାହମାନ କାଳର ସ୍ପଷ୍ଟ ସାଙ୍କେତିକ ଛାପ, ତେଣୁ ପରିବର୍ତ୍ତନ ଦର୍ଶନ ଯୁଗପୋଯୋଗୀ ବୋଲି ବୁଝିବାକୁ ହେବ।

ପ୍ରଶ୍ନ: ଆପଣ 'ସାରଳା ମହାଭାରତରେ ଶ୍ରୀ ଜଗନ୍ନାଥ' ବିଷୟ ଉପରେ ପିଏଚ୍.ଡି କରିଛନ୍ତି। ସାରଳା ମହାଭାରତରେ ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ଆପଣ କ'ଣ କହିବେ ?

ଉତ୍ତର: ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରେ ରଚିତ ସାରଳା ମହାଭାରତ ଓଡ଼ିଆ ଜାତିର ଜୀବନ ବେଦ। ଏ ଜାତିର ଇଷ୍ଟଦେବତା ଜଗନ୍ନଥଙ୍କ ନିକଟରେ ପ୍ରଣିପାତ ପୂର୍ବକ ଯେଉଁ କପିଳେଶ୍ୱର ଦେବ ମହାରାଜ ତାଙ୍କର ଅର୍ଚ୍ଚନା ଏବଂ ବନ୍ଦନା କରୁଥିଲେ ସାରଳା ଦାସ ଥିଲେ ତାଙ୍କର ସମସାମୟିକ କବି। ତାଙ୍କ ଭାଷାରେ ଜଗନ୍ନାଥ ବୌଦ୍ଧ ରୂପରେ ଶ୍ରୀ ନୀଳକନ୍ଦରରେ ବିରାଜିତ ଅଛନ୍ତି। ଲୋକାଚାର ଦୃଷ୍ଟିରୁ ଶ୍ରୀକୃଷ୍ଣଙ୍କର ଅପୋଡା ପିଣ୍ଡ ହିଁ ଶ୍ରୀକ୍ଷେତ୍ରରେ ଦାରୁ ରୂପେ ଜଗନ୍ନାଥ ହୋଇ ପୂଜା ପାଉଛନ୍ତି। ଏ ଅଭିନବ କଳ୍ପନା ଅନ୍ୟତ୍ର ଦୁର୍ଲଭ। ମୂଷଳୀ ପର୍ବରେ ଜଗନ୍ନାଥଙ୍କର ଉତ୍ପତ୍ତି ତାଙ୍କ ଦେଉଳତୋଳା ଆଦିର ଯେଉଁ ବିବରଣୀ ସାରଳା ଦାସ ପ୍ରଦାନ କରିଯାଇଛନ୍ତି, ତହିଁର ଅନ୍ତରାଳେ ଲୁକାୟିତ ରହିଛି ଅତିତ ଓଡ଼ିଶାର ଲୋକଜୀବନଧାରା, ଜୀବନ ଦର୍ଶନ, ଚଳଣୀ, ଲୋକରୁଚି, ପ୍ରବର୍ତ୍ତିତ ଥିବା ବିଭିନ୍ନ ପୂଜାପାର୍ବଣ ଇତ୍ୟାଦି। ଗୋଟିଏ ବାକ୍ୟରେ କହିଲେ ହେବ ସାରଳା ଦାସଙ୍କ ମହାଭାରତ ବ୍ୟାସକୃତ ମହାଭାରତ ପୃଷ୍ଠଭୂମିରେ ଏକ ଅଭିନବ ମୌଳିକ ପୁରାଣହର୍ମ୍ୟ ନୁହେଁ, ପରନ୍ତୁ ଓଡ଼ିଆ ଜାତିର ବନ୍ଧୁ ପରିଚିତ ମାଧ୍ୟମ ଜଗନ୍ନାଥଙ୍କୁ ବନ୍ଧୁ ଭାବେ ଉପସ୍ଥାପନ କରିବାର ପ୍ରଥମ ପ୍ରାମାଣିକ କାବ୍ୟ ସୁନନ୍ଦ।

ପ୍ରଶ୍ନ: ସାରଳା ମହାଭାରତର ଏକ ସ୍ୱିକୃତ ଚରିତ୍ର ଶ୍ରୀଖଣ୍ଡୀ। ଆପଣଙ୍କ ଦୃଷ୍ଟିରେ ଶ୍ରୀଖଣ୍ଡୀ କ'ଣ ?

ଉତ୍ତର: ସାରଳା ମହାଭାରତରେ ଶ୍ରୀଖଣ୍ଡୀ ଚରିତ୍ରର ଉତ୍ପତ୍ତି ଦ୍ରୁପଦଙ୍କ ବିକୃତ ମାନସିକତାରୁ ସମ୍ଭବପର ହୋଇଛି। ସେ ଚାହିଁଥିଲେ ଏକ କନ୍ୟା, ଯାହାକୁ

ନେଇ ସେ ଅର୍ଜୁନଙ୍କୁ କ୍ୱାଇଁ ରୂପେ ପାଇପାରିବେ। କିନ୍ତୁ ଯଜ୍ଞରେ ଆହୁତି ଦେବା ବେଳକୁ ଅଗ୍ନିଶିଖା ସ୍ଥିର ରହିଲା। ତହିଁରୁ ଭୂମିଷ୍ଠ ହେଲେ ଶିଖଣ୍ଡୀ, ଯିଏ ନାରୀ ନୁହନ୍ତି କିମ୍ବା ପୁରୁଷ ବି ନୁହନ୍ତି। ପୂର୍ବଜନ୍ମରେ ସେ ଥିଲେ ପଦ୍ମଦଳ ଦେଶର ରାଜକନ୍ୟା ଅମ୍ବାଳିକା। ଏହି ଶିଖଣ୍ଡୀଙ୍କ ଭାଇ ହେଲେ ଧୃଷ୍ଟଦ୍ୟୁମ୍ନ ଏବଂ ଭଉଣୀ ହେଲେ ଦ୍ରୌପଦୀ। ମହାଭାରତ ଯୁଦ୍ଧରେ ଅର୍ଜୁନ ଶିଖଣ୍ଡୀଙ୍କୁ ଆଗରେ ରଖି ଭୀଷ୍ମଙ୍କ ସହ ଯୁଦ୍ଧ କଲେ। ଗଙ୍ଗାପୁତ୍ର ଦେବବ୍ରତ ଅମ୍ବାଳିକାଙ୍କ ଦ୍ୱାରା ଅଭିଶପ୍ତ ହୋଇଥିଲେ। ଏହି ଅଭିଶାପର ଫଳ ଫଳିଲା କୁରୁକ୍ଷେତ୍ରରେ। ଶିଖଣ୍ଡୀଙ୍କୁ ଦେଖି ଦେବବ୍ରତ ପିତାମହ ଭୀଷ୍ମ ଅସ୍ତ୍ର ତ୍ୟାଗ କଲେ। ଶିଖଣ୍ଡୀ ଭଳି ଚରିତ୍ର ପରିକଳ୍ପନା କରା ନ ଯାଇଥିଲେ ମହାଭାରତ ପୂର୍ଣ୍ଣାଙ୍ଗ ହୋଇପାରି ନଥାନ୍ତା। 'ଯାହା ନାହିଁ ଭାରତେ, ତାହା ନାହିଁ ଜଗତେ' ଉକ୍ତିଟି ନିରର୍ଥକ ହୋଇଯାଇଥାନ୍ତା। ଶରଶଯ୍ୟାଶାୟୀ ଭୀଷ୍ମଙ୍କ ମଧ୍ୟରୁ ଉଚ୍ଚାଙ୍ଗ ଦର୍ଶନ ଶୁଣିବାର ଅବକାଶରୁ ଓଡ଼ିଶାର ଜନସାଧାରଣ ବଞ୍ଚିତ ହୋଇଥାନ୍ତେ। ତେଣୁ ଶିଖଣ୍ଡୀଙ୍କୁ ବିକୃତ ଚରିତ୍ର କହିବା ଅପେକ୍ଷା ମହାଭାରତର ଆଧ୍ୟାତ୍ମିକ ଭବରସ ସେଚନର ଉତ୍ସ ଚରିତ୍ର କହିବା ଅଧିକ ପ୍ରାସଙ୍ଗିକ ହେବ।

ପ୍ରଶ୍ନ: ପୂର୍ବରୁ ସାହିତ୍ୟରୁ ଚଳଚ୍ଚିତ୍ର ଏବଂ ଧାରାବାହିକ ପ୍ରସ୍ତୁତ ହେଉଥିଲା। କିନ୍ତୁ ଏବେ ମିଡିଆର ଆବଶ୍ୟକତାକୁ ନେଇ ସାହିତ୍ୟର ସୃଷ୍ଟି। ଏହା ସହିତ ଆପଣ ଏକମତ କି ? ଏହାଦ୍ୱାରା ସାହିତ୍ୟ ନିଜର ଗାରିମା ହରାଉଛି କି ?

ଉତ୍ତର: ପୂର୍ବରୁ ସାହିତ୍ୟରୁ ଚଳଚ୍ଚିତ୍ର ଏବଂ ଧାରାବାହିକ ପ୍ରସ୍ତୁତ ହେଉଥିଲା। ଉଦାହରଣ 'ଛ ମାଣ ଆଠଗୁଣ୍ଠ', କା' ଉପନ୍ୟାସ ଆଦି ଚଳଚ୍ଚିତ୍ର ହୋଇପାରିଛି। କାମପାଳ ମିଶ୍ରଙ୍କ 'ସୀତା ବିବାହ' ନାଟକ ମଧ୍ୟ ଚଳଚ୍ଚିତ୍ର ରୂପ ଘେନିଛି। ଏପରିକି ଫକୀରମୋହନଙ୍କ 'ପେଟେଣ୍ଟ ମେଡିସିନ୍' ଗଳ୍ପ ଓ ବଭୂତି ପଟ୍ଟନାୟକଙ୍କ 'ବଧୂ ନିରୁପମା' ଓ 'ଛବିର ମଣିଷ' ଉପନ୍ୟାସ ଚଳଚ୍ଚିତ୍ର ହୋଇଛି। କିନ୍ତୁ ଆଜିକାଲି ଲୋକ ରୁଚିକୁ ଚାହିଁ ମିଡିଆ ବିଭିନ୍ନ ପ୍ରକାର ଧାରାବାହିକ ପ୍ରସ୍ତୁତ କରୁଛି। ଏହାଦ୍ୱାରା ସାହିତ୍ୟ କ୍ଷତିଗ୍ରସ୍ତ ହେଉନାହିଁ, ବରଂ ସର୍ଜନଶୀଳ ସାହିତ୍ୟଧାରାରେ ଆଉ ଏକ ପ୍ରକାରର ପରମ୍ପରା ସୃଷ୍ଟି ହେଉଛି। ଏଥିରେ ପୁସ୍ତକ ନାହିଁ, ଅଥଚ ଭାଷା ଅଛି, ଚିତ୍ର ଅଛି ଓ ଚରିତ୍ର ବି ରହିଛନ୍ତି। ପୂର୍ବରୁ ମୌଖିକ ସାହିତ୍ୟ ଥିଲା। ମିଡିଆର ଏ ପ୍ରକାର ପରମ୍ପରାକୁ ମିଡିଆ ସାହିତ୍ୟ କହିବା ଭୁଲ୍ ହେବନାହିଁ। ଜନ ମନୋରଞ୍ଜନ କେବଳ ଏହାର ଲକ୍ଷ୍ୟ ନୁହେଁ, ସମାଜ ଓ ଜୀବନକୁ ଏହା ବହୁଳ ଭାବେ ପ୍ରଭାବିତ

କରୁଅଛି । ତେଣୁ ସାହିତ୍ୟର ଗାରିମା ଏହାଦ୍ୱାରା କ୍ଷୁର୍ଣ୍ଣ ହେବାର ପ୍ରଶ୍ନ ଉଠୁନାହିଁ, ବରଂ ମୁଖ୍ୟ ସାହିତ୍ୟ ସ୍ରୋତର ଆଉ ଏକ ପ୍ରବାହ ରୂପେ ମିଡିଆ ସାହିତ୍ୟ ଉପନଦୀ ହେବାର ଯୋଗ୍ୟତା ଲାଭ କରିଛି ।





# ସତ୍ୟକୁ ଉତ୍ତାରିପାରିଲେ ସାହିତ୍ୟ ହେବ ଉନ୍ନତ

## ସହଦେବ କୁମାର:

**ବି**ଶିଷ୍ଟ ଶିକ୍ଷାବିତ୍ ତଥା ଲେଖକ/ଗବେଷକ ପ୍ରଫେସର ସହଦେବ କୁମାର। ଭାରତରେ ଯଦିଓ ତାଙ୍କର ଜନ୍ମ। ସେ କିନ୍ତୁ ରହନ୍ତି କାନାଡାରେ। ପ୍ରଫେସର କୁମାର ସାହୁ କବୀରଙ୍କ ଉପରେ ଉଚ୍ଚତର ଗବେଷଣା କରିଛନ୍ତି। ସାହିତ୍ୟ ସମ୍ପର୍କରେ ତାଙ୍କର ମତ- ସାଧାରଣ ଲୋକଙ୍କ ପାଖରେ ପହଞ୍ଚିବା ପାଇଁ ସାହିତ୍ୟ ଅଧିକ ରୁଚିସମ୍ପନ୍ନ ଓ ସରଳ ହେବା ଆବଶ୍ୟକ।

ପ୍ରଶ୍ନ: ଆପଣଙ୍କ ସାହିତ୍ୟ ଜୀବନର ଆରମ୍ଭ କିପରି ?

ଉତ୍ତର: ମୁଁ ପାଞ୍ଚ/ଛଅ ଶ୍ରେଣୀରେ ପଢ଼ିବାବେଳେ ଛୋଟ ଛୋଟ କବିତା ଲେଖିବା ଆରମ୍ଭ କଲି । ମୋତେ ସେତେବେଳେ ଦଶବର୍ଷ । ଫାଣ୍ଟାସି, ରିଏଲିଟି ଉପରେ ଲେଖିବା ଆରମ୍ଭ କଲି । ସାହିତ୍ୟ ଓ ଚଳଚ୍ଚିତ୍ରରେ ମୋର ପିଲାଦିନରୁ ରୁଚି ଥିଲା । ମୋତେ ଦୁନିଆ ପିଲାଦିନରୁ ଖୁବ୍ ଭଲ ଲାଗିଆସିଛି ।

ପ୍ରଶ୍ନ: ଆପଣ ସନ୍ଥ କବୀରଙ୍କ ସମ୍ପର୍କରେ ପୁସ୍ତକ ଲେଖିଛନ୍ତି । ଏ ସମ୍ପର୍କରେ କ'ଣ କହିବେ ?

ଉତ୍ତର: ସନ୍ଥ କବୀରଙ୍କ ପ୍ରତି ମୋର ବିଶେଷ ଭକ୍ତି ଏବଂ ଶ୍ରଦ୍ଧା ରହିଛି । କବୀରଙ୍କ ଉପରେ ମୋର ପୁସ୍ତକ The vision of Kavir ଲେଖିଛି ଏବଂ Lotus in the stone ମୋର ଦ୍ୱିତିୟ ପୁସ୍ତକ । ଶହେ ଉପରେ ପେଣ୍ଟିଂ, ମନୁବାଣୀ ଆଦିକୁ ନେଇ ମୋର ଲୋଟସ୍ ଇନ୍ ଦ ଷ୍ଟୋନ୍ ଲିଖିତ । କବୀରଙ୍କ vision କୁ ମୁଁ ଏହି ପୁସ୍ତକରେ Explore କରିଛି ।

ପ୍ରଶ୍ନ: ଗଳ୍ପ ଲେଖିବାକୁ କେବେ ଚେଷ୍ଟା କରିଛନ୍ତି କି ?

ଉତ୍ତର: ନା, ମନହୁଏ କିନ୍ତୁ କେବେ ଗଳ୍ପ ଲେଖିନି । କବିତା ମୋ ପାଇଁ ବହୁତ ଗଭୀର ଇମୋଶନ । ବହୁତ କମ୍‌ରେ ଅଧିକ କହିବାକୁ ପଡ଼ିଥାଏ କବିତାରେ । ଉପନ୍ୟାସ, ଗଳ୍ପରେ ଆଗପଛ କରି ବହୁତ କହିବାକୁ ଥାଏ । ଭାବନା, ଲିରିସେସନ୍ ଆଦି କବିତାରେ ଥାଏ, ଯାହା କି ମୋତେ ସବୁବେଳେ ପ୍ରଭାବିତ କରିଆସିଛି ।

ପ୍ରଶ୍ନ: କ'ଣ କଲେ ସାହିତ୍ୟ ସାଧାରଣ ଲୋକଙ୍କ ପାଖକୁ ପହଞ୍ଚିବ ?

ଉତ୍ତର: ସାହିତ୍ୟକୁ ନ୍ୟାଚୁରାଲ କରିବାକୁ ପଡ଼ିବ । ହିଷ୍ଟୋରିକାଲ୍ ବା କନ୍‌ଟେମ୍ପୋରି ଲେଖାକୁ ଲୋକ ପସନ୍ଦ କରିଥାନ୍ତି । ସାଧାରଣ ଲୋକ ପାଖକୁ ପହଞ୍ଚିବାକୁ ହେଲେ ଆମ ସାହିତ୍ୟର ବିଷୟ ରୁଚିସମ୍ପନ୍ନ ଏବଂ ସରଳ ହେବାକୁ ପଡିବ ।

ପ୍ରଶ୍ନ: କେଉଁଭଳି ସାହିତ୍ୟ ଆପଣଙ୍କୁ ଭଲ ଲାଗେ ?

ଉତ୍ତର: ସିରିଅଲ୍ ଲିଟେରେଚର । ଯେଉଁ ସାହିତ୍ୟରେ ଫିଲୋସଫି ଥିବ । ସାହିତ୍ୟ ବିଭିନ୍ନ ପ୍ରକାର ପାଠକଙ୍କୁ ଆମୋଦ ଦେଉଥିବା ଦରକାର । ମୁଁ କେବେ ବି କହିବିନି ସାହିତ୍ୟ ନିର୍ଦ୍ଦିଷ୍ଟ ଗୋଟିଏ ଗ୍ରୁପ୍‌ରେ ରହିବା ଦରକାର ନୁହେଁ । ଲେଖକ ଯେଉଁଠି ଅନୁଭବୀ, ଯେଉଁ ବିଷୟରେ ତା'ର ଜ୍ଞାନ ଥିବ ଏବଂ

ଯେଉଁ ବିଷୟରେ ସେ ସହଜ ଅନୁଭବ କରୁଥିବ ତାକୁ ଦେଖିବା ଦରକାର। ସୁପରଫେସିଆଲ ଲିଟେରେଚର କେବେ ରହିବା ଉଚିତ ନୁହେଁ। ଯାହା ସତ୍ୟ ତାକୁ ଠିକ୍ ଭାବରେ ସାହିତ୍ୟରେ ଉତାରିପାରିଲେ ସେହି ସାହିତ୍ୟ ଉତ୍କୃଷ୍ଟ ଏବଂ ଉନ୍ନତ ମାନର।

ପ୍ରଶ୍ନ: ଦ୍ୱିତୀୟ ଚରିତ୍ରକୁ ନେଇ ସାହିତ୍ୟ ଲେଖିବା ସମ୍ପର୍କରେ ଆପଣ କ'ଣ କହିବେ ?

ଉତ୍ତର: ଇମାଜିନେଶନ ତ ସାହିତ୍ୟରେ ରହିବା ଦରକାର। କୌଣସି ଚରିତ୍ରକୁ ରିପିଟ୍ କରାଯିବା ମଧ୍ୟ ନିହାତି ଦରକାର। କିନ୍ତୁ ସେହି ଚରିତ୍ରକୁ ଲେଖକ କଳ୍ପନାରେ ସୁନ୍ଦର ଶୈଳୀରେ ଢ଼ାଳିପାରିଲେ ହେଲା ଏବଂ ସେହି ଚରିତ୍ରକୁ ନେଇ ଯେଉଁ ମିଥ୍ ରହିଛି ତାକୁ ନେଇ ପରବର୍ତ୍ତୀ ସାହିତ୍ୟ ପ୍ରଶ୍ନ କରିପାରୁ ନାହିଁ। ମୁଁ କହିବି ସାହିତ୍ୟ ସବୁବେଳେ ପ୍ରଶ୍ନ ଛାଡିବା କଥା।





# ସିରିୟସ ଗଳ୍ପରେ ସାହିତ୍ୟ ଆତ୍ମା ଚରିତ୍ର ଭିତରେ ସଞ୍ଚରିଯାଏ

## ପୀତବାସ ରାଉତରାୟ:

**ବ୍ୟ**ଙ୍ଗ ଓ ରମ୍ୟରଚନାର ଏକ ଭିନ୍ନଧାରା ସୃଷ୍ଟି କରିଛନ୍ତି ପୀତବାସ ରାଉତରାୟ। କେବଳ ବ୍ୟଙ୍ଗ ନୁହେଁ, ସେ ବି ଲେଖିଛନ୍ତି ସିରିୟସ ଗଳ୍ପ। ରମ୍ୟରଚନା, ଓଡ଼ିଆ ସାହିତ୍ୟରେ ଫକୀରମୋହନଙ୍କଠାରୁ ଆରମ୍ଭକରି ମହାପାତ୍ର ନୀଳମଣି ସାହୁଙ୍କ ପର୍ଯ୍ୟନ୍ତ ଧୁରୀଣ ଲେଖକ ବୃନ୍ଦ ବ୍ୟଙ୍ଗର ଧାରା ସୃଷ୍ଟି କରିଯାଇଥିଲେ ମଧ୍ୟ ଆଜି ଏହାର ପ୍ରବାହ ମନ୍ଥର ହୋଇଯାଇଥିବା କାରଣରୁ ମନରେ ଅବଶୋଷ ତାଙ୍କର। ସେହି ଧାରାକୁ ଅବ୍ୟାହତ ରଖିବା ପାଇଁ ସଚେଷ୍ଟ ଥିବା ପୀତବାସ ଶ୍ରୀଜଗନ୍ନାଥ ଚିନ୍ତା ଚେତନାରେ ନିମଗ୍ନ। ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଚେତନା ଉପରେ ଆଧାରିତ ଅନୁଭୂତି ଓ ଅନୁଭବକୁ ନେଇ ସେ ଇତିମଧ୍ୟରେ ସଙ୍କଳିତ କରିସାରିଲେଣି ୧୧ଟି ପୁସ୍ତକ।

ପ୍ରଶ୍ନ: ସାହିତ୍ୟ ଜଗତକୁ ପ୍ରବେଶ କିପରି କଲେ ?

ଉତ୍ତର: ପିଲାଦିନରୁ ଆଈ ମା' କାହାଣୀ ଶୁଣିବା ବେଳର, ଅଗ୍ନାଅଗ୍ନି ବନସ୍ତରେ ପତରଟିଏ ପଡିଲେ ପଥର ପଡିଲା ଭଳି ଶବ୍ଦ ହୁଏ ଗପ ଶୁଣି ଶୁଣି ସେ ସମୟରୁ କଳ୍ପନା ରାଜ୍ୟରେ ପ୍ରବେଶ ଆରମ୍ଭ ହୋଇଯାଇଥିଲା । ଗାଁ ପରିବେଶ ଡେଇଁ ଯେତେବେଳେ ଭୁବନେଶ୍ୱର ଆସିଲି ସେତେବେଳେ ବାପା ଥିଲେ ସମବାୟ ବିଭାଗର ଶିକ୍ଷା ଓ ସଂପ୍ରସାରଣ ଅଧିକାରୀ । ସେତେବେଳେ ସବୁ ଖବରକାଗଜ ଆମ ଘରକୁ ଆସୁଥିଲା । ଅଧିକାଂଶ ଖବରକାଗଜ ସପ୍ତାହରେ ଶିଶୁମାନଙ୍କ ପାଇଁ ସ୍ୱତନ୍ତ୍ର ପୃଷ୍ଠା ପ୍ରକାଶ କରୁଥିଲେ । ସେଇ ସମୟରେ ଶିଶୁ ରାଇଜ, ମୀନାବଜାର ଓ ଉଦୟଭାନୁର ପୃଷ୍ଠା ସବୁ ସାହିତ୍ୟ ପ୍ରତି ଆକୃଷ୍ଟ କଲା ଓ ପିଲାଦିନୁ ସ୍କୁଲ ମାଗାଜିନରୁ ଲେଖା ଆରମ୍ଭ ହୋଇଗଲା ।

ପ୍ରଶ୍ନ: ଅନେକ ଗଳ୍ପ ଏବଂ ରମ୍ୟରଚନା ଲେଖିଛନ୍ତି । କେବେ ସାହିତ୍ୟର ଅନ୍ୟ ବିଭାଗରେ ଲେଖନୀ ଚାଳନା କରିବାକୁ ଚେଷ୍ଟା କରିଛନ୍ତି କି ?

ଉତ୍ତର: ଗୋଟିଏ ବ୍ୟଙ୍ଗ ଉପନ୍ୟାସଟିଏ ଲେଖିଛି 'ମହା କବିଙ୍କ ମହାପ୍ରସ୍ଥାନ' ।

ପ୍ରଶ୍ନ: ଆପଣଙ୍କ ରମ୍ୟରଚନାରେ ସାମାଜିକ ସାଟାୟାର ଅଧିକ ରହିଥାଏ । ଏହି ବିଷୟ ସମାଜରୁ ସଂଗ୍ରହ କରନ୍ତି ନା କଳ୍ପନାରେ ଲେଖନ୍ତି ?

ଉତ୍ତର: ଆମ ସମାଜରେ ଏତେ ଘଟଣା ଘଟିଚାଲିଛି ଯେ ଖବରକାଗଜ ଓଲଟାଇଲେ ଲାଞ୍ଚ, ମିଛ, ଦୁର୍ନୀତି, ପ୍ରିୟାପ୍ରୀତିତୋଷଣ ରାଜନୈତିକ ଛକାପଞ୍ଝା ତଥା ବିଚିତ୍ର ପ୍ରେମ କାହାଣୀର ମସଲା ମିଳିଯାଉଛି ତେଣୁ କଳ୍ପନାର କି ପ୍ରୟୋଜନ ?

ପ୍ରଶ୍ନ: ଆପଣ 'ପତ୍ନୀଙ୍କୁ ନେଇ ଗପ ଲେଖିବି ନାହିଁ' କହି ପୁସ୍ତକରେ ଅଧିକାଶଂ ଗଳ୍ପରେ ପତ୍ନୀଙ୍କୁ ନେଇ ଲେଖିଥିବା ମନେହୁଏ ?

ଉତ୍ତର: ପତ୍ନୀ ହେଲେ ଅର୍ଦ୍ଧାଙ୍ଗିନୀ । ଆମ ଭଳି ଚାକିରିଆ ଜୀବମାନଙ୍କର ଅଧା ସମୟ କଟେ କାର୍ଯ୍ୟାଳୟରେ ଓ ବାକି ଅଧା ସମୟ ଭାର୍ଯ୍ୟାଳୟରେ । ତେଣୁ ନିତ୍ୟ ଘରକରଣା ଜିନିଷକୁ ଟିକିଏ ତେର୍ଛା ନଜର ପକାଇଲେ ଅନେକ ବ୍ୟଙ୍ଗାତ୍ମକ ପରିସ୍ଥିତି ଜନ୍ମ ନେଇଯାଏ । ମୋର ଅନ୍ୟ ଦୁଇଟି ବ୍ୟଙ୍ଗ ସଂକଳନ 'ଶ୍ରୀମତୀ ବିଶ୍ୱ ସୁନ୍ଦରୀ' ଓ 'ଟେଲିଭିଜନ୍‌ରେ ଦାମ୍ପତ୍ୟ ଲୀଳା'ରେ ମଧ୍ୟ ପତ୍ନୀ ବିଦ୍ୟମାନ । ପତ୍ନୀମାନେ ନୁହେଁ ମୋ' ପତ୍ନୀ, ଏହା ଅନ୍ୟ ଅର୍ଥରେ ଗୃହିଣୀମାନଙ୍କୁ ନେଇ ।

ପ୍ରଶ୍ନ: ଆପଣଙ୍କର ଗଳ୍ପ ସଂକଳନ 'ଚିଠିଟିଏ ଗପଟିଏ' ଯାହା ଖୁବ୍ କମ୍ ଦିନରେ ଦ୍ୱିତୀୟ ମୁଦ୍ରଣ ହୋଇଥିଲା । ସେ ସମ୍ପର୍କରେ କ'ଣ କହିବେ ?

ଉତ୍ତର: 'ଚିଠିଟିଏ ଗପଟିଏ' ସଂକଳନ ସମୟରେ ମୁଁ ଓଡ଼ିଆ ପାଠକଙ୍କ ଉପରେ ଗୋଟିଏ ପରୀକ୍ଷା କରିଥିଲି। ସେ ସଂକଳନର ଆକାର ଥିଲା ଅଲଗା। ଓସାର ତୁଳନାରେ ଲମ୍ବ ଥିଲା ଯଥେଷ୍ଟ ବଡ ଯାହା ବହି ଦୋକାନର ଥାକରେ ସବୁଠାରୁ ସହଜରେ ବାରିହୋଇ ପଡୁଥିଲା। ଦ୍ୱିତୀୟରେ ସେ ବହିରେ ଥିବା ଗପଗୁଡ଼ିକ ଦୁଇ ପୃଷ୍ଠାରୁ ତିନି ପୃଷ୍ଠା ଭିତରେ ସୀମିତ ଥିଲା। ତୃତୀୟରେ ତା'ର ଦାମ ଥିଲା ମାତ୍ର ୧୦ଟଙ୍କା। ୬୪ ପୃଷ୍ଠା ଲମ୍ବ ପୁସ୍ତକର ଚବିଶଟି ଗପ ଥିଲା। ୨୦୦୩ ରେ ରାଜଧାନୀପୁସ୍ତକ ମେଳା ସମୟରେ ଦୁଇହଜାର କପି ଶେଷ ହୋଇ ଏହାର ଦ୍ୱିତୀୟ ମୁଦ୍ରଣ ହୋଇଥିଲା। ସେଇ ଧାରାରେ ମୋର ଆଉ ଗୋଟିଏ ବହି 'ଅନେକ ସୂର୍ଯ୍ୟର ରଶ୍ମି' ମଧ୍ୟ ବେଶ ଲୋକପ୍ରିୟ ହୋଇପାରିଛି।

ପ୍ରଶ୍ନ: ଆପଣଙ୍କ କ୍ଷୁଦ୍ରଗଳ୍ପରେ ଅଧିକ ପରିଚିତି ରହିଛି। ତେବେ ରମ୍ୟ ରଚନା ଲେଖିବା ପାଇଁ ମନସ୍ଥ କଲେ କାହିଁକି ?

ଉତ୍ତର: ଜୀବନକୁ କେବଳ ସିରିୟସ୍ ଦୃଷ୍ଟିରେ ନ ଦେଖି ତିର୍ଯ୍ୟକ ଦୃଷ୍ଟିରେ ଦେଖିବା ପାଇଁ ମନରେ ପ୍ରବଳ ଆଗ୍ରହ ହେଲା। ଦ୍ୱିତୀୟରେ ସବୁ ଘଟଣାକୁ କ୍ଷୁଦ୍ରଗଳ୍ପର ପରିସରରେ ନ ଆଣି ରମ୍ୟଗଳ୍ପର ଢ଼ଙ୍ଗରେ ଲେଖିଲେ ଆବେଦନ ଭଲ ହେବ ଭାବି ବ୍ୟଙ୍ଗଗଳ୍ପ ଲେଖିବା ଆରମ୍ଭ କଲି। ପ୍ରଥମେ ମୁଁ ଛଦ୍ମନାମରେ ଲେଖି ପାଠକୀୟ ସ୍ୱୀକୃତି ପାଇ ତା'ପରେ ସିଧାସଳଖ ବ୍ୟଙ୍ଗ ମଇଦାନରେ ଅବତୀର୍ଣ୍ଣ ହେଲି।

ପ୍ରଶ୍ନ: ବିଶ୍ୱ ସାହିତ୍ୟକୁ ଅନୁଧ୍ୟାନ କଲେ ଓସକାର ୱାଇଲଡ୍, ଓରାଜେନ୍‌ସ ସାଟାୟାର ବଳିଷ୍ଠ ମନେହୁଏ। ଓଡିଆ ସାହିତ୍ୟରେ ସାଟାୟାରର ସ୍ଥାନ କେଉଁଠି ?

ଉତ୍ତର: ଓଡ଼ିଆ ଭାଷାରେ ସାହିତ୍ୟ ଅଧ୍ୟୟନ କଲେ ଆଶ୍ଚର୍ଯ୍ୟ ଲାଗେ ଯେ ଓଡ଼ିଆ ସାହିତ୍ୟର ବଡ଼ବଡ଼ ରଥୀଗଣ ବହୁ ପୂର୍ବରୁ ସାଟାୟାରରେ ବ୍ୟୁତ୍ପତ୍ତି ଲାଭ କରିଥିଲେ। ଫକୀରମୋହନଙ୍କଠାରୁ ଆରମ୍ଭ କରି କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ଗୋପାଳ ପ୍ରହରାଜ ଓ ବୈଷ୍ଣବ ପାଣି କେବଳ ମନମୋହିବା ପାଇଁ ନୁହେଁ ପ୍ରାଶାସନକୁ ବଦଳାଇବା ପାଇଁ ବ୍ୟଙ୍ଗ ମାଧ୍ୟମରେ ଲେଖନୀ ଚାଳନା କରିଥିଲେ। ନିଆଁଖୁଣ୍ଟା ଭଳି ପତ୍ରିକାଟିଏ-ଯେତେବେଳେ ଗମନାଗମନର କୌଣସି ସୁବିଧା ନ ଥିଲା ସେତେବେଳେ ଘରେ ଘରେ ପରିଚିତ ଥିଲା। ତାଙ୍କର ଡାମରାକାଉର ସାଟାୟାର ପାଠକଙ୍କ କାନରେ ରାଉରାଉ କରିଚାଲିଛି। ଫତୁରାନନ୍ଦ ଓ ମହାପାତ୍ର ନୀଳମଣି ସାହୁଙ୍କ ସାଟାୟାର ମଧ୍ୟ ପାଠକଙ୍କ ମନକୁ ଦୋହଲାଇ ଦିଏ।

ପ୍ରଶ୍ନ: ଜଣେ ସୃଜନଶୀଳ କଥାକାର ରୂପେ ଆପଣ କଳା ଓ ସୌନ୍ଦର୍ଯ୍ୟ ସାଙ୍ଗେ ନୈତିକତାକୁ କିପରି ବୁଝନ୍ତି ସାହିତ୍ୟରେ ?

ଉତ୍ତର: ନୈତିକତା ହେଉଛି ଏକ ମାନସିକ ଚିନ୍ତା ଓ ଚେତନା। ସବୁ ସମୟରେ ଯୋଡ଼ିବା ପାଇଁ ଚେଷ୍ଟା କଲେ ସୃଜନ ପ୍ରକ୍ରିୟା ନଦୀ ଭଳି ନ ବହି କେନାଲ ପାଣି ଭଳି ବହିଥାଏ।

ପ୍ରଶ୍ନ: ଆପଣଙ୍କ ଲେଖାରେ ସାମାଜିକ ଦୃଷ୍ଟିଭଙ୍ଗୀ ଏତେ ତୀବ୍ର ଓ ଶାଣିତ କାହିଁକି ?

ଉତ୍ତର: ସମାଜ ହିଁ ଯୋଗାଇ ଦେଉଛି ଉପାଦାନ ଆଉ ମନ ଚାହୁଁଛି କରିବା ପାଇଁ ସମାଧାନ।

ପ୍ରଶ୍ନ: ସାହିତ୍ୟିକ ଜୀବନରେ ଗୋଟିଏ ଅନୁଭବ ଥାଏ–ତା'ଭିତରେ ବେଳେବେଳେ ମୁକ୍ତିବୋଧ ବି ଥାଏ। ତା' ଭିତରେ ବନ୍ଧନ ବି ରହୁଥାଏ। ସେ ସମ୍ପର୍କରେ କ'ଣ କହିବେ ?

ଉତ୍ତର: ଏଇ ତ ସଂସାର। ଆଉ ତା'ର ପ୍ରତିଫଳନ ହିଁ ସାହିତ୍ୟ!!!

ପ୍ରଶ୍ନ: ଆପଣଙ୍କ କର୍ମମୟ ଜୀବନ ଆପଣଙ୍କ ସାହିତ୍ୟିକ ଭିତ୍ତିଭୂମିକୁ ପ୍ରଭାବିତ କରେ କି ? ଆପଣଙ୍କ ଘଟଣା, ସ୍ଥାନ, ସମୟ ଓ ଚରିତ୍ରମାନଙ୍କୁ କିପରି ପ୍ରଭାବିତ କରେ ?

ଉତ୍ତର: ମୋ ଚାକିରିରେ ଅଧିକାଂଶ ସମୟ ଗସ୍ତ କରିବାକୁ ପଡିଥାଏ। ତା' ପୁଣି ଭାରତବର୍ଷର ବିଭିନ୍ନ ପ୍ରଦେଶ ଓ ସ୍ଥାନ। ତେଣୁ ସେ ସବୁରି ପରିବେଶ ଆପଣା ଆପେ ମୋ ଗଳ୍ପରେ ସ୍ଥାନ ପାଇଥାନ୍ତି।

ପ୍ରଶ୍ନ: ଶ୍ରୀ ଜଗନ୍ନାଥଙ୍କ ଉପରେ ଅନୁଭବ ଓ ଅନୁଭୂତିର ସଂକଳନ ପ୍ରକାଶ କରିବା ପାଇଁ କାହିଁକି ଇଚ୍ଛାହେଲା ଓ ଏ ପରିବର୍ତ୍ତନରେ ଆପଣ କ'ଣ ପାଉଛନ୍ତି ?

ଉତ୍ତର: ମୋ' ଜୀବନରେ ଶ୍ରୀ ଜଗନ୍ନାଥଙ୍କୁ ନେଇ ଏକ ଅନୁଭୂତି ମୋ ଭିତରେ ଏକ ନୂତନ ଦିଗର ସନ୍ଧାନ ଦେଲା। ମୋ ଭଳି ବହୁ ବ୍ୟକ୍ତିଙ୍କର ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଅନୁଭୂତି ଓ ଅନୁଭବର ସଂକଳନ ପ୍ରକାଶ କଲେ କେମିତି ହୁଅନ୍ତା ? ତା'ପରେ ଆରମ୍ଭ ହେଲା ପ୍ରତିବର୍ଷ ରଥଯାତ୍ରା ଦିନ ରଥାରୂଢ଼ ଶ୍ରୀଜଗନ୍ନାଥଙ୍କୁ ନେଇ ଅନୁଭୂତି ଓ ଅନୁଭବର ସଂକଳିତ ପୁସ୍ତକର ଅର୍ପଣ।

ପ୍ରଶ୍ନ: ଆପଣ ସିରିୟସ, ବ୍ୟଙ୍ଗ ଓ ଧର୍ମ ଏହି ତିନି ପ୍ରକାର ରଚନାରେ ମନୋନିବେଶ କରିଛନ୍ତି। ତେବେ କେଉଁ ପ୍ରକାର ସୃଷ୍ଟିରେ ଆପଣ ଅଧିକ ସଫଳ ହୋଇପାରନ୍ତି ବୋଲି ଭାବୁଛନ୍ତି ?

ଉତ୍ତର: ତିନୋଟି ଲେଖାରେ ଲେଖିବାର ଶୈଳୀ ଅଲଗା। ସିରିୟସ୍ ଗଳ୍ପ ଲେଖିଲା ବେଳେ ନିଜ ସାହିତ୍ୟ ଆତ୍ମାଟି ଚରିତ୍ର ଭିତରେ ସଂଚରିଯାଏ। ଏକ ପ୍ରକାର କାଳିଶି ଲାଗେ ମାତ୍ର ବ୍ୟଙ୍ଗ ଲେଖାରେ ଶ୍ଳେଷ, ବିଦ୍ରୂପ କଟାକ୍ଷ ବେଶି ବାହାରୁ ହିଁ ଅସ୍ତ୍ର ଭଳି ନିକ୍ଷେପ କରାଯାଏ। ବ୍ୟଙ୍ଗ ରଚନାଟିଏ ବ୍ୟଙ୍ଗ ଉପାଦାନ ପାଇଲେ ଖୁବ୍ ଶୀଘ୍ର ଲେଖି ହୋଇଯାଏ ମାତ୍ର ଗୋଟିଏ ଗୋଟିଏ ସିରିୟସ ଗଳ୍ପ ପାଇଁ ବର୍ଷ ବର୍ଷ ଧରି ଅପେକ୍ଷା କରିବାକୁ ପଡେ। ଧର୍ମଭାବାପନ୍ନ ଲେଖା ସଂକଳନରେ ମୁଁ ଲକ୍ଷ୍ୟ କରିଛି, ଲେଖକମାନଙ୍କର ସିରିୟସ ଗଳ୍ପ ଭଳି ସମର୍ପଣ ଭାବ, ଚରିତ୍ରଟି ଭଗବାନଙ୍କ ସହ ଏକାତ୍ମ ହୋଇଯିବାର ଭାବ। ତେବେ ସିରିୟସ ଗଳ୍ପ ଲେଖିସାରିଲାପରେ ସେ ତୃପ୍ତି ଅନନ୍ୟ।





# ଗଳ୍ପରେ ଖୁବ୍ ବେଶି ପରୀକ୍ଷା ନିରିକ୍ଷା ପାଠକକୁ ଦୂରେଇ ଦିଏ

## ନାରାୟଣ ପ୍ରସାଦ ପଟ୍ଟନାୟକ:

**ଶି**କ୍ଷକତା ସହ ସାହିତ୍ୟ ସାଧନା ସମାନ୍ତରାଳ ଭାବେ ଚଳାଇ ରଖିଥିଲେ ନାରାୟଣ ପ୍ରସାଦ ପଟ୍ଟନାୟକ। ଭବାନିପାଟଣାରେ ଜନ୍ମ (୧୯୩୮) ଏହି କଥାକାର କଲେଜ ଜୀବନରେ ଲେଖୁଥିଲେ କବିତା। ପରବର୍ତ୍ତୀ ସମୟରେ ସେ ଗଳ୍ପ ଲେଖିଲେ। ୨୦୦୧ ରେ ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ ଶ୍ରୀ ପଟ୍ଟନାୟକ। ବିବର୍ଣ୍ଣା ପୃଥିବୀ, ସାରା ରାତି, ହେ ନାଗରିକଗଣ ତାଙ୍କର ପ୍ରକାଶିତ ଗଳ୍ପଗ୍ରନ୍ଥ।

ପ୍ରଶ୍ନ. ଆପଣଙ୍କ ସାହିତ୍ୟ ଜୀବନର ଆରମ୍ଭମାରମ୍ଭ କିପରି ?

ଉତ୍ତର: ସାଧାରଣତଃ ସମସ୍ତଙ୍କର ଯେପରି ହୁଏ। ସ୍କୁଲ ପତ୍ରିକାରେ ଲେଖୁ ଲେଖୁ ଲେଖା ପ୍ରତି ଆଗ୍ରହ ଜନ୍ମିଲା। ତା'ପରେ କଲେଜରେ ଅଧିକ ମାତ୍ରାରେ ଲେଖିଲି କବିତା। ମିନାବଜାର ତଥା ଅନ୍ୟାନ୍ୟ ପତ୍ରିକା ପାଇଁ ଲେଖିଲି। 'ମୌସୁମୀ' ଗଳ୍ପ ପତ୍ରିକାରେ ପ୍ରଥମେ 'କବି' ଶୀର୍ଷକ ଏକ ଗଳ୍ପ ପ୍ରକାଶ ପାଇଲା। 'କବି' ଗଳ୍ପ ଲେଖିଲା ପରେ ବି ବିଶେଷ ଗଳ୍ପ ଲେଖାରେ ଆଗ୍ରହ ନଥିଲା। କିନ୍ତୁ ନାଟ୍ୟରଶ୍ମୀ ପ୍ରଫୁଲ୍ଲ ରଥ ମୋର ଶୁଣାଇଥିବା ୫ଟି ଗଳ୍ପ ଉପରେ ନାଟକ ପ୍ରସ୍ତୁତ କଲେ ଏବଂ ତାହା ଜନାଦୃତ ହେଲା। ଏହି ଧାରା ମୋତେ ଗଳ୍ପ ଲେଖିବାକୁ ପ୍ରେରଣା ଦେଲା। ଆଉ ଆଜି ମୋ ଗଳ୍ପଗୁଡ଼ିକ ବିବର୍ଣ୍ଣା ପୃଥିବୀ, ସାରା ରାତି, ହେ ନାଗରିକଗଣ ପୁସ୍ତକ ଆକାରରେ ପାଠକଙ୍କଠାରେ ଆଦୃତ।

ପ୍ରଶ୍ନ. କବିତା ଲେଖାରେ ମନ ଦେଲେନି କାହିଁକି ?

ଉତ୍ତର: ମୁଖ୍ୟତଃ ସ୍ୱୀକୃତିଜନିତ କାରଣ ଯୋଗୁ। ପତ୍ରିକାର ସମ୍ପାଦକମାନେ ମୋର କବିତା ଅପେକ୍ଷା ଗଳ୍ପକୁ ଅଧିକ ପସନ୍ଦ କଲେ ଏବଂ ଛାପିଲେ ତଥା ପାଠକ ମଧ୍ୟ ମୋର ଗଳ୍ପ ପ୍ରତି ପ୍ରଭାବିତ ହେବା ଜାଣି ମୁଁ ଅଧିକ ଗଳ୍ପ ଲେଖାରେ ମନୋନିବେଶ କଲି। ମୁଁ ଆକାଶବାଣୀର ଜଣେ ସ୍ୱୀକୃତିପ୍ରାପ୍ତ ଗୀତିକାର ଏବଂ 'ସମର୍ପଣ' ତଥା 'ପଳାତକ' ଚଳଚ୍ଚିତ୍ର ପାଇଁ ମଧ୍ୟ ଗୀତ ଲେଖିଛି, ଯାହାକି ଆଜି ବି ଲୋକମୁଖରେ ଆଦୃତ। ଶୁଣି ଖୁବ୍ ଖୁସି ଲାଗୁଛି।

ପ୍ରଶ୍ନ. ନାଟକ ଲେଖିବାକୁ କେବେ ଚେଷ୍ଟା କରିଛନ୍ତି ?

ଉତ୍ତର: ନାଟକ ପ୍ରତି ବିଶେଷ ଧ୍ୟାନ ଦେଇନି, କିନ୍ତୁ କେତୋଟି ଏକାଙ୍କିକା ଲେଖିଛି। ତାହା ପତ୍ରିକାରେ ପ୍ରକାଶ ପାଇଛି। କିନ୍ତୁ ପୁସ୍ତକ ଆକାରରେ ସଙ୍କଳିତ ହୋଇଛି।

ପ୍ରଶ୍ନ. ଆପଣଙ୍କ ଗଳ୍ପ ସଫଳ ନାଟକର ରୂପ ନେଇଛି। ଆପଣ ନିଜେ ନାଟକ ଲେଖିବାକୁ ଚେଷ୍ଟା କଲେନି କାହିଁକି ?

ଉତ୍ତର: ମୁଁ ଚେଷ୍ଟାକରିଥିଲି। ତେବେ ମୋ ସଂଳାପଗୁଡ଼ିକ ଗାମ୍ଭୀର୍ଯ୍ୟପୂର୍ଣ୍ଣ ହୋଇଗଲା। ଏମିତି ତ ସବୁକ୍ଷେତ୍ରରେ ଜଣେ ସଫଳ ହେବା କଷ୍ଟ। ଏଣୁ ମୁଁ ଦେଖିଲି ସାହିତ୍ୟର ସମସ୍ତ ଦିଗ ମଧ୍ୟରୁ ଗଳ୍ପ ଲେଖା ମୋତେ ଭଲ ଲାଗିଲା ଏବଂ ପାଠକଙ୍କୁ ଭଲ ଲାଗିବା ଜାଣି କେବଳ ଗଳ୍ପରେ ମନ ଦେଲି। ଅନେକ କବିତା ମୋର ଆକାଶବାଣୀରେ ପ୍ରଚାରିତ ଏବଂ ପତ୍ରପତ୍ରିକାରେ ବି ପ୍ରକାଶିତ।

ପ୍ରଶ୍ନ. ଗାଳ୍ପିକା ଭାବରେ କାହାକୁ ବେଶି ଭଲ ପାଆନ୍ତି ?

ଉତ୍ତର: ଫକୀରମୋହନ, ସୁରେନ୍ଦ୍ର ମାହାନ୍ତି, କିଶୋରୀ ଚରଣ ଦାସଙ୍କ ଗଳ୍ପ ମୋତେ ଭଲ ଲାଗେ ଏବଂ ବର୍ତ୍ତମାନ କୌଣସି ନିର୍ଦ୍ଦିଷ୍ଟ ଗାଳ୍ପିକଙ୍କୁ ଉଲ୍ଲେଖ କରି ପାରୁନାହିଁ। କିନ୍ତୁ ବର୍ତ୍ତମାନ ନୂଆ ଗଳ୍ପ ପତ୍ରପତ୍ରିକାରୁ ପଢ଼ୁଛି ଯାହାକି ଖୁବ୍ ଭଲ ଲାଗୁଛି।

ପ୍ରଶ୍ନ. ଓଡ଼ିଆ ଗଳ୍ପର ଭବିଷ୍ୟତ କ'ଣ ଭାବୁଛନ୍ତି ?

ଉତ୍ତର: ଗଳ୍ପ ବହୁ ପ୍ରାଚୀନ କାଳରୁ କଥାରେ ଏବଂ ଲେଖାରେ ଗଢ଼ି ଗଢ଼ି ଆସୁଛି। କୌଣସି ନା କୌଣସି ମାଧ୍ୟମରେ ତାହା ପାଠକଙ୍କ ପାଖକୁ ନିଶ୍ଚିନ୍ତ ଆସିବ। ଏଣୁ ଗଳ୍ପ ନିଶ୍ଚିତ ଭାବେ ସମୃଦ୍ଧିଶାଳୀ ହେବ। ଓଡ଼ିଆ ଗଳ୍ପର ଭବିଷ୍ୟତ ନିଶ୍ଚିତ ଭାବେ ଶୁଭଙ୍କର। ବର୍ତ୍ତମାନ କିଛି ଭଲ ଗପ ପଢ଼ିବା ପରେ ଏଭଳି ଆଶା ପୋଷଣ କରାଯାଇ ପାରୁଛି।

ପ୍ରଶ୍ନ. କିପରି ଗଳ୍ପ ଲେଖା ହେଲେ ପାଠକଙ୍କୁ ଛୁଇଁବ ?

ଉତ୍ତର: ଗଳ୍ପ ସବୁ ତ ଅଭିଜ୍ଞତା ପ୍ରସୂତ୍ ତଥା ପାଠକ ପାଇଁ ପ୍ରେରଣାଦାୟକ ହେବା ଆବଶ୍ୟକ। କିନ୍ତୁ ତାହା ଯଦି ଆକର୍ଷଣୀୟ ନ ହୁଏ ତା'ହେଲେ ପାଠକ ବା ପଢ଼ିବେ କାହିଁକି ? ତେଣୁ ମୋ ମତରେ ଗାଳ୍ପିକ ସବୁବେଳେ ନିଜ ଲେଖାକୁ ସରସ ଓ ଆକର୍ଷଣୀୟ କରିବା ପାଇଁ ଚେଷ୍ଟା କରିବା ଉଚିତ୍। ଯଦି ସେଥିରେ ସେ ସଫଳ ନହୁଏ ତା'ହେଲେ ସେହି ଲେଖା ମାଧ୍ୟମରେ କିଛି ବାର୍ତ୍ତା ଦେବାରେ ସଫଳ ହୋଇପାରିବ। ଗଳ୍ପ ହେଉ ବା କବିତା ହେଉ ସାଧାରଣତଃ ପାଠକଙ୍କର ଧୈର୍ଯ୍ୟ ନ ଥାଏ ତାକୁ ବାରମ୍ବାର ପଢ଼ିବାକୁ। ତେଣୁ ସେହି ଲେଖା ସବୁ କ୍ଲିଷ୍ଟ ନ ହୋଇ ଯଥାସମ୍ଭବ ସରଳ ହେବା ଆବଶ୍ୟକ। ଟେକ୍‌ନିକ୍ ବା ପରୀକ୍ଷା ନାଁ ରେ ପାଠକର ମାନସିକ ସ୍ତରରୁ ଦୂରେଇ ରହିବା ଠିକ୍ ନୁହେଁ। ଏହା ପାଠକୀୟ ଆଗ୍ରହ ସୃଷ୍ଟି କରିପାରିବ ନାହିଁ ବା ପାଠକ ପାଖକୁ ପହଞ୍ଚି ପାରିବ ନାହିଁ।

ପ୍ରଶ୍ନ. ଆପଣ ମୁଖ୍ୟତଃ ଗଳ୍ପ ଲେଖାର ବିଷୟ କିପରି ଚୟନ କରନ୍ତି ?

ଉତ୍ତର: ମୁଁ ସାଧାରଣତଃ ସାମାଜିକ, ପାରିବାରିକ ଏବଂ ବ୍ୟକ୍ତିଗତ ଜୀବନର ଦ୍ୱନ୍ଦ ଓ ଅନ୍ତର୍ବାଦକୁ ଭିତ୍ତିକରି ଅନେକ ଗଳ୍ପ ଲେଖିଛି ଯାହା ବିଶେଷ ଭାବେ ନିଜ ଜୀବନର କୌଣସି ଅନୁଭୂତିକୁ ନେଇ ଲେଖା ହେଇଛି। ଯେମିତି 'ମିତା ଏକ

ବ୍ୟକ୍ତିଗତ ଶୋକ।' ସେହିଭଳି ସାମ୍ପ୍ରତିକ, ରାଜନୈତିକ ତଥା ଜାତୀୟ ଜୀବନର କେତେକ ସମସ୍ୟାକୁ ପ୍ରତୀକାତ୍ମକ ଭାବରେ ମଧ୍ୟ ଗଳ୍ପର ରୂପ ଦେଇଛି।

ପ୍ରଶ୍ନ. ଆପଣଙ୍କ ରଚିତ 'ପୁନଶ୍ଚ ହସ୍ତୀ' ରାଜନୈତିକ କଥାବସ୍ତୁ ଉପରେ ଅଧାରିତ। ବାସ୍ତବ ରାଜନୀତି ଉପରେ ଏହାର ପ୍ରଭାବ କିପରି ?

ଉତ୍ତର: କୌଣସି ଲେଖକର ଗଳ୍ପଟିଏ ଯେ ରାଜନୀତି ମହଲରେ କୌଣସି ପ୍ରଭାବ ପକାଇବ ସେମିତି ଆଶା କରିବା ବୃଥା। ତେବେ ପାଠକ, ଲେଖକ ଓ ଆଲୋଚକଙ୍କ ମଧ୍ୟରେ ତାହା ଚାଞ୍ଚଲ୍ୟ ସୃଷ୍ଟି କରିଥିଲା।

ପ୍ରଶ୍ନ. ଆଗାମୀ ପିଢ଼ି ପାଇଁ ଆପଣଙ୍କ ବାର୍ତ୍ତା ?

ଉତ୍ତର: ନିଷ୍ଠା ! ନିଜର ପ୍ରକୃତ ଅଭିଜ୍ଞତା ବା ଅନୁଭବକୁ ଲେଖକ ସ୍ଥାନିତ କଲେ ତାହା ପାଠକ ମନକୁ ଛୁଇଁବ ଏବଂ ଲେଖିବା ଆଗରୁ ଅନେକ ପଢ଼ିବାର ଆବଶ୍ୟକତା ରହିଛି। ଏଣୁ ସମସ୍ତଙ୍କୁ ମୁଁ କହିବି ପ୍ରତ୍ୟହ କିଛି କିଛି ପଢ଼ିବାକୁ। ଯୁବ ଲେଖକମାନେ ନିଜ ଲେଖା ପାଠକମାନଙ୍କୁ ପଢ଼ିବାକୁ ଦେବା ପୂର୍ବରୁ ସେମାନେ ତାଙ୍କ ପୂର୍ବବର୍ତ୍ତୀ ଓ ତାଙ୍କ ସମୟର ବିଶିଷ୍ଟ ଲେଖକମାନଙ୍କର ଲେଖାକୁ ନିଜେ ଅଧ୍ୟୟନ କରନ୍ତୁ ଓ ଅନୁଧ୍ୟାନ କରନ୍ତୁ ଏବଂ ନିଜର ଅନୁଭବ, ଅଭିଜ୍ଞତାକୁ ସାମିଲ କରି ନିଷ୍ଠାପର ଭାବେ ଧୈର୍ଯ୍ୟର ସହିତ ଲେଖି ଚାଲନ୍ତୁ। ସେଭଳି ଲେଖି ଚାଲିଲେ ଦିନେ ନା ଦିନେ ସାଧନା ସଫଳ ହେବ।





# ହୃଦୟ ପର୍ଯ୍ୟନ୍ତ ପହଞ୍ଚେ ନାହିଁ

## ଡ଼ଃ ହରିରାମ ଆଚାର୍ଯ୍ୟ

ରାଜସ୍ଥାନୀ କବି ଓ ନାଟ୍ୟକାର ଡ଼ଃ ହରିରାମ ଆଚାର୍ଯ୍ୟ। କେବଳ ରାଜସ୍ଥାନୀ ଭାଷାରେ ନୁହେଁ, ସେ ହିନ୍ଦୀରେ ଲେଖିଛନ୍ତି ଅନେକ କାବ୍ୟ କବିତା। ଜାତୀୟ ସ୍ତରରେ ସ୍ୱୀକୃତି ମଧ୍ୟ ପାଇଛନ୍ତି। ଛନ୍ଦୋବଦ୍ଧ କବିତା ଲେଖିଛନ୍ତି ସେ। ତାଙ୍କର ଅନେକ କବିତା ହିନ୍ଦୀ ଚଳଚ୍ଚିତ୍ରରେ ସଙ୍ଗୀତ ରୂପ ନେଇଛି। ତାଙ୍କ ସାହିତ୍ୟ ସାଧନା, ସାହିତ୍ୟ ସମ୍ପର୍କରେ ତାଙ୍କ ଜୟପୁରସ୍ଥିତ (ରାଜସ୍ଥାନ) ବାସଭବନରେ ହୋଇଥିବା ଆଳାପର କିୟଦଂଶ।

ପ୍ରଶ୍ନ: ସାହିତ୍ୟରେ ଆପଣଙ୍କ ପ୍ରବେଶ କିପରି ?

ଉତ୍ତର: ମୋ ପିତା ସ୍ୱର୍ଗତ ଗଣେଶ ଦତ୍ତ କାଶୀର ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ସ୍ଥାପନର ପ୍ରାରମ୍ଭିକ ବର୍ଷରେ ପଣ୍ଡିତ ମଦନମୋହନ ମାଲବ୍ୟଙ୍କ ପଟ୍ଟଶିଷ୍ୟ ଥିଲେ। ସେ ଥିଲେ ବ୍ରଜଭାଷାର ସହୃଦୟ କବି, ରଙ୍ଗମଞ୍ଚର କୁଶଳୀ କଳାକାର ଏବଂ ସଙ୍ଗୀତ ବିଶାରଦ ସିତାରବାଦକ ମଧ୍ୟ। ଯେତେବେଳେ ମୋର ଜନ୍ମ ହେଲା, ସେତେବେଳେ ସେ ବିକାନେରରେ ମାଜିଷ୍ଟ୍ରେଟ ଥିଲେ। ପରେ ଜୈସାଲମେର ରାଜାଙ୍କ ଡାକରାରେ ସେଠାକାର ଜର୍ଜ ଭାବେ ନିଯୁକ୍ତ ହେଲେ, ଯେଉଁଠି ମୋର ବାଲ୍ୟକାଳ ଏବଂ ଶିକ୍ଷାର ଆରମ୍ଭ ହେଲା। ଏହିଠାରେ ସେ ମୋତେ ଅନେକ ସମୟରେ କବିତା ଶୁଣାଉଥିଲେ। ସେ କୃଷ୍ଣ ଭକ୍ତ ଥିଲେ। ପ୍ରଭୁସେବା ସମୟରେ ସେ ନାଥଦ୍ୱାର କୀର୍ତ୍ତନ ଶୈଳୀରେ ଅଷ୍ଟଛାପ ପଦ ଗାଉଥିଲେ। ତା' ପରେ ମୋତେ ଗାଇବାକୁ ସେ ପ୍ରେରିତ କଲେ। ଧୀରେ ଧୀରେ ମୁଁ ଛୋଟ ଛୋଟ ପଦ ଲେଖିଲି। ୧୨ବର୍ଷ ବୟସରେ ମୁଁ ମୋର ନବଜାତ ଭଉଣୀ ଶ୍ୟାମାର ବାଲ୍ୟ ଚପଳତା ଉପରେ କବିତା ଲେଖିଲି। ବାପାଙ୍କ ଆଶୀର୍ବାଦ ଏବଂ ପ୍ରେରଣାରେ ଏହି କବିତା ୧୯୪୮-୪୯ରେ ଆଲ୍ଲାହାବାଦରୁ ପ୍ରକାଶିତ 'ଶିଶୁ' ମାସିକ ପତ୍ରିକାରେ ପ୍ରକାଶିତ ହେଲା। ଏହିପରି କବିତା ଲେଖନରେ ମୋର ପ୍ରବେଶ ଘଟିଲା।

ପ୍ରଶ୍ନ: ସାହିତ୍ୟର ଅନେକ ବିଭାଗ ଥିବା ସତ୍ତ୍ୱେ କବିତା, ନାଟକକୁ କାହିଁକି ଚୟନ କଲେ ?

ଉତ୍ତର: ଯେତେବେଳେ ମୁଁ ଅଷ୍ଟମଶ୍ରେଣୀର ଛାତ୍ରଥିଲି ସେତେବେଳେ ଜୈସାଲମେରର ହାଇସ୍କୁଲରେ ସେଠ ଗୋବିନ୍ଦ ଦାସଙ୍କ ନାଟକ 'ସେବାପଥ' ପରିବେଷଣ ହେଲା। ସେଥିରେ ଜଣେ ବିଦେଶୀ ମହିଳାଙ୍କ ଚରିତ୍ର ଥିଲା। ମୋର ସ୍ୱର ମଧୁର ଥିବାରୁ ସେହି ଭୂମିକାରେ ମୋତେ ଚୟନ କରାଗଲା। ତା' ପରବର୍ତ୍ତୀ ବର୍ଷ ୧୯୫୧ରେ ଡଃ ଏଲ.ରାୟଙ୍କ ନାଟକ 'ଚନ୍ଦ୍ରଗୁପ୍ତ'ର ସେଲ୍ୟୁକସଙ୍କ ଝିଅ ଭୂମିକାରେ ଅଭିନୟ କଲି। କଲେଜର ପ୍ରଥମ ବର୍ଷରେ ଜୟଶଙ୍କର ପ୍ରସାଦଙ୍କ 'ଧ୍ରୁବ ସ୍ୱାମିନୀ'ରେ ମୁଖ୍ୟ ଭୂମିକାରେ ଅଭିନୟ କଲି। ପରେ ଜୟପୁର ଆସିବା ପରେ ରଙ୍ଗମଞ୍ଚ ଏବଂ ଆକାଶବାଣୀ କେନ୍ଦ୍ରରେ ମଧ୍ୟ ଅଭିନୟ ଏବଂ ନିର୍ଦ୍ଦେଶନା ସହିତ ସଂସ୍କୃତ ନାଟକଗୁଡ଼ିକର ରୂପାନ୍ତର କଲି। ଏହି ସବୁରୁ ମୋତେ ନାଟ୍ୟ ଲେଖନର ପ୍ରେରଣା ମିଳିଲା। ୧୯୬୯

ମସିହାରେ 'ୟେ ପଢେ ତୁଫାନ ଏକ' ଶୀର୍ଷକରେ ପ୍ରଥମ ଏକାଙ୍କିକା ଲେଖିଲି ଏବଂ ନିଜେ ତା'ର ନିର୍ଦ୍ଦେଶନା ଦେଇ ଏକ ପ୍ରତିଯୋଗିତାରେ ମଞ୍ଚସ୍ଥ କଲି। ନାଟକକୁ ସର୍ବଶ୍ରେଷ୍ଠ ଘୋଷିତ କରାଗଲା। ଏହା ମୋତେ ନାଟକ ଲେଖନ ପ୍ରତି ଆକୃଷ୍ଟ କରିଥିଲା।

ପ୍ରଶ୍ନ: ଆପଣ ଯାହା ଚିନ୍ତା କରିଥାନ୍ତି ଅବିକଳ ତାହା ପ୍ରତିଫଳନ ହୁଏ କି? ନା କିଛି ଅବଶୋଷ ରହିଯାଏ?

ଉତ୍ତର: ପିଲାଟି ଦିନରୁ ସଙ୍ଗୀତର ସଂସ୍କାର ଏବଂ ଛନ୍ଦୋବଦ୍ଧ କବିତା ତଥା ଗୀତ ଲେଖିବାର ପ୍ରେରଣା ପାଇଛି। ଭାରତର ଆତ୍ମାରେ ଗୀତ ସଙ୍ଗୀତ ରହିଛି। ବେଦମନ୍ତ୍ରକୁ ମଧ୍ୟ ଛନ୍ଦ କହନ୍ତି। ଲୋକ ଜୀବନରେ ଗର୍ଭ ସଂସ୍କାରଠାରୁ ଅନ୍ତ୍ୟେଷ୍ଟି ପର୍ଯ୍ୟନ୍ତ ଜୀବନ ଗୀତରେ ଜଡିତ ଥାଏ। ଏଣୁ ମୁଁ ଗୀତିକାର ରୂପରେ ନିଜକୁ ଅଭିବ୍ୟକ୍ତ କରିଛି। କାବ୍ୟର ରସ ଆସ୍ୱାଦନ ଗୀତ ମାଧ୍ୟମରେ ବିଶେଷ ଭାବେ ହୋଇଥାଏ, ଏହା ମୋର ବିଶ୍ୱାସ। ସହୃଦୟ ଶ୍ରୋତାଙ୍କ ସହାନୁଭୂତି ରହିଥିବା ବିଚାରକୁ ମଧ୍ୟ 'ବିଭବ' କରିବାକୁ ହୁଏ। ଏଣୁ ନିଜର ଚିନ୍ତାଧାରା ଏବଂ ଅନୁଭୂତିକୁ ଗୀତର ଆକାର ଦେବାରେ କଷ୍ଟ ହୁଏନି। ହଁ, କେବେ କେବେ କୌଣସି ବିଚାର କେବଳ ବୁଦ୍ଧିକୁ ହିଁ ଖୋଜିଥାଏ, ହୃଦୟ ପର୍ଯ୍ୟନ୍ତ ପହଞ୍ଚେ ନାହିଁ, ତାକୁ ମୁକ୍ତଛନ୍ଦରେ ଲେଖାଯାଇପାରେ।

ପ୍ରଶ୍ନ: ଆପଣଙ୍କ ଅନେକ କବିତା ଚଳଚ୍ଚିତ୍ରର ସୁମଧୁର ସଙ୍ଗୀତ ହୋଇପାରିଛି। କବିତା, ଚଳଚ୍ଚିତ୍ର ଏବଂ ପ୍ରକାଶନ କେଉଁଥିରେ ଅଧିକ ଆନନ୍ଦ ମିଳେ?

ଉତ୍ତର: ହଁ, ହିନ୍ଦି, ରାଜସ୍ଥାନୀ ଏବଂ ସଂସ୍କୃତର କିଛି ଚଳଚିତ୍ରରେ ମୁଁ ଗୀତ ଏବଂ ସଂଳାପ ଲେଖିଛି, କିନ୍ତୁ ମୁଁ ଚଳଚ୍ଚିତ୍ର ପାଇଁ ଗୀତ ଲେଖିବାକୁ ବ୍ୟବସାୟ ଭାବେ ନେଇନାହିଁ। ୧୯୬୪ ମସିହାରେ 'ଭୁଲ ନ ଜାନା' ଏବଂ ୧୯୮୧ ମସିହାରେ 'ମେହେନ୍ଦି ରଙ୍ଗ ଲାଏଗି'ରେ ମୁଁ ଗୀତ ଲେଖିଛି। ୨୦୦୦ ମସିହାରେ ୭ଟି ଅର୍ନ୍ତରାଷ୍ଟ୍ରିୟ ପୁରସ୍କାରପ୍ରାପ୍ତ ରାଜସ୍ଥାନୀ ଚଳଚ୍ଚିତ୍ର 'ବରଂଡର' ଏବଂ ୨୦୦୫ ମସିହାରେ ପ୍ରସ୍ତୁତ ସଂସ୍କୃତ ଚଳଚ୍ଚିତ୍ର 'ମୁଦ୍ରାରାକ୍ଷସମ୍'ରେ ମୋର ଗୀତ ଏବଂ ସଂଳାପ ପୁରସ୍କୃତ। ଚଳଚ୍ଚିତ୍ର ହେଉ କି ପତ୍ରିକାରେ ପ୍ରକାଶନ, ମୋର ରଚନା ସମ୍ମାନିତ ହେଲେ ମୋତେ ଆନନ୍ଦ ମିଳେ। ସଂସ୍କୃତ, ହିନ୍ଦୀ, ରାଜସ୍ଥାନୀ, ଉର୍ଦ୍ଦୁ, ଏପରି କି ପ୍ରାକୃତ ଭାଷାରେ ମଧ୍ୟ ମୁଁ ଗୀତ ଏବଂ କବିତା ଲେଖିଛି। କବି ସମ୍ମିଳନୀମାନଙ୍କରେ ମୁଁ ଶ୍ରୋତାଙ୍କଠାରୁ, ପ୍ରକାଶିତ ହେବା

ପରେ ପାଠକଙ୍କଠାରୁ ଏବଂ ଚଳଚ୍ଚିତ୍ର ମାଧ୍ୟମରେ ଦର୍ଶକଙ୍କଠାରୁ ଯେଉଁ ପ୍ରଶଂସା ଓ ସମ୍ମାନ ମିଳେ ସେସବୁ ମୋ ପାଇଁ ଆନନ୍ଦଦାୟକ ଉପଲବ୍ଧି।

ପ୍ରଶ୍ନ: ଅନୁବାଦ ସମ୍ପର୍କରେ ଆପଣଙ୍କ ମତ କ'ଣ ?

ଉ. ଅନୁବାଦ ଦୁଇଟି ଭାଷାର ସେତୁ। କୌଣସି ଭାଷାର ସାହିତ୍ୟକୁ ଅନ୍ୟ ଭାଷାଭାଷୀଙ୍କ ପାଖରେ ପହଞ୍ଚାଇବା ଏବଂ ଅନ୍ୟ ଭାଷାର ସାହିତ୍ୟକୁ ଜାଣିବା ପାଇଁ ଅନୁବାଦ ନିତାନ୍ତ ଜରୁରୀ। କିନ୍ତୁ ଉଚିତ ପ୍ରଶିକ୍ଷଣ, ଅଭ୍ୟାସ ଏବଂ ଭାଷାଧିକାରର ଅଭାବରେ ଏହା ଅନର୍ଥକାରୀ ମଧ୍ୟ ହେଉଛି। ତେବେ ବି ଏହାର ଅତ୍ୟନ୍ତ ଆବଶ୍ୟକତା ରହିଛି।

ପ୍ରଶ୍ନ: ଆଜିକାଲି ପାଠକ କବିତା କମ୍ ପଢୁଛନ୍ତି, ବିଶେଷତଃ ଯୁବପିଢ଼ିଙ୍କଠାରେ ସାହିତ୍ୟ ପ୍ରତି ଆଗ୍ରହ ଦେଖାଯାଉ ନାହିଁ। ଏହାର କାରଣ କ'ଣ ?

ଉତ୍ତର: ଭାରତର ଯୁବପିଢ଼ିଙ୍କଠାରେ ସାହିତ୍ୟ ରୁଚି କମିବାର ଗୋଟିଏ କାରଣ ସଂଚାର ମାଧ୍ୟମରେ ଅପସଂସ୍କୃତିର ପ୍ରସାର, ଭୌତିକତାର ଚମକ, ରୋଜଗାରର ଦୌଡ଼। ଏପରି କି ବିଜ୍ଞାପନ ବଜାରରେ ଯୁବପିଢ଼ିଙ୍କ ହୃଦୟରୁ କୋମଳତା ନଷ୍ଟ ହୋଇଯାଉଛି।

ପ୍ରଶ୍ନ: ଆପଣ ଯେତେବେଳେ ଲେଖିବା ଆରମ୍ଭ କରନ୍ତି, କେଉଁ ଆଧାରରେ ଲେଖନ୍ତି ଏବଂ କାହିଁକି ଲେଖନ୍ତି ?

ଉତ୍ତର: ଲେଖିବା ମୋ ପାଇଁ କୌଣସି ବିଚାରର ଗର୍ଭଧାରଣ ପରି। ଯେତେବେଳେ ତାହା ପରିପକ୍ୱ ହୁଏ ଏବଂ ଅଭିବ୍ୟକ୍ତ ହେବାକୁ ଚାହେଁ, ସେତେବେଳେ ତାକୁ ଗୀତ ମାଧ୍ୟମରେ ବ୍ୟକ୍ତ କରିବା ମୋର ବିବଶତା ବନିଯାଏ। ଏହା ମୋର ଲେଖିବାର କାରଣ ଏବଂ ପ୍ରୟୋଜନ ମଧ୍ୟ। କେବଳ ଭାବବିନ୍ଦୁ, କେବେ ସାମାଜିକ ପ୍ରଶ୍ନ କେବେ ସାମାଜିକ ସ୍ଥିତିର ଚାପ ମୋର ଲେଖନର ପ୍ରେରକ ତତ୍ତ୍ୱ ଅଟେ ଏବଂ ମୁଁ ତାକୁ ଶବ୍ଦର ରୂପ ଦିଏ।

ପ୍ରଶ୍ନ: ଗୋଟିଏ ଭଲ ସୃଷ୍ଟି ପାଇଁ କି କି ପ୍ରମୁଖ କାରକର ଆବଶ୍ୟକତା ରହିଛି ?

ଉତ୍ତର: ଭଲ ରଚନା ପଛରେ ଥିବା ପ୍ରମୁଖ କାରକ ମଧ୍ୟରେ ଆତ୍ମାଭିବ୍ୟକ୍ତି ଏବଂ ସାମାଜିକ ଦାୟିତ୍ୱ ରହିଛି। ଯଦି ସୃଷ୍ଟିକୁ ଭଲ ଅଭିବ୍ୟକ୍ତ ସହିତ ସମାଜ ପର୍ଯ୍ୟନ୍ତ ସମ୍ପ୍ରସାରଣ କରିବା ତେବେ ସେହି ରଚନା ବା ସୃଷ୍ଟି ସହିତ ସାର୍ଥକ ମଧ୍ୟ।

ପ୍ରଶ୍ନ: ଗୋଟିଏ ଲେଖାର ଉଦ୍ଦେଶ୍ୟ କ'ଣ ହେବା ଦରକାର ?

ଉତ୍ତର: ଗୋଟିଏ ଲେଖା ସାହିତ୍ୟର ସୃଜନ ଅଟେ, ଯାହା କି ବର୍ତ୍ତମାନ ପରିଦୃଶ୍ୟକୁ ନିଜ ଅନୁଭୂତିରେ ସାଉଁଟି ଭବିଷ୍ୟତକୁ ସଂକ୍ରମଣ କରିପାରୁଥିବ। ସତ୍ୟକୁ ସୁନ୍ଦର ଢ଼ଙ୍ଗରେ ଉଦ୍ଧାର କରି ସମାଜ ଏବଂ ମନୁଷ୍ୟ ମାତ୍ରକୁ 'ଶିବମ୍'ର ବାହକ ହେଉଥିବ।





# ଲୋକଙ୍କ ନିକଟରେ ପଢ଼ିବା ପାଇଁ ସମୟ ନାହିଁ

## ଜୟ ଶଙ୍କର ମିଶ୍ର

**ଜ**ୟଶଙ୍କର ମିଶ୍ର, ହିନ୍ଦୀ କଥାସାହିତ୍ୟର ଅନ୍ୟତମ ପରିଚିତ ସାଧକ। କେବଳ କାହାଣୀ ନୁହେଁ ବିଭିନ୍ନ ପ୍ରସଙ୍ଗରେ ଲେଖିବାର ଆଗ୍ରହ ରଖନ୍ତି ସେ। ଶତାଧିକ କାହାଣୀ ତାଙ୍କର ବିଭିନ୍ନ ପତ୍ରପତ୍ରିକା, ଅକାଶବାଣୀ ଓ ଟେଲିଭିଜନ ଜରିଆରେ ପ୍ରକାଶିତ ଓ ପ୍ରଚାରିତ। ଏସବୁକୁ ନେଇ ପୁସ୍ତକ ପ୍ରକାଶନକୁ ପସନ୍ଦ କରିନାହାନ୍ତି ସେ। ସୁତରାଂ ତାଙ୍କର କୌଣସି ପୁସ୍ତକ ଅଦ୍ୟାବଧି ପ୍ରକାଶ ପାଇନାହିଁ। ମାସିକ ହିନ୍ଦୀ ପତ୍ରିକା ସରିତାରୁ ସାମ୍ବାଦିକତା ଜୀବନ ଆରମ୍ଭ କରିଥିବା ଜୟଶଙ୍କର ହିନ୍ଦୀ ଦୈନିକ 'ଆଜ'ରେ ମଧ୍ୟ ସହସମ୍ପାଦକ ଭାବେ କାର୍ଯ୍ୟ କରିଛନ୍ତି କିଛି ବର୍ଷ। ତା'ପରେ ସେ ପତଞ୍ଜଳି ଯୋଗପୀଠ ଦ୍ୱାରା ପ୍ରାକାଶିତ 'ଯୋଗ ସନ୍ଦେଶ'ର ସମ୍ପାଦନା ଦାୟିତ୍ୱ ବହନ କରି ବର୍ତ୍ତମାନ ଦିଲ୍ଲୀ ସ୍ଥିତ ସୁଧାଂଶୁଜୀ ମହାରାଜଙ୍କ ସଂଗଠନ ସହ ଜଡିତ ଏବଂ ସେଠାକାର ପ୍ରକାଶନ ତଥା ସଂପାଦନା ଦାୟିତ୍ୱରେ ଅଛନ୍ତି। ତାଙ୍କ ସହ ହରିଦ୍ୱାରସ୍ଥିତ ପତଞ୍ଜଳୀପୀଠଠାରେ ହୋଇଥିବା ଆଳାପର କିୟଦଂଶ।

ପ୍ରଶ୍ନ: ଆପଣ କେବେଠାରୁ ଲେଖୁଛନ୍ତି ?

ଉତ୍ତର: ୧୯୭୫ରୁ ମୁଁ ଲେଖି ଆସୁଛି। କିନ୍ତୁ ସକ୍ରିୟ ଲେଖନ ମୁଁ ଆରମ୍ଭ କଲି ୧୯୮୦ ମସିହାରୁ। ପ୍ରଥମେ ମୁଁ ପ୍ରବନ୍ଧ, କାହାଣୀ, କବିତା ଲେଖିଆସୁଛି। ଆଜିଯାଏ ମଧ୍ୟ ସାହିତ୍ୟର ଏହି ତିନୋଟି ବିଭାଗରେ ଲେଖନୀ ଚାଳନା କରୁଛି।

ପ୍ରଶ୍ନ: ପ୍ରବନ୍ଧ, କାହାଣୀ, କବିତା ମଧ୍ୟରୁ କେଉଁଟିରେ ଅଧିକ ଆନନ୍ଦ ପାଆନ୍ତି ?

ଉତ୍ତର: କାହାଣୀରୁ ହିଁ ସବୁଠାରୁ ଅଧିକ ଆନନ୍ଦ ପାଏ। କାରଣ କାହଣୀ ମାଧ୍ୟମରେ ଜୀବନର ଗୋଟିଏ ସତ୍ୟତା ଅନୁସନ୍ଧାନ କରିହୁଏ। ଏଥିରେ ମନୋରଞ୍ଜନ ସହ ଗୋଟିଏ ଅନୁଭବ ଥାଏ। କାହାଣୀ ଚରିତ୍ର ସମାଜ ମଧ୍ୟରୁ ହୋଇଥାନ୍ତି। ଯେଉଁ ସମାଜରେ ମୁଁ ରହୁଛି ସେଠାର ଚରିତ୍ରମାନେ ଲେଖନୀ ମାଧ୍ୟମରେ ସର୍ବଦା ମୋ ସହ ରହିଥାନ୍ତି।

ପ୍ରଶ୍ନ: ରେଡିଓରେ ଆପଣଙ୍କର ବହୁତ କାହାଣୀ ଶୁଣିବାକୁ ମିଳେ। ଆଜକୁ କେତେ କାହାଣୀ ରେଡିଓରେ ଦେଇସାରିଛନ୍ତି ?

ଉତ୍ତର: ହିସାବ ତ ରଖିନି, ତେବେ ବି ପ୍ରାୟ ତିନିଶହ କାହାଣୀ ଆଜିକୁ ମୋର ରେଡିଓରେ ପ୍ରସାରିତ।

ପ୍ରଶ୍ନ: ଦୂରଦର୍ଶନ ସାହିତ୍ୟ ପତ୍ରିକା ସହ ମଧ୍ୟ ଆପଣ ଜଡ଼ିତ। ବିଭିନ୍ନ ସାହିତ୍ୟିକ ଆଲୋଚନାକୁ ନେଇ ଆପଣ ଅନେକ ସମୟରେ ଛୋଟପର୍ଦ୍ଦାକୁ ଆସିଛନ୍ତି। ସାହିତ୍ୟ ଯେତେବେଳେ ଇଲେକ୍ଟ୍ରୋନିକ ମିଡିଆକୁ ଆସେ ତାହା ଠିକ୍ ଭାବରେ ପ୍ରତିଫଳିତ ହୋଇପାରେ ବୋଲି ଭାବୁଛନ୍ତି କି ?

ଉତ୍ତର: ସାହିତ୍ୟକୁ ପଢ଼ିବା ଏବଂ ଦେଖିବା ମଧ୍ୟରେ ତଫାତ ରହିଛି। ଜଣେ ସାହିତ୍ୟକୁ ପଢ଼ିବାବେଳେ ତାଙ୍କ ମନରେ ଅନେକ ପ୍ରକାର ବିଚାର ଆସେ। ସାହତ୍ୟକୁ ପର୍ଦ୍ଦାରେ ଦେଖିବା ବେଳେ କିମ୍ବା ଶୁଣିବାବେଳେ ଗୋଟିଏ ଛାପ ହିଁ ଦର୍ଶକ ଉପରେ ପଡିଥାଏ।

ପ୍ରଶ୍ନ: ଆପଣ ଅନେକ ହିନ୍ଦୀ ପତ୍ରିକା ସହ ଜଡିତ। କାହାଣୀ ଏବଂ ପ୍ରବନ୍ଧ ପତ୍ରିକାରେ ପ୍ରକାଶନ ପରେ ଆପଣ ପାଠକର କିପରି ପ୍ରତିକ୍ରିୟା ପାଆନ୍ତି ?

ଉତ୍ତର: ଆଜକୁ ଅନେକ କାହାଣୀ ଏବଂ ପ୍ରବନ୍ଧ ମୋର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଛି। ନିଶ୍ଚୟ ଅନେକ ପ୍ରକାଶକ ପୁସ୍ତକ ପାଇଁ ମଧ୍ୟ ବାରମ୍ବାର କହିଛନ୍ତି କିନ୍ତୁ ମୁଁ ସଂକଳ୍ପ କରିଛି ପୁସ୍ତକ ଆକାରରେ ମୋ କାହାଣୀକୁ ଲୋକଲୋଚନକୁ

ଆଣିବି ନାହିଁ। ଯଦିଓ ପାଠକ ପ୍ରତିକ୍ରିୟା ଖୁବ୍ ଭଲ ପାଇଛି। ପାଠକଙ୍କ ପାଖରେ ମୁଁ ପହଞ୍ଚି ପାରୁଛି ମୋ ପାଇଁ ସେହି ଯଥେଷ୍ଟ। ପତ୍ରିକାରେ ହେଉ କି ରେଡିଓ, ଟେଲିଭିଜନରେ ଲେଖାଟି ଅନେକଙ୍କ ପାଖରେ ପହଞ୍ଚିବାର ସୁବିଧା ଥାଏ। ପୁସ୍ତକ ମଧ୍ୟରେ ରହିଲେ ତାହା କେତେକଙ୍କ ପାଖରେ ପହଞ୍ଚୁଛି ?

ପ୍ରଶ୍ନ: ଆପଣ ପୁସ୍ତକକୁ ଏତେ ବିରୋଧ କରୁଛନ୍ତି, କିନ୍ତୁ ପୁସ୍ତକ ହିଁ ସାହିତ୍ୟକୁ ବଞ୍ଚାଇ ରଖେ ?

ଉତ୍ତର: ଆଜିପର୍ଯ୍ୟନ୍ତ ମୁଁ ଯେତିକି କାହାଣୀ ଲେଖିସାରିଛି ଏବଂ ପତ୍ରିକା ରେଡିଓରେ ପ୍ରକାଶିତ ପ୍ରଚାରିତ ହୋଇଛି ସେସବୁକୁ ଏକାଠି କଲେ ପ୍ରାୟ ୫୦ଟି ପୁସ୍ତକ ହେବ। କିନ୍ତୁ ମୁଁ କେବେ ଚାହିନାହିଁ। ରାଜନୀତି ଏବଂ ଖେଳ ବିଷୟକୁ ଛାଡି ମୁଁ ସବୁ କ୍ଷେତ୍ରରେ ଲେଖନୀ ଚାଳନା କରିଛି।

ପ୍ରଶ୍ନ: ଏହି ଦୁଇଟି ବିଭାଗକୁ ଛାଡିଛନ୍ତି କାହିଁକି ?

ଉତ୍ତର: ଲେଖକ ଯେଉଁ ବିଷୟ ଉପରେ ଲେଖନୀ ଚାଳନା କରିବ ତାକୁ ସେହି ଅଭିଜ୍ଞତା ସହିତ ତା' ଭିତରେ ନିମଗ୍ନ ରହିବାକୁ ପଡିବ। ତେବେ ଯାଇ ସେହି ଲେଖା ବଳିଷ୍ଠ ଏବଂ ଜୀବନ୍ତ ହେବ।

ପ୍ରଶ୍ନ: ଯୋଗ ସଂଦେଶର ସମ୍ପାଦନା ଆପଣ କେବେଠାରୁ କରୁଛନ୍ତି ?

ଉତ୍ତର: ୨୦୦୫ ମସିହାରୁ ଯୋଗ ସନ୍ଦେଶର ଦାୟିତ୍ୱ ମୋ ଉପରେ ରହିଛି। ଏହାକୁ ଏଗାରଟି ଭାଷାରେ ଅନୁବାଦ କରି ଭାରତର ବିଭିନ୍ନ ସ୍ଥାନକୁ ପଠାଯିବା ସହ ବିଦେଶକୁ ମଧ୍ୟ ପଠାଯାଉଛି। ଆଠଲକ୍ଷ ଯୋଗ ସନ୍ଦେଶ ପ୍ରତି ମାସରେ ନିୟମିତ ପ୍ରକାଶିତ।

ପ୍ରଶ୍ନ: ଖବରକାଗଜକୁ ଆସି ଆପଣ ଯୋଗ, ଆଧ୍ୟାତ୍ମିକତା ଲେଖନରେ ରହିଛନ୍ତି, ଏହି ତଫାତ୍ କିପରି ଲାଗୁଛି ?

ଉତ୍ତର: ମୋତେ ଏଠି ଭଲ ଲାଗୁଛି, ଶାନ୍ତି ମିଳୁଛି। ଖବରକାଗଜରେ କାମ କଲାବେଳେ ଗୋଟିଏ ଜୋସ୍ ଥିଲା। ଆଉ ଏବେ ହୋସ୍‌ର ସହିତ ପତ୍ରିକା ସହ ଜଡିତ ଅଛି। ସେତେବେଳେ କାମର ଚାପ ରହୁଥିଲା ଏଣୁ ସାହିତ୍ୟ ପ୍ରତି ବିଶେଷ ସମୟ ଦେଇପାରୁ ନ ଥିଲି, ଏବେ ଅଧିକ କାହାଣୀ ଲେଖିପାରୁଛି।

ପ୍ରଶ୍ନ: ଆଗକୁ କ'ଣ ଲେଖିବା ଯୋଜନା ରଖିଛନ୍ତି ?

ଉତ୍ତର: ପୁସ୍ତକ ପ୍ରକାଶନ ବିରୋଧରେ ମୁଁ ଅଛି ନିଶ୍ଚୟ କିନ୍ତୁ ଆଉ କିଛିବର୍ଷ ପରେ ଏକ ଗୁରୁତ୍ୱପୁର୍ଣ୍ଣ ବିଷୟ ଉପରେ ଦେଶର ହିତ ପାଇଁ ଏକ ଏପରି ରଚନା

କରିବି, ଯାହା କି କେବଳ ପୁସ୍ତକ ଭାବରେ ହିଁ ଆସିବ ଜନସାଧାରଣଙ୍କ ସାମ୍ନାକୁ। ଯାହା କି ମୋର ଏକମାତ୍ର ପୁସ୍ତକ ଆକାରରେ ରହିବ।

ପ୍ରଶ୍ନ: କ'ଣ ଲେଖିବେ ?

ଉତ୍ତର: ଗୋଟିଏ ଗ୍ରନ୍ଥ। ଏବେ ତାହା ରହସ୍ୟ ହୋଇ ରହିଥିବା ଭଲ।

ପ୍ରଶ୍ନ: ଆପଣଙ୍କ କାହାଣୀରେ ବିଶେଷତଃ ସାମାଜିକ ଉପେକ୍ଷିତ ବିଷୟ ରହିଥାଏ। ତେବେ ଏହି ଉପେକ୍ଷିତ ଚରିତ୍ରମାନଙ୍କୁ କେଉଁଠୁ ପାଆନ୍ତି ?

ଉତ୍ତର: ସମାଜରୁ। ବିଭିନ୍ନ କାମରେ ଥିବାବେଳେ ସେହି ଉପେକ୍ଷିତ ଚରିତ୍ରମାନଙ୍କୁ ଭେଟେ ଏବଂ ସେମାନଙ୍କ ସହ ନିବିଡ ହୋଇ ସେମାନଙ୍କ ପ୍ରକୃତ ସମସ୍ୟାଟିକୁ ବୁଝିବାକୁ ଚେଷ୍ଟାକରେ।

ପ୍ରଶ୍ନ: ସମାଜର କେଉଁ ଉପେକ୍ଷିତ ବିଷୟ ଆପଣଙ୍କୁ ବେଶି ପ୍ରଭାବିତ କରିଛି ?

ଉତ୍ତର: ଅନାଥ ପିଲାଙ୍କ ଶିକ୍ଷା, ଶିଶୁଶ୍ରମିକଙ୍କ ବିଷୟ ମୋତେ ବହୁତ ଭାବରେ ପ୍ରଭାବିତ କରିଛି। ଏହି ବିଷୟମାନଙ୍କୁ ସମାଜରେ ଦେଖି ସେମାନଙ୍କୁ ପଚାରି ସେମାନଙ୍କ ସହ ଅନେକ ସମୟରେ କଥାବାର୍ତ୍ତା କରି ସେମାନଙ୍କୁ ମୋ ଲେଖନୀରେ ସ୍ଥାନିତ କରେ।

ପ୍ରଶ୍ନ: ଅପଣଙ୍କ କବିତା ସମ୍ପର୍କରେ କିଛି କହିବେ ?

ଉତ୍ତର: କବିତା ବେଶି ଲେଖିନାହିଁ ଯାହା ବି ଲେଖିଛି ବେଶିକରି ବ୍ୟକ୍ତିଗତ ରହିଛି। ଏଣୁ କବିତାକୁ ମୁଁ ବେଶି ଗୁରୁତ୍ୱ ଦେଇନାହିଁ।

ପ୍ରଶ୍ନ: ହିନ୍ଦୀ ସାହିତ୍ୟ ସମ୍ପର୍କରେ ଆପଣଙ୍କ ମତ କ'ଣ ?

ଉତ୍ତର: ଦୁଇ ଦଶକ ପୂର୍ବରେ ଯେପରି ହିନ୍ଦୀ ସାହିତ୍ୟର ସ୍ଥିତି ଥିଲା ଏବେ ଆଉ ନାହିଁ। ବିଶେଷତଃ ଏବେ ଲୋକ ଆଉ ସାହିତ୍ୟ ପଢ଼ିବାକୁ ଚାହୁଁନାହାନ୍ତି। ଜୀବନ ବ୍ୟସ୍ତ ହୋଇଯାଇଥିବାରୁ ଲୋକଙ୍କୁ ଆଉ ପଢ଼ିବାକୁ ସମୟ ନାହିଁ।

ପ୍ରଶ୍ନ: କ'ଣ କଲେ ପାଠକଙ୍କୁ ଆକର୍ଷିତ କରିହେବ ?

ଉତ୍ତର: ସାହିତ୍ୟକୁ ସାଧାରଣ ମଣିଷ ସହିତ ଯୋଡିଲେ, ଯେପରି ମୁନ୍‌ସି ପ୍ରେମଚନ୍ଦ୍‌ଙ୍କ ଲେଖାକୁ ପାଠକ ପଢ଼ିବାରେ ଯେତିକି ଆଗ୍ରହ ଦେଖାଉଥିଲା ଆଜିର ସାହିତ୍ୟ ଲିମିଟେଡ୍ ଲୋକଙ୍କ ଭିତରେ ସୀମିତ ରହୁଛି। ଏଣୁ ଏବେ ସାହିତ୍ୟକୁ ଲୋକଙ୍କ ଆବଶ୍ୟକତା ମୁତାବକ ଗଢ଼ିବାକୁ ପଡିବ, ଯଦ୍ୱାରା ପାଠକ, ଦର୍ଶକ, ଶ୍ରୋତା ଆପେ ଆପେ ଆଗ୍ରହୀ ହେବେ।



# ଓଡ଼ିଆ ସାହିତ୍ୟର ଭାବ ମାର୍ମିକ ତାହା ଜୀବନ ଭିତରକୁ ପ୍ରବେଶ କରିଯାଏ

## ମୃଦୁଳା ବିହାରୀ:

ହିନ୍ଦୀ ସାହିତ୍ୟର ଅନ୍ୟତମ କଥାକାର ମୃଦୁଳା ବିହାରୀ। ମାଆଙ୍କ ପ୍ରେରଣା ଓ ଘରେ ସାହିତ୍ୟର ବାତାବରଣ ତାଙ୍କୁ ସାହିତ୍ୟ ସାଧିକା କରିଦେଇଛି। ଏକାଧିକ ଗଳ୍ପ, ନାଟକ ଓ ଉପନ୍ୟାସର ଲେଖିକା ମୃଦୁଳା ତାଙ୍କର ସାହିତ୍ୟ କୃତି ପାଇଁ ରାଜସ୍ଥାନ ସାହିତ୍ୟ ଏକାଡେମୀଠାରୁ ମୀରା ସମ୍ମାନ ଓ ୨୦୦୭ରେ ବିବେକାନନ୍ଦ ସମ୍ମାନରେ ସମ୍ମାନିତା। ତାଙ୍କର ପ୍ରକାଶିତ ପୁସ୍ତକଗୁଡିକ ମଧ୍ୟରେ ରହିଛି ପୂର୍ଣ୍ଣାହୁତି, ଅନ୍ଧେରେ ସେ ଆଗେ, ସୀତା, ସୂର୍ଯ୍ୟାସ୍ତ ସେ ପେହେଲେ, ଅନ୍ତିମ ବିନ୍ଦୁ, ଦୀପ ସେ ଦୀପ ଜଲେ ଓ କୁଛ ଅନ୍‌କହି ଆଦି। ଏତଦ୍‌ବ୍ୟତୀତ ସେ ରେଡିଓ, ଟେଲିଭିଜନ, ଥିଏଟର ପାଇଁ ଲେଖିଛନ୍ତି ଅନେକ ନାଟକ। ତାଙ୍କ ସହ ହୋଇଥିବା ସାକ୍ଷାତକାରର କିୟଦଂଶ।

ପ୍ରଶ୍ନ. ସାହିତ୍ୟରେ ପ୍ରବେଶ କିପରି ?

ଉତ୍ତର: ମୋ ଜନ୍ମଠାରୁ ଦେଖିଆସୁଥିବା ମୋ ଘରେ ସାହିତ୍ୟିକ ବାତାବରଣ। ମୋ ମାଆ ଅନ୍ନପୂର୍ଣ୍ଣା ସିହ୍ନା ସ୍ୱୟଂ ଥିଲେ ଜଣେ ଲେଖିକା ଏବଂ ବିଦୂଷୀ। ମୋ ବାପା ଥିଲେ ବିଚାରପତି। ସେ ସବୁ ଧର୍ମର ଗହନ ଅଧ୍ୟୟନ କରିଥିଲେ। ଘରେ ପୁସ୍ତକାଦିର ଗହଳି ପିଲାଟି ଦିନରୁ ଦେଖିଆସିଛି। ମୁଁ ୧୩ ବର୍ଷ ବୟସରେ ପ୍ରେମଚାନ୍ଦ, ଶରତଚନ୍ଦ୍ର ଜୟଶଙ୍କର ପ୍ରସାଦ, ସେକ୍ସପିୟର, ସମରସେଟ୍ ମମ୍, ମାକ୍ସିମ୍ ଗର୍ବି ଆଦିଙ୍କ ରଚନା ପଢ଼ିସାରିଥିଲି। ସେହିସବୁ ସାହିତ୍ୟର ବିଭବ ଓ ଚରିତ୍ର ମୋର ଚେତନାରେ ଅନେକ ଉଦ୍‌ବେଳନ ଆଣୁଥିଲେ। ଲେଖିବାର ଆଗ୍ରହ ଏବଂ ଉଦ୍ୟମ ସେହିଠାରୁ ଆରମ୍ଭ ହେଲା। ଗୋଟିଏ କାହିଣୀ ଲେଖିବା, ତାକୁ ଚିରିଦେବା, ପୁନଃ ଲେଖିବା। ଘରେ ମାଆର କଠୋର ଅନୁଶାସନ ଥିଲା ସକାଳୁ ଉଠିବା, ସିତାର ବଜାଇବା, ଦୁର୍ଗା ସହସ୍ରନାମ ଓ ଶ୍ଳୋକ ପଢ଼ିବା, ସ୍କୁଲଯିବା, ଡ୍ରଇଁ କ୍ଲାସ ଯିବା, ମା'ଙ୍କ ଦ୍ୱାରା ପରିଚାଳିତ ଦଳିତ ପିଲା ଏବଂ ମହିଳାଙ୍କ ସ୍କୁଲରେ ପଢ଼ାଇବା ଆଦି। ସବୁକିଛି ପାଇ ମଧ୍ୟ ମନ ବିଚଳିତ ହେଉଥିଲା ଯାହା ଚାହୁଁଥିଲି ତା' ନ ପାଇବାର ଅନୁଭବ କରୁଥିଲି ଆଉ ତାହା କ'ଣ ମୁଁ ମଧ୍ୟ ଜାଣିପାରୁ ନ ଥିଲି। ୧୯ ବର୍ଷ ବୟସରେ ବିବାହ ପରେ ଯୋଧପୁର ଆସିଲି। ନୂଆ ଯାଗା, ନୂଆ ଜୀବନ, ତେବେ ବି ଅନେକ ଭାବନା। ଏମିତିରେ ମୋ ହାତକୁ କଲମ ଆସିଗଲା। ଦୀର୍ଘବର୍ଷ ଧରି ଯେଉଁସବୁ ଶବ୍ଦ ମୋ ଭିତରେ ଉଦ୍‌ବେଳନ ଖେଳାଉଥିଲା ଧୀରେ ଧୀରେ ସେସବୁ ଶବ୍ଦ କାଗଜରେ ଲିପିବଦ୍ଧ କଲି। ଯେ ପର୍ଯ୍ୟନ୍ତ ଲେଖନରେ ବୁଡି ନ ଥିଲି, ସେ ଯାଏଁ ନିଜର ସନ୍ଧାନ ଜାରି ରଖିଥିଲି।

ପ୍ରଶ୍ନ. କାହାଣୀ, ଉପନ୍ୟାସ, ନାଟକ ପ୍ରତି ଆଗ୍ରହ ଆସିଲା କାହିଁକି ? କେବେ କବିତା ଲେଖିବାକୁ ଚେଷ୍ଟା କରିଛନ୍ତି ?

ଉତ୍ତର: ଜୀବନରେ ଅନେକ ଘଟଣା ଘଟିଯାଏ, ଯାହାର ବ୍ୟାଖ୍ୟା କରାଯାଇପାରେନା। କଥା-କାହାଣୀ ଆଦିକୁ ପଢ଼ିବାରେ ଅଧିକ ରୁଚି, ତାକୁ ମୋର କାହାଣୀ ଗଢ଼ିବା ପୁନଃ ପୁନଃ ପଢ଼ିବା ଅନ୍ୟକୁ ସହଜରେ ବୁଝାଇବାର କ୍ଷମତା ଆଦି କାହାଣୀ, ଉପନ୍ୟାସ, ନାଟକ ମାଧ୍ୟମରେ ମୋତେ ସହଜ ହେଲା। କବିତା ପଢ଼ିବାକୁ ଭଲଲାଗେ କିନ୍ତୁ କେବେ ଲେଖିବା ଉଦ୍ୟମ କରିନି।

ପ୍ରଶ୍ନ. ଅନେକ ଲେଖିକା ନାରୀବାଦକୁ ଆପଣେଇ ନେଇଛନ୍ତି। କିନ୍ତୁ ଆପଣଙ୍କ ସାହିତ୍ୟରେ ମାନବବାଦ ସ୍ପଷ୍ଟ ବାରିହୁଏ ?

ଉତ୍ତର: ମୋ ଲେଖନୀର ଉଦ୍ଦେଶ୍ୟ ବିସ୍ତୃତ। ଜୀବନକୁ ସମସ୍ତ ଦୃଷ୍ଟିକୋଣରୁ ମୁଁ ଦେଖେ। ଯାହା ଜୀବନରେ ଅଛି, ତାହା ମୋର ଲେଖନ। ଏବେ ମୋତେ ମୋର 'କୁଛ୍ ଅନ୍ କହି' ଉପନ୍ୟାସ ଉପରେ ରାଜସ୍ଥାନ ସାହିତ୍ୟ ଏକାଡେମୀର ସର୍ବୋଚ୍ଚ ମୀରା ପୁରସ୍କାର ମିଳିଛି। ଏଥିରେ ତିନି ପିଢ଼ିର ନାରୀ ଜୀବନର କଥା ଅଛି। ଏପରି ତ ମହିଳା ହୋଇଥିବାରୁ ଅନାୟସରେ ନାରୀ ମୋ ଲେଖନୀକୁ ଆସିଯାଏ। ନାରୀର ସମସ୍ୟା ନିଜ ସ୍ଥାନରେ, ତା'ର ସାମାଜୀକରଣ ହେବା ଅନୁଚିତ୍। ଏଇଥିପାଇଁ ସମ୍ଭବତଃ ମୋର ଦୃଷ୍ଟିକୋଣ ଫେମିନିଜମ୍ ନ ହୋଇ ମାନବବାଦୀ ହୋଇଯାଇଛି। ଲେଖିବାବେଳେ ଲେଖକ ପୁରୁଷ କି ନାରୀ ହୋଇ ନ ଥାଏ– ସେ ମାତ୍ର ଜଣେ ଲେଖକ ହୋଇଥାଏ। ଯିଏ କି ଜୀବନକୁ ଏକ ଦାର୍ଶନିକ ଦୃଷ୍ଟିରୁ ଦେଖେ, ମନୋବୈଜ୍ଞାନିକ ଦୃଷ୍ଟିରୁ ମଧ୍ୟ ଦେଖେ ଏବଂ ମାନବୀୟ ଦୃଷ୍ଟିକୋଣ ରଖେ। ମୋର ଲେଖିବା ଆରମ୍ଭ ସେଇଠୁ ହୁଏ ଯେଉଁଠି ସହାନୁଭୂତିର କିରଣ ଦୃଷ୍ଟିଗୋଚର ହୁଏ।

ପ୍ରଶ୍ନ. ଆଜିର ନାରୀ ପ୍ରତି ଅପଣଙ୍କ ଦୃଷ୍ଟିଭଙ୍ଗୀ କିପରି ?

ଉତ୍ତର: ଭାରତ ଏତେ ବଡ଼ ଦେଶ ଯେ ଗୋଟିଏ କଥା ସମସ୍ତଙ୍କ ଉପରେ ଲାଗୁ ହେଉନାହିଁ। ଏପରି ତ ସମସ୍ତେ ଏକ ଭାରତୀୟତାର ସଂସ୍କାରରେ ବନ୍ଧା। ତେବେ ସେମାନଙ୍କ ବାହ୍ୟ ସ୍ୱରୂପରେ ଅନେକ ପ୍ରଭେଦ ରହିଛି। ସ୍ୱାଧୀନତା ପରେ ଭାରତର ମହିଳାଙ୍କଠାରେ କ୍ରାନ୍ତିକାରୀ ପରିବର୍ତ୍ତନ ଆସିଛି। ପରିବର୍ତ୍ତନ ସୂତ୍ର କୌଣସି ନାରୀବାଦୀ ଆନ୍ଦୋଳନ ହାତରେ ନଥିଲା। ଏହି ପରିବର୍ତ୍ତନ ବହୁତ ଧୀରେ ଧୀରେ ଆସିଛି। ଏହା ପଛରେ ଶିକ୍ଷା ସହିତ ଅନ୍ୟାନ୍ୟ ଅନେକ କାରଣ ରହିଛି। ଅନେକ ମହିଳା ତା'ରି ଭିତରେ ଆସିଥିବା ଏହି ପରିବର୍ତ୍ତନ ଏବଂ ତାଙ୍କୁ ମିଳିଥିବା ଏହି ଅଧିକାରକୁ କିପରି ପ୍ରୟୋଗ କରିବେ ଏବଂ ପରୁଷମାନେ ଏହି ସ୍ୱାଧୀନ ମହିଳାଙ୍କ ସହ କିପରି ଆଚରଣ କରିବେ ତାହା ହୁଏ ତ ଜାଣିପାରୁନାହାନ୍ତି। କାରଣ ମହିଳାଙ୍କ ପାରମ୍ପରିକ ରୂପ ଜଣେ ଗୃହିଣୀ, ମା', ସ୍ତ୍ରୀ, ଭଉଣୀ ଏବଂ କନ୍ୟାର ଥିଲା। ମହିଳା ନିଜେ କେଉଁଠି ମଧ୍ୟ ନ ଥିଲା। ଯାହାଫଳରେ ସ୍ତ୍ରୀ-ପୁରୁଷ ସମ୍ବନ୍ଧରେ ଏକ ଦ୍ୱନ୍ଦ୍ୱ ଆସିଯାଇଛି। ମହିଳା ହୋଇଥିବା କାରଣରୁ ମୁଁ ଭାବୁଛି ଏହାର ସମାଧାନ ନାରୀ କରିପାରିବ। କାରଣ ସେ ଶକ୍ତିସ୍ୱରୂପା। ଏଣୁ ତାକୁ ତା'ର ଶକ୍ତିର ବୋଧ ହେବା ଆବଶ୍ୟକ।

ପ୍ରଶ୍ନ. ହିନ୍ଦୀ ସାହିତ୍ୟ ସମ୍ପର୍କରେ ଆପଣ କ'ଣ କହିବେ ?

ଉତ୍ତର: ହିନ୍ଦୀ ସାହିତ୍ୟ ବହୁତ ସମୃଦ୍ଧ। ଏଥିରେ ଦୁର୍ଲ୍ଲଭ ରତ୍ନ ରହିଛି। ଦକ୍ଷିଣ ଭାରତରେ ହିନ୍ଦୀ ସାହିତ୍ୟ ପ୍ରଚାରର ଅବଶ୍ୟକ ରହିଛି। ସମକାଳୀନ ବିଷୟବସ୍ତୁମାନଙ୍କ ଉପରେ ବର୍ତ୍ତମାନ ହିନ୍ଦୀ ସାହିତ୍ୟରେ ଅନେକ ଲେଖାଲେଖି ହେଉଥିବା ଦେଖିବାକୁ ମିଳୁଛି।

ପ୍ରଶ୍ନ. ଆଉ ଓଡିଆ ସାହିତ୍ୟ ?

ଉତ୍ତର: ଓଡ଼ିଆ ସାହିତ୍ୟ ମୋର ଅତ୍ୟଧିକ ପସନ୍ଦ। ଓଡ଼ିଶାର ସବୁଠୁ ମୋର ଅଧିକ ପ୍ରିୟ ଲେଖିକା ପ୍ରତିଭା ରାୟ। ତାଙ୍କ ରଚିତ 'ଯାଜ୍ଞସେନୀ' ର ହିନ୍ଦୀ ଅନୁବାଦ 'ଦ୍ରୈପଦୀ' ମୋତେ ଖୁବ୍ ଭଲ ଲାଗିଛି। ଆହୁରି ଅନେକ ଓଡ଼ିଆ ଲେଖକଙ୍କୁ ବି ମୁଁ ପଢ଼ିଛି ଏବେ ସେମାନଙ୍କ ନାଁ ମୋର ମନେପଡୁନାହିଁ। ତେବେ ରାଜେନ୍ଦ୍ର ମିଶ୍ରଙ୍କ ଓଡ଼ିଆରୁ ହିନ୍ଦୀ ଅନୁବାଦଗୁଡ଼ିକୁ ପଢ଼ିଛି ଏବଂ ସେହି ସମସ୍ତ ଓଡିଆ ଗଳ୍ପ ଉପନ୍ୟାସ ମୋତେ ଗଭୀର ଭାବରେ ଛୁଇଁଛି। ଓଡ଼ିଆ ସାହିତ୍ୟରେ ଭାବ ଏବଂ ଚରିତ୍ରର ଚିତ୍ରଣ ଖୁବ୍ ମର୍ମସ୍ପର୍ଶୀ। ଏହା ଏତେ ମାର୍ମିକ ଯେ ଜୀବନ ଭିତରକୁ ପ୍ରବେଶ କରିଯାଏ।

ପ୍ରଶ୍ନ. କ'ଣ କଲେ ଭାଷାର ସାହିତ୍ୟକୁ ଅନ୍ତର୍ରାଷ୍ଟ୍ରିୟ ସ୍ତରରେ ଆଣିହେବ ?

ଉତ୍ତର: ଦେଖନ୍ତୁ ଗୋଟିଏ ଶବ୍ଦ ଅଛି 'ପ୍ରୟାସ'। ଅନୁବାଦ, ରେଡିଓ, ଟିଭି, ପତ୍ରପତ୍ରିକା ଆଦିର ପ୍ରୟାସ ଦ୍ୱାରା ଭାରତ ଓ ଭାରତ ବାହାରେ ଆମ ସାହିତ୍ୟକୁ ପହଞ୍ଚାଇ ପାରିବା।





# ଦଳିତ ସାହିତ୍ୟ ଏଠି ନଗଣ୍ୟ

## ସୁରସିଂହ ପଟ୍ଟନାୟକ:

**ଉ**ତ୍କଳ ଗୌରବ ମଧୁସୂଦନ ଓ ଶାନ୍ତି, ଅହିଂସାର ମୂର୍ତ୍ତିମନ୍ତସ୍ୱରୂପ ବୁଦ୍ଧଦେବଙ୍କ ଉପରେ ଗଭୀର ଅଧ୍ୟୟନ ଓ ମନନଶୀଳ ସାହିତ୍ୟ ସୃଷ୍ଟି କରିଥିବା ଅନ୍ୟତମ ସ୍ରଷ୍ଟା ସୁରସିଂହ ପଟ୍ଟନାୟକ। 'ମଧୁସୂଦନ ଦାସ, ଦି ପ୍ରାଇଡ୍ ଅଫ୍ ଦି ନେଶନ୍' ଆଦି ପୁସ୍ତକ ରଚନା କରିଥିବା ଶ୍ରୀ ପଟ୍ଟନାୟକଙ୍କ ମତରେ ଦଳିତ ସାହିତ୍ୟର ନଗଣ୍ୟତା ଓଡ଼ିଆ ସାହିତ୍ୟର ଦୁର୍ବଳ ଦିଗ। ଓଡ଼ିଆ ସାହିତ୍ୟ ଏକାଡେମୀ ତା'ର ଲକ୍ଷ୍ୟଠାରୁ ଦୂରେଇ ଯାଉଥିବାରୁ କ୍ଷୋଭ ପ୍ରକାଶ କରୁଥିବା ଏହି ସାରସ୍ୱତ ସାଧକ କହନ୍ତି, ଓଡ଼ିଶାକୁ ଭାଷାଭିତ୍ତିକ ପ୍ରଦେଶ ଭାବେ ଗଠନ କରିବାରେ ଯେଉଁମାନଙ୍କର ଅବଦାନ ରହିଛି ସେମାନଙ୍କ ସମ୍ପର୍କରେ ଓଡିଶା ସାହିତ୍ୟ ଏକାଡେମୀ କ୍ଷୁଦ୍ର ପତ୍ରିକାଟିଏ ମଧ୍ୟ ଏ ଯାଏ ପ୍ରକାଶ ନକରିବା ବିଡମ୍ବନାର ବିଷୟ। ଗଞ୍ଜାମର ଆସିକାରେ ଜନ୍ମଲାଭ କରିଥିବା ଶ୍ରୀ ପଟ୍ଟନାୟକ ସାହିତ୍ୟ ସାଧନା ପାଇଁ ବିଷୁବ ପୁରସ୍କାରଠାରୁ ଆରମ୍ଭ କରି ମଧୁସୂଦନ ସମ୍ମାନ, ଉତ୍କଳ ସାହିତ୍ୟ ସମାଜ ପୁରସ୍କାର ଆଦି ଲାଭ କରିଛନ୍ତି।

ପ୍ରଶ୍ନ: ଅନେକ ଲେଖା ଅନୁସନ୍ଧାନମୂଳକ ?

ଉତ୍ତର: ମୋର ଅଧ୍ୟୟନର ମୂଳ ବିଷୟବସ୍ତୁ ହିଁ ଅନୁସନ୍ଧାନମୂଳକ, ଯାହାର ଅନ୍ୱେଷଣରେ ମୋତେ ବହୁ ସମୟ ଅଭିଲେଖାଗାରରେ ହିଁ କଟାଇବାକୁ ପଡେ।

ପ୍ରଶ୍ନ: ଲେଖିବା ପାଇଁ ପୂର୍ବ ପ୍ରସ୍ତୁତି ?

ଉତ୍ତର: ମୋର ନିଜସ୍ୱ ପାଠାଗାରରେ ଅଧ୍ୟୟନ ସହିତ ମୂଳ ତଥା ଅଭିଲେଖାଗାରର ପୁରାତନ ପତ୍ରିକା, ଦସ୍ତାବିଜ, ରାଜ୍ୟ ପାଠାଗାରରେ ସମସ୍ତ ସମ୍ପର୍କୀୟ ପୁସ୍ତକ ଅଧ୍ୟୟନ କରି ତାହାକୁ ବିଷୟବସ୍ତୁ ଆଧାରରେ ସଜାଇ ରଖେ। ସେଥିରୁ ନିଜସ୍ୱ ସିଦ୍ଧାନ୍ତରେ ଉପନୀତ ହୋଇ ସାରିବା ପରେ ଲେଖା ଆରମ୍ଭ କରେ। ଏଣୁ ଏଥିରେ ଅଭିନବତ୍ୱ ଓ ନୂତନତ୍ୱ ସହିତ ଗବେଷଣାର ନିର୍ଯ୍ୟାସ ଉନ୍ମୀଳିତ ହୁଏ।

ପ୍ରଶ୍ନ: 'କାହାଣୀ ବୁଦ୍ଧ କରୁଣାର' ସମ୍ପର୍କରେ ?

ଉତ୍ତର: ଭଗବାନ ତଥାଗତ ବୁଦ୍ଧଙ୍କ ଜୀବନର ଧାରା ମଧ୍ୟରେ ଯେଉଁ ଶ୍ରେୟ ଭିକ୍ଷୁ ଭିକ୍ଷୁଣୀ ସିଦ୍ଧିପ୍ରାପ୍ତ ହୋଇ ତାହାଙ୍କର ଦର୍ଶନକୁ ବ୍ୟାପ୍ତ କରିଥିଲେ ସେମାନଙ୍କର ଜୀବନର ଆଲେଖ୍ୟ ଅସୀମ କରୁଣାର ବଶବର୍ତ୍ତୀ ହୋଇ ତଥାଗତ ସେମାନଙ୍କ ମନରେ ବ୍ୟାପକ ପରିବର୍ତ୍ତନ ସଂଘଟିତ କରିଥିଲେ। ତାହାହିଁ କାହାଣୀ ବୁଦ୍ଧ କରୁଣାର ବିଷୟବସ୍ତୁ।

ପ୍ରଶ୍ନ: ବୁଦ୍ଧଙ୍କ ଉପରେ କାହିଁକି ?

ଉତ୍ତର: ଓଡିଶାରେ ବୁଦ୍ଧ ଦର୍ଶନ ଓ ଚରିତର ପ୍ରକାଶନ ଏକ ଅତ୍ୟନ୍ତ ଦୁର୍ବଳ ଦିଗ। ବୁଦ୍ଧ ଚରିତର ଅନ୍ୟ ଏକ ପ୍ରମୁଖ ବଳିଷ୍ଠ ଦିଗ ହେଲା ତାହାଙ୍କ ଅନୁସୃତ ଭିକ୍ଷୁ ଭିକ୍ଷୁଣୀଙ୍କ କାହାଣୀ। ସମଗ୍ର ଭାରତୀୟ ସମାଜ କ୍ଷେତ୍ରରୁ ଅତ୍ୟାଚରିତ ଓ ନିଷ୍ପେଷିତ ହୋଇ ବିଚ୍ଛିନ୍ନ ହୋଇ ପଡିଥିବା ଅଛୁଵ, ଗିରିଜନ, ନିର୍ଯାତିତ ନାରୀ, ଗଣିକା, ନର୍ତ୍ତକୀ, ଶ୍ରେଷ୍ଠୀକୁଳ ବ୍ୟକ୍ତିଗଣ ଯେଉଁମାନେ ବୁଦ୍ଧଙ୍କର ଶରଣରେ ଆସି ସିଦ୍ଧିର ସର୍ବୋତ୍ତମ ସ୍ତରରେ ପହଞ୍ଚିଥିଲେ ସେମାନଙ୍କର କାହାଣୀ। ଏହି ସମସ୍ତ କାହାଣୀ ତ୍ରିପିଟକର ଧର୍ମପଦ, ସୁତ୍ତ ନିପାତ, ବିନ, ପିଟକ, ଥେରୀଗାଥା, କ୍ଷୁଦ୍ଦକ, ନିକାୟ ଗ୍ରନ୍ଥରୁ ଗୃହୀତ।

ପ୍ରଶ୍ନ: କିଭଳି ପ୍ରଭାବିତ ହୋଇଛନ୍ତି ?

ଉତ୍ତର: ଓଡିଶାରେ ଆଧ୍ୟାତ୍ମିକ ଚିନ୍ତନ, ସାମାଜିକ ଚଳଣି ଏବଂ ସଂସ୍କୃତିରେ ବୌଦ୍ଧ ଦର୍ଶନ ଏକ ଅନ୍ତରଙ୍ଗ ଆଉ ଅବିଚ୍ଛେଦ୍ୟ ଅଂଶ ଆଉ ଶ୍ରୀଜଗନ୍ନାଥ ଭଗବାନ

ବୁଦ୍ଧଙ୍କର ପ୍ରତୀକ ରୂପେ ଆଧାରିତ। ଏଣୁ ବୌଦ୍ଧ ଦର୍ଶନର ବହୁ ସେମିନା ଓ ସାଧନାର ଶିବିରରେ ଯୋଗଦାନ ପରେ ବୁଦ୍ଧଙ୍କର ଦର୍ଶନ ପ୍ରତି ଆକର୍ଷିତ ହେଲି ଓ ବୁଦ୍ଧଙ୍କର ପ୍ରବର୍ତ୍ତିତ ବିପଶନା ଧ୍ୟାନର ପ୍ରସାର କଲି। ଏହା ସହିତ ବୌଦ୍ଧ ଦର୍ଶନର କିଛି ଗ୍ରନ୍ଥ ଅଧ୍ୟୟନ କଲି।

ପ୍ରଶ୍ନ: ନିର୍ଦ୍ଦିଷ୍ଟ କୌଣସି ଆଲୋଚନା ?

ଉତ୍ତର: ହଁ, ଓଡିଶା ପ୍ରଦେଶ ସ୍ଥାପନାରେ ମଧୁସୂଦନଙ୍କର ଭୂମିକା ସମ୍ପର୍କରେ ପ୍ରାୟ ଉଲ୍ଲେଖନୀୟ ଗ୍ରନ୍ଥ ଥିଲା। ଏଣୁ ୧୯୯୮ ସାଲରେ ମଧୁସୂଦନଙ୍କର ୧୫୦ ତମ ଜୟନ୍ତୀ ପାଳନ ଅବସରରେ ତାଙ୍କର ରାଜ୍ୟସ୍ତରୀୟ ସ୍ମୃତିରକ୍ଷା ଓ ତାଙ୍କର ସ୍ମୃତି ବିଜଡିତ ସାହିତ୍ୟ ରଚନା ପାଇଁ ଆନ୍ଦୋଳନ ପ୍ରକାଶିତ ହୋଇଛି। ସେ ମଧ୍ୟରେ ମଧୁସୂଦନ ଓ ଗାନ୍ଧୀଙ୍କର ଗୁରୁ ଓ ଶିଷ୍ୟ ସମ୍ପର୍କକୁ ମୁଁ ପ୍ରଥମେ ଉଜାଗର କରିଛି।

ପ୍ରଶ୍ନ: ମଧୁସୂଦନଙ୍କୁ କେଉଁ ଭଳି ଭାବେ ଖୋଜିଛନ୍ତି ?

ଉତ୍ତର: ମଧୁସୂଦନଙ୍କର ୧୫୦ ବର୍ଷ ଜୟନ୍ତୀ ୧୯୯୮-୯୯ ରେ ପାଳନ କରିବା କଥାଟି ମୋ ମନରେ ହଠାତ୍ କାହିଁ ଆବିର୍ଭୂତ ହେଲା। ସେଥିପାଇଁ ବ୍ରହ୍ମପୁରରେ ଓଡିଶା ଜାଗୃତି ପ୍ରବାହ ନାମକ ଏକ ଅନୁଷ୍ଠାନର ସଂଯୋଜନା କରି ତା’ ମାଧ୍ୟମରେ ଅନ୍ୟମାନଙ୍କ ସହାୟତାରେ ପ୍ରଚେଷ୍ଟା ଆରମ୍ଭ କଲି ଏବଂ ବିଭିନ୍ନ ଗୋଷ୍ଠୀର ବ୍ୟକ୍ତିବିଶେଷ ଅନୁଷ୍ଠାନମାନଙ୍କୁ ନିବେଦନ କଲି। ସରକାରଙ୍କୁ ନିବେଦନ କରିବା ସତ୍ତ୍ୱେ ତାହା ଫଳପ୍ରଦ ହୋଇ ନଥିଲା। ସୌଭାଗ୍ୟକୁ ଓଡିଶା ବାର ଆସୋସିଏଶନକୁ ନିବେଦନ କରିବା ପରେ ସେମାନେ ୧୯୯୮ରେ ମଧୁସୂଦନଙ୍କ ୧୫୦ ବର୍ଷ ଜୟନ୍ତୀ ପାଳନ କରିବା ପାଇଁ ସିଦ୍ଧାନ୍ତ ଗ୍ରହଣ କଲେ ଏବଂ ଓଡିଶା ହାଇକୋର୍ଟର ତତ୍‌କାଳୀନ ମୁଖ୍ୟ ବିଚାରପତି ନ୍ୟାୟମୂର୍ତ୍ତି ଫୁକନ୍‌ଙ୍କ ପରାମର୍ଶ କ୍ରମେ ପ୍ରତିବର୍ଷ ମଧୁସୂଦନଙ୍କ ଜୟନ୍ତୀ ୨୮ ଏପ୍ରିଲକୁ ଆଇନ୍‌ଜୀବୀ ଦିବସ ରୂପେ ଘୋଷଣା କରାଗଲା ଏବଂ ସେଦିନ ଓଡିଶାର ସବୁ କୋର୍ଟର ଛୁଟିଦିବସ ଘୋଷଣା କରାଗଲା। ୧୯୯୯ରେ ରାଜ୍ୟସରକାର ମଧୁବାବୁଙ୍କ ୧୫୦ ବର୍ଷ ଜୟନ୍ତୀ ପାଳନ କରିବା ସହିତ ମୋର ଲିଖିତ ଆବେଦନରେ ମଧୁସୂଦନଙ୍କ ବାସଭବନକୁ ଜାତୀୟ ସ୍ମାରକୀ ରୂପେ ପରିଣତ କରିବାକୁ ସିଦ୍ଧାନ୍ତ ଗ୍ରହଣ କରିଥିଲେ।

ପ୍ରଶ୍ନ: ଓଡିଆ ସାହିତ୍ୟର ଦୁର୍ବଳ ଦିଗ ?

ଉତ୍ତର: ଓଡ଼ିଶାରେ ସାହିତ୍ୟର ଦୁର୍ବଳ ଦିଗ ହେଉଛି ଦଳିତ ସାହିତ୍ୟର ନଗଣ୍ୟତା। ଆନ୍ଧ୍ର, ମହାରାଷ୍ଟ୍ର, ଗୁଜୁରାଟରେ ଏହି ସାହିତ୍ୟ ସ୍ୱତନ୍ତ୍ର ବଳିଷ୍ଠ ଭୂମିକା ଗ୍ରହଣ କରିଛି। ଓଡ଼ିଶାରେ ଦାରିଦ୍ର୍ୟ ଉତ୍କଟତମ ଓ ନିଷ୍ପେଷଣ ଅତୀବ ମର୍ମନ୍ତୁଦ ସହିତ ଶିଶୁ ମୃତ୍ୟୁହାର ବିଶ୍ୱସ୍ତରରେ ସର୍ବାଧିକ। ଅଥଚ ଓଡ଼ିଆ କାହାଣୀ ଓ କବିତା ମଧ୍ୟବିତ୍ତ ଓ ଧନିକ ଶ୍ରେଣୀ ମଧ୍ୟରେ ଆବଦ୍ଧ। ଏହା ହିଁ ଓଡ଼ିଆ ସାହିତ୍ୟର ସବୁଠାରୁ ଚରମ ବିରୋଧାଭାସ। ଏଥିପାଇଁ ଜୀବନର ବାସ୍ତବିକ ଅଧ୍ୟୟନ ଆବଶ୍ୟକ।

ପ୍ରଶ୍ନ: ଓଡ଼ିଆ ସାହିତ୍ୟକୁ ନେଇ ପରବର୍ତ୍ତୀ ଯୋଜନା ?

ଉତ୍ତର: ଭାଷାଭିତ୍ତିକ ଓଡ଼ିଆ ଜାତୀୟତାର ବଳିଷ୍ଠ ଭିତ୍ତିଭୂମି ଯାହା ଏ ରାଜ୍ୟକୁ ସମୃଦ୍ଧି, ସାମର୍ଥ୍ୟ ଓ ଅର୍ଥନୈତିକ ଅଭିବୃଦ୍ଧି ପ୍ରଦାନ କରିଛି ତାହା ଉପରେ ପର୍ଯ୍ୟାଲୋଚନା ଓ ଅନୁଶୀଳନ, ଦଳିତ ଓ ଆଦିବାସୀ ସାହିତ୍ୟର ସମ୍ପ୍ରସାରଣ।

ପ୍ରଶ୍ନ: ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ କ'ଣ ଲୋଡ଼ା ?

ଉତ୍ତର: ଓଡ଼ିଆ ସାହିତ୍ୟରେ ଆଜିକାଲି କବିତା ଓ କାହାଣୀ ପ୍ରାଧାନ୍ୟ ଲାଭ କରିଛି। ଏହା ସ୍ୱାଗତଯୋଗ୍ୟ ମାତ୍ର ସାହିତ୍ୟକୁ ପ୍ରକୃତରେ ଶକ୍ତି, ସାମର୍ଥ୍ୟ ଓ ସିଦ୍ଧି ପ୍ରଦାନ କରିବ ପ୍ରବନ୍ଧ, ଗବେଷଣା ସାହିତ୍ୟ, ଜୀବନୀ, ପ୍ରାଚୀନ ଗ୍ରନ୍ଥ ଓ ପତ୍ରିକାର ସଙ୍କଳନ ଓ ଦର୍ଶନ ସାହିତ୍ୟ। ଏହା ଅଧିକ ରଚନା ଆବଶ୍ୟକ।

ପ୍ରଶ୍ନ: ସାହିତ୍ୟିକ ଏବଂ ପାଠକ ?

ଉତ୍ତର: ଓଡ଼ିଆ ଜାତୀୟତା ଚରମ ଅବଲୁପ୍ତିର ପର୍ଯ୍ୟାୟରେ। ଅନ୍ୟ ବହୁ ପ୍ରଦେଶରେ ସେମାନଙ୍କର ଜାତିର ନବବର୍ଷ ଅନ୍ୟ ଜାତୀୟ ପର୍ବ ମହାସମାରୋହରେ ପାଳିତ ହେଉଥିଲାବେଳେ ଓଡ଼ିଶାରେ ଏହାର ପାଳନ ଅବିଦିତ ଓ ଅନୁଚ୍ଚାରିତ। ଏ ସମସ୍ତର ଆବାହନ ଓ ଉଦ୍ଦୀପନା ଚରମ ଆବଶ୍ୟକତା ଯାହା ସାହିତ୍ୟିକ ଓ ପାଠକଙ୍କର ପରମ କର୍ତ୍ତବ୍ୟ। ଓଡ଼ିଆ ଭାଷାଭିତ୍ତିକ ପ୍ରଦେଶର ସ୍ଥାପନା ତଥା ଏହାର ନିର୍ମାତା ଓ ସ୍ଥାପୟିତାମାନଙ୍କ ଉପରେ ଅମୂଲ୍ୟ ଗ୍ରନ୍ଥରାଜି ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ପ୍ରକାଶିତ ହେବା ମୁଖ୍ୟ କର୍ତ୍ତବ୍ୟ ଥିଲା ବେଳେ ଏ ସମ୍ପର୍କରେ ସାମାନ୍ୟ ଏକାଡେମୀର କର୍ତ୍ତୃପକ୍ଷ ଅବହିତ ହେବା ଆବଶ୍ୟକ ଯେ ଓଡ଼ିଶା ପ୍ରଦେଶ ସ୍ଥାପିତ ହୋଇ ନଥିଲେ ଓଡ଼ିଶା ସାହିତ୍ୟ ଏକାଡେମୀର କୌଣସି ସତ୍ତା ବା ଅସ୍ତିତ୍ୱ ନଥାନ୍ତା।





# ସମାଲୋଚକ ଏକ ପରାଙ୍ଗପୁଷ୍ଟ ଜୀବ ନୁହେଁ

## ଡଃ ପ୍ରସନ୍ନ କୁମାର ପଟ୍ଟନାୟକ:

**ସା**ହିତ୍ୟ ସମାଲୋଚକ ଏକ ପରାଙ୍ଗପୁଷ୍ଟ ଜୀବ ନୁହେଁ, ସମାଲୋଚନା ହିଁ ସାହିତ୍ୟକୁ ସମୃଦ୍ଧ କରିଥାଏ। ସୁତରାଂ ସମାଲୋଚକ ହିଁ ସାହିତ୍ୟର ତ୍ରୁଟି ବିଚ୍ୟୁତି ସୁଧାରିବାରେ ସହାୟକ। ଏହି ମର୍ମରେ ମତବ୍ୟକ୍ତ କରନ୍ତି ବିଶିଷ୍ଟ ସମାଲୋଚକ ଡଃ ପ୍ରସନ୍ନ କୁମାର ପଟ୍ଟନାୟକ। ସାର୍ବଜନୀନ ଦୃଷ୍ଟିଭଙ୍ଗୀ, ବ୍ୟାପକ ଅଧ୍ୟୟନ ଓ ସ୍ୱାଧୀନ ଭାବେ ମତବ୍ୟକ୍ତ କରିବାର ସାହାସ ଥିଲେ ଜଣେ ସମାଲୋଚନା ଲେଖିବା କ୍ଷେତ୍ରକୁ ପ୍ରବେଶ କରିପାରିବ ବୋଲି ତାଙ୍କ ମତ।

ପ୍ରଶ୍ନ: ଆପଣ ସାହିତ୍ୟ କ୍ଷେତ୍ରକୁ ଆକୃଷ୍ଟ ହେଲେ କିପରି ?

ଉତ୍ତର: ବିଜେବି କଲେଜରେ ପ୍ରାକ୍ ବିଶ୍ୱବିଦ୍ୟାଳୟ ଶ୍ରେଣୀରେ ପଢ଼ିଲା ବେଳେ ମୋର ଗୋଟିଏ କବିତା ଯୁବବାହିନୀ ତରଫରୁ ଏବଂ ଅନ୍ୟ ଏକ କବିତା କଲେଜର ସାହିତ୍ୟ ସଂସଦ ତରଫରୁ ପୁରସ୍କାର ପାଇଥିଲା। ଏହାହିଁ ମୋତେ ସାହିତ୍ୟ ଆଡ଼କୁ ଆକୃଷ୍ଟ କଲା। ଅବଶ୍ୟ ସାହିତ୍ୟ ପାଠକ ରୂପେ ଆଗ୍ରହ ଥିଲା ପିଲାଦିନରୁ କେତେ ଗଳ୍ପ, ଉପନ୍ୟାସ ମୁଁ ନିୟମିତ ପଢ଼ି ଆସୁଥିଲି।

ପ୍ରଶ୍ନ: ଆଜି ସୁଦ୍ଧା ଯେତେ ସମାଲୋଚନା ସାହିତ୍ୟ ସୃଷ୍ଟି ହୋଇଛି ସେଥିରେ ଆପଣ ସନ୍ତୁଷ୍ଟ କି ?

ଉତ୍ତର: ମୋର ବିଶ୍ୱାସ, ଆମ ସମାଲୋଚନା ବିଶେଷତଃ ଆଧୁନିକ କାଳର ସମାଲୋଚନା, ଯେଉଁ କୃତିକୁ ଯେଉଁ ଦୃଷ୍ଟିକୋଣରୁ ବିଚାର କରିବା କଥା ତାହା କରିବାରେ ସମର୍ଥ ହୋଇପାରିନାହିଁ। ଅଧିକାଂଶ ସମାଲୋଚକ ସାଂପ୍ରତିକ ସମାଲୋଚନା ପଦ୍ଧତି ସମ୍ପର୍କରେ ଯଥେଷ୍ଟ ଅବହିତ ନୁହନ୍ତି। ସମାଲୋଚକମାନଙ୍କର ଅଧ୍ୟୟନ କ୍ଷେତ୍ର ମଧ୍ୟ ଆମ ସାହିତ୍ୟରେ ଅତି ସଙ୍କୁଚିତ।

ପ୍ରଶ୍ନ: ଆଜିକାଲି ବହୁକ୍ଷେତ୍ରରେ ସମାଲୋଚନା ନାଁରେ ନକାରାତ୍ମକ ଭାବନାକୁ ପ୍ରକାଶ କରାଯାଉଛି, ଆପଣ କ'ଣ କହିବେ ?

ଉତ୍ତର: ମୋ ମତରେ ସମାଲୋଚନା ସାହିତ୍ୟକୁ ହିଁ ସୃଜନଶୀଳ ଲେଖକମାନେ ନକରାତ୍ମକ ଭାବରେ ବିଚାର କରନ୍ତି। ସମାଲୋଚକକୁ ମନେକରନ୍ତି ଜଣେ ପରାଙ୍ଗପୁଷ୍ଟ ଜୀବ ବୋଲି ବା ପାରାସାଇଟ୍ ବୋଲି। କିନ୍ତୁ ପ୍ରକୃତରେ ସମାଲୋଚକକୁ 'The Critic as Host' ନାମରେ ପ୍ରବନ୍ଧରେ ଜେ. ହିଲ୍ଲିର୍ ଯେପରି ଅବତାରଣା କରିଛନ୍ତି, ଆମ ସାହିତ୍ୟରେ ସେ ମାନସିକତା କବି, ଗାଳ୍ପିକ ବା ପାଠକମାନଙ୍କର ଏ ପର୍ଯ୍ୟନ୍ତ ସୃଷ୍ଟି ହେଇନାହିଁ।

ପ୍ରଶ୍ନ: ଓଡ଼ିଆ ସମାଲୋଚନା ସାହିତ୍ୟରେ ଆପଣଙ୍କ ଆସ୍ଥା ଅଛି କି ?

ଉତ୍ତର: ଅବଶ୍ୟ ଅଛି, ନ ଥିଲେ ମୁଁ କାହିଁକି ସମାଲୋଚନା ଲେଖନ୍ତି ?

ପ୍ରଶ୍ନ: ଓଡ଼ିଆ ସମାଲୋଚନା ସାହିତ୍ୟକୁ ଅଧିକ ସମୃଦ୍ଧ କରିବା ପାଇଁ କ'ଣ କରାଯିବା ଉଚିତ୍ ମନେକରୁଛନ୍ତି ?

ଉତ୍ତର: ଏକ ବିଶ୍ୱଜନୀନ ଦୃଷ୍ଟିଭଙ୍ଗୀ ଓ ବ୍ୟାପକ ଅଧ୍ୟୟନ ହିଁ ସମାଲୋଚନା ସାହିତ୍ୟକୁ ଅଧିକ ସମୃଦ୍ଧ କରିବ। ସ୍ୱାଧୀନ ଭାବେ ମତବ୍ୟକ୍ତ କରିବାର ସାହସ ମଧ୍ୟ ଆବଶ୍ୟକ।

ପ୍ରଶ୍ନ: ଆପଣଙ୍କ 'ନିରସ୍ତ କୁହୁକ' ସମ୍ପର୍କରେ କିଛି କୁହନ୍ତୁ ?

ଉତ୍ତର: ଅସ୍ତିତ୍ୱ ସମ୍ପର୍କରେ ସାଧ ମତେ ଦୀର୍ଘକାଳ ଅନୁସନ୍ଧାନର ଫଳ ରୂପେ ଏ କବିତାଟି ସମ୍ଭବ ହୋଇଥିଲା। ଯେଉଁଥିରେ ବ୍ଲାକହୋଲ୍, ହ୍ୱାଇଟ୍ ଡ୍ୱାର୍ଫ, ଡାଇନୋସର୍ ପ୍ରକୃତି ପ୍ରତୀକ ମାଧ୍ୟମରେ ଅସ୍ତିତ୍ୱର ଅନ୍ତିମ ସତ୍ୟ ଉପସ୍ଥାପିତ

ହୋଇଛି ଏବଂ ତା' ପୃଷ୍ଠଭୂମିରେ ଜୀବନ, ମୃତ୍ୟୁ, ପ୍ରେମ, ପ୍ରଣୟ, ସୁଖ, ଦୁଃଖର ଅଭିଜ୍ଞତା ରୂପାୟିତ ହୋଇଛି। ଶ୍ରୀମଦ୍ ଭାଗବତର 'ଧାମ୍ନାସ୍ୱେନ ସଦା ନିରସ୍ତ କୁହୁକଂ ସତ୍ୟଂ ପରଂ ଧୀମହି'ରୁ ନାମଟି ଅଣାଯାଇଛି।

ପ୍ରଶ୍ନ: ଆପଣଙ୍କର ଅନେକ କବିତାରେ ଗୋଟିଏ ମେସେଜ୍ ଥାଏ, ଏ ମେସେଜ୍ ଚିନ୍ତା କରି କବିତାରେ ରଖନ୍ତି କି ?

ଉତ୍ତର: କବିତାକୁ ସ୍ୱତଃସ୍ଫୂର୍ତ୍ତ ଉଚ୍ଛଳନ ବୋଲି ମୁଁ ଗ୍ରହଣ କରିପାରେନାହିଁ। ଆବେଗରୁ ଉଦ୍ରିକ୍ତ ହୋଇଥିଲେ ମଧ୍ୟ ବହୁ ଚିନ୍ତା ପରେ ମୋ ପକ୍ଷରେ ଗୋଟିଏ କବିତା ସମ୍ଭବ ହୁଏ।

ପ୍ରଶ୍ନ: ଆପଣ ଗୋଟିଏ ଇଂଲିଶ ପୁସ୍ତକ 'ଏ ଷ୍ଟଡି ଅଫ୍ ଦ ସିଦ୍ଧାନ୍ତ ଦର୍ପଣ' ଲେଖିଛନ୍ତି। ଜ୍ୟୋତିଷ ଶାସ୍ତ୍ର ଉପରେ ଆପଣଙ୍କର ଏ ପ୍ରବେଶ କିପରି ?

ଉତ୍ତର: ଏ ସମ୍ପର୍କରେ ମୁଁ ସେ ବହିର ମୁଖବନ୍ଧରେ ଉଲ୍ଲେଖ କରିଛି। ବହିଟି ଯେ ପଢ଼ିବେ ସେ ଏ ପ୍ରଶ୍ନର ଉତ୍ତର ଅବଶ୍ୟ ପାଇପାରିବେ। ଅବଶ୍ୟ କେବଳ ଡି.ଲିଟ୍. ଉପାଧି ଲାଭ କରିବା ଏ ଗ୍ରନ୍ଥ ଲେଖିବାର ଉଦ୍ଦେଶ୍ୟ ନ ଥିଲା। ଏଠାରେ ଏତିକି କହିଲେ ଯଥେଷ୍ଟ ହେବ। ତା'ପରେ ଏଥିରେ ମୋର 'ଗଭୀର' ପ୍ରବେଶ ଅଛି ବୋଲି ମୁଁ ଭାବୁନାହିଁ। ଗଭୀରତର ସ୍ତରକୁ ମଧ୍ୟ ଯିବା ଅନ୍ୟମାନଙ୍କ ପକ୍ଷରେ ବେଶ୍ ସମ୍ଭବ।

ପ୍ରଶ୍ନ: ଆପଣଙ୍କ ରଚିତ 'ଆଧୁନିକ ଓଡ଼ିଆ କବିତାରେ ଶାସ୍ତ୍ରୀୟ ଚିନ୍ତାଧାରା' ପୁସ୍ତକ ସମ୍ପର୍କରେ କ'ଣ କହିବେ ?

ଉତ୍ତର: ୧୯୮୨ ମସିହାରେ ପି.ଏଚ୍.ଡି ପରୀକ୍ଷା ପାଇଁ ତାହା ଲେଖାଯାଇଥିଲା। ଏବେ ସେସବୁର କେତେ ଅଂଶ ମୋତେ ଅପରିପକ୍ୱ ମନେହେଉଛି। ତାକୁ ସମ୍ପୂର୍ଣ୍ଣ ସଂଶୋଧନ କରିବା ଆବଶ୍ୟକ ବୋଲି ସ୍ୱୀକାର କରୁଛି।

ପ୍ରଶ୍ନ: ଏବେ କ'ଣ ଲେଖୁଛନ୍ତି ?

ଉତ୍ତର: କବିତା ଓ ସମାଲୋଚନା ଲେଖୁଛି। 'ସ୍ଥାପତ୍ୟର ଭଙ୍ଗୁରତା' ନାମରେ ସମାଲୋଚନା ବହିଟିଏ ପ୍ରକାଶ ହେବାକୁ ଯାଉଛି। କବିତା ବହିଟିଏ ମଧ୍ୟ ପ୍ରକାଶ ପାଇଁ ପ୍ରସ୍ତୁତ ହୋଇ ରହିଛି।





# ସାହିତ୍ୟ ମାଟିର ମଣିଷ କଥା କହୁ

## ଛିନ୍ନପତ୍ର ସାଧୁଚରଣ:

ଲେଖକ ଛିନ୍ନପତ୍ର ସାଧୁଚରଣ, ଗଳ୍ପ ଲେଖନ୍ତି ଉପନ୍ୟାସ ମଧ୍ୟ। ତାଙ୍କ ସୃଷ୍ଟିରେ ଗାଁ ମାଟିର ବାସ୍ନା। ମାଟିର ମଣିଷ ପାଇଁ ସମର୍ପିତ ହେଉ ତାଙ୍କ ଜୀବନ ଓ ଲେଖନୀ ଏହା ତାଙ୍କର ଅନୁନୟ।

ପ୍ରଶ୍ନ: ଆପଣଙ୍କ ସାହିତ୍ୟକୁ ପ୍ରବେଶ ସମ୍ପର୍କରେ କୁହନ୍ତୁ।

ଉତ୍ତର: ୧୯୪୫ ମସିହାରେ କଲେଜ ସରିବା ପରେ ପତ୍ରିକା ବାହାର କରିବା ନିଶାରେ ପଡ଼ିଲି। ଅଧ୍ୟାପକ ଲକ୍ଷ୍ମଣ ସାହୁ, ରମେଶ ପାଣିଗ୍ରାହୀ ଆଉ ମୁଁ ମିଶି 'ଶିଖା' ନାମରେ ଗୋଟିଏ ପତ୍ରିକା ବାହାର କଲୁ। ବିପ୍ଳବୀ ସାହିତ୍ୟ ସଂସଦ ତରଫରୁ ଏହା ପ୍ରକାଶ ପାଇଲା। ଧୀରେ ଧୀରେ ସେ ସମୟର ବିଶିଷ୍ଟ ଲେଖକମାନଙ୍କ ସହ ସମ୍ପର୍କ ବଢ଼ିଲା। ସାହିତ୍ୟ ଆଲୋଚନାମାନଙ୍କରେ ସାମିଲ ହେଲି। ପ୍ରଥମେ ଗଳ୍ପ ଲେଖିଲି। ପରେ ପରେ ଉପନ୍ୟାସ ଲେଖିଲି। ସେହିଦିନରୁ ଆରମ୍ଭ ହୋଇଥିବା ଲେଖନୀ ଓ ସାହିତ୍ୟ ରୁଚି ଆଜି ଜୀବନର ଶେଷାର୍ଦ୍ଧ ପର୍ଯ୍ୟନ୍ତ ଅବ୍ୟାହତ ରହିଛି।

ପ୍ରଶ୍ନ: ଆପଣଙ୍କ ଗଳ୍ପରେ ଗ୍ରାମୀଣ ଶବ୍ଦର ବ୍ୟବହାର ଅଧିକ ରହିଛି।

ଉତ୍ତର: ହଁ, ମୋର ଜନ୍ମ ଗାଁରେ। ମୋର ଗଳ୍ପ ଚରିତ୍ରମାନେ ମଧ୍ୟ ଗ୍ରାମାଞ୍ଚଳର। ଏଣୁ ସ୍ୱଭାବିକ ଭାବେ ଏହି ଶବ୍ଦ ବ୍ୟବହାର ହୋଇଛି।

ପ୍ରଶ୍ନ: ଆପଣଙ୍କ ଗଳ୍ପ ଉପନ୍ୟାସ କଳ୍ପନା ନା ବାସ୍ତବ ?

ଉତ୍ତର: ଅତ୍ୟନ୍ତ ବାସ୍ତବ ଓ ନିଛକ, କଳ୍ପନା ନ ଥାଏ କେବଳ ଦେହ ପରିମାଟିରେ ମୋ ନିଜ ଭଙ୍ଗିଟି ଥାଏ।

ପ୍ରଶ୍ନ: ବର୍ତ୍ତମାନ ଲୋକେ ସହରାଭିମୁଖୀ ହେଉଥିବା ବେଳେ ଆପଣ କେତୋଟି ଗଳ୍ପରେ ଗାଁକୁ ଫେରାଇ ନେଇଛନ୍ତି ଚରିତ୍ରମାନଙ୍କୁ ?

ଉତ୍ତର: ହଁ, ମୋର ଅନେକ ଚରିତ୍ର ଗ୍ରାମାଞ୍ଚଳ ଏବଂ ଘଟଣାକ୍ରମେ ସେମାନେ ସହରାଭିମୁଖୀ ହୋଇଛନ୍ତି ଏବଂ ପରେ ଗାଁକୁ ଫେରିଛନ୍ତି ବା ଘରବାହୁଡ଼ା ହୋଇଛନ୍ତି କେବଳ ପ୍ରାୟଶ୍ଚିତ ଭିତ୍ତିରେ।

ପ୍ରଶ୍ନ: ଆପଣଙ୍କ 'ନକ୍ସଲ' ଉପନ୍ୟାସ ସମ୍ପର୍କରେ କିଛି କୁହନ୍ତୁ।

ଉତ୍ତର: ନକ୍ସଲ ଗୋଟିଏ, ଚେତନା, ଏକ ମହାଚେତନା। ଯାହା ପ୍ରାକ୍ ସ୍ୱଧୀନତା ଅମଳରୁ ଆମେ ଦେଖିଛୁ। ଇତିହାସ ପଢ଼ିଛୁ। ମୋର ଭଉଣୀ ଅଧ୍ୟାପିକା ସୌଦାମିନୀ ପାଇକରାୟଙ୍କ କଥାନୁସାରେ 'ନକ୍ସଲଙ୍କ ନାୟକ' ବହିଟି ଜେଏନ୍‌ୟୁରୁ ଫେରିଲା ପରେ ଲେଖିଲି। 'ରିଭୋଲ୍ୟୁସନ୍ ଅଫ୍ କମ୍ୟୁନିଜମ୍ ଇନ୍ ଇଣ୍ଡିଆ' ଏଇ ଶୀର୍ଷକ ଗବେଷଣା ବିଷୟ ନେଇ ଶାନ୍ତିନିକେତନରୁ କିଛି ବନ୍ଧୁ ଆସିଥିଲେ। ଜଣେ ବନ୍ଧୁ ତାଙ୍କର ଜଣେ ମାଉସୀ ପୁଅ ଭାଇ ସେ ଭାରତୀୟ ସିଭିଲ ସର୍ଭିସ ପାଇଁ ପ୍ରସ୍ତୁତ ଥିଲାବେଳେ ଶାନ୍ତିନିକେତନ ଯାଆନ୍ତି ସେତେବେଳ ଅବଧି କୋଲକାତାର

ନାଲିବଡି ଅଞ୍ଚଳ, କାରଖାନାର କୁନ୍ଦା, ଗଙ୍ଗାନଦୀରେ ଭାସିଯାଉଥିବା ଶବମାନଙ୍କୁ କାଉମାନେ ଖୁମ୍ପୁଥିବା ଦୃଶ୍ୟ ବେଲୁର୍‌ରେ ବିବେକାନନ୍ଦଙ୍କର ସଂରକ୍ଷିତ ହୋଇଥିବା ଗେରୁମାଟିଆ ବସ୍ତ୍ର ଚିକାଗୋରୁ ଫେରିଥିବା ଧର୍ମ ପରେ ସମସ୍ତ ପରିଚ୍ଛେଦ ଏବଂ ଶେଷ ଶୃଙ୍ଗାର ନେଇଥିବା ମାଟିରୁ ଗୋଟିଏ ବିରାଟ ବିଲ୍ୱବୃକ୍ଷର କଳେବର ପ୍ରାୟ। ଅମର୍ତ୍ତ୍ୟ ସେନ୍‌ଙ୍କର କେତେକ ଅର୍ଥବିଜ୍ଞାନ ଉପରେ ସବୁ ଶୁଣିବା ପରେ ପରସ୍ତ ପରସ୍ତ ହୋଇ ଭାଡି ଭିତରେ ଥୁଆ ହୋଇଥିବା ନୀତିମାନଙ୍କୁ ଆଉ ସୃଷ୍ଟି ନ କରିବା ଜୀବନକୁ ସେହି ଦଳୀୟମାନଙ୍କ ସକାଶେ ଉତ୍ସର୍ଗ କରିଦେବା ହିଁ ସାର ହେବ। ଏହା ଭାବି ଗବେଷଣାରୁ ନିଜକୁ ବଞ୍ଚିତ କଲେ। ଗାଁରୁ ବସ୍ତି, ବସ୍ତିରୁ ଜଙ୍ଗଲ ଭିତରେ କିଛି ଆଦିବାସୀଙ୍କ ଜନଜୀବନ ସାଥୀରେ ସାମିଲ ହୋଇଗଲେ। ଜଣେ ଗବେଷଣା ପାଇଁ ଆଗେଇ ଅସିଥିବା ମଣିଷ ବା ବ୍ୟକ୍ତିର ଘଟଣା ତା'ପରେ ପ୍ରକୃତ ପକ୍ଷେ ଦେଖିବାକୁ ଗଲେ ଆଦିବାସୀମାନଙ୍କୁ ସବୁ ଅଧିକାର ଦିଆଯାଉଛି ସତ କିନ୍ତୁ ବାସ୍ତବରେ ଏମାନେ ସେସବୁ ସୁବିଧା ପାଆନ୍ତି ନାହିଁ। ସର୍ବୋଚ୍ଚ ନମ୍ବର ରଖୁଥିବା ଛାତ୍ରଟି ଆର୍ଥିକ ଅଭାବରେ ଅଧିକ ଶିକ୍ଷା ଗ୍ରହଣ କରିବାକୁ ସହାୟତା ପାଉନାହିଁ। ଗୀତାର, ବେଦର ସବୁକଥା ଏକାକାର ହେଉଥିବା ବେଳେ ସେତିକି ପଛକୁ ଭିଡ଼ି ଧରୁଥିଲେ ଆଦିବାସୀ ମାନେ। ଏ କେମିତି ଗୋଟିଏ ଚେତନା ଯାହାକୁ ଧରି ବ୍ୟକ୍ତି ଲକ୍ଷ ପ୍ରଦାନ କାହିଁକି କରେ, କରୁଛି। ମୁଁ ପାଇଛି ଏହି ଚେତନାକୁ। ସେଇଠୁ ସୃଷ୍ଟି 'ନକ୍ସଲ'।

ପ୍ରଶ୍ନ: ଆପଣଙ୍କ "ନକ୍ସଲ" ଉପନ୍ୟାସ ଓଡ଼ିଆ ଚଳଚ୍ଚିତ୍ର ପାଇଁ ପ୍ରସ୍ତୁତ ହେବା ଶୁଣିଲୁ? ଆପଣଙ୍କୁ କେମିତି ଲାଗୁଛି ?

ଉତ୍ତର: ହଁ, ଏହି ଉପନ୍ୟାସଟି ଚଳଚ୍ଚିତ୍ର ହେବାକୁ ଯାଉଛି। ଏକଥା ମୋତେ ଅନୁମତି ନେବାବେଳେ ଜାଣିଲି। ଏହା ଖୁସିର କଥା ଏବଂ ଜଣେ ଲେଖକ ପାଇଁ ଗୌରବର କଥା ଯେ ତା'ର ଲେଖାଟି ପାଠକଙ୍କ ମନକୁ ଛୁଇଁ ଏବେ ଦର୍ଶକଙ୍କ ପାଖକୁ ଯାଉଛି। ଆଶା କରୁଛି ଦର୍ଶକ ଉପନ୍ୟାସଟିକୁ ଗ୍ରହଣ କଲାପରି ଚଳଚ୍ଚିତ୍ରକୁ ମଧ୍ୟ ଗ୍ରହଣ କରିବେ।

ପ୍ରଶ୍ନ: ଆପଣ ଅନେକ ସାମାଜିକ ଓ ରାଜନୈତିକ ସମସ୍ୟାମାନଙ୍କୁ ନେଇ ସମାଲୋଚନା ମଧ୍ୟ ଲେଖିଛନ୍ତି। 'ବ୍ୟାଜସ୍ତୁତି' ଏହି ସମାଲୋଚନାମାନଙ୍କର ଏକ ସଂଗ୍ରହ, ଏଭଳି ଏକ ନାଁ ପୁସ୍ତକର କାହିଁକି ଦେଲେ ?

ଉତ୍ତର: ସାମାଜିକ, ରାଜନୈତିକ ଦୁର୍ନୀତି ବଡ଼ ସ୍ପର୍ଦ୍ଧିତ ରାହାରେ ମୁଁ ଉପସ୍ଥିତ କରିଛି। ମୋର 'ବ୍ୟାଜସ୍ତୁତି' ସାମାଜିକ ଲେଖାରେ ଅନେକ ସାମାଜିକ ସ୍ତୁତି ଗାନ

କରିଛି, ଯେପରି ବିଧାୟକଙ୍କୁ ବୀମା, 'ସୁନାବେଣ୍ଡିଆ ଚାମର' ଆଦି। ଏହି ସ୍ତୁତିମାନଙ୍କରେ ନିନ୍ଦା, ନିନ୍ଦାରେ ସ୍ତୁତି ହୋଇଛି। ଏଣୁ ବ୍ୟାଜସ୍ତୁତି ଦେଇଛି।

ପ୍ରଶ୍ନ: ସମାଲୋଚନା ନାଁରେ ବ୍ୟକ୍ତିଗତ କୁତ୍ସା ପ୍ରକାଶ ପାଉଥିବା ଆଜିକାଲି ଦେଖିବାକୁ ମିଳୁଛି। ଏ ସମ୍ପର୍କରେ କ'ଣ କହିବେ ?

ଉତ୍ତର: ଯେଉଁମାନେ ରାଜନୈତିକ ଚାଟୁକାର, ଅନୈତିକ କାର୍ଯ୍ୟ କରନ୍ତି ସେମାନଙ୍କ ଉପରେ ହିଁ ଲେଖିଛି।

ପ୍ରଶ୍ନ: ଆପଣଙ୍କ ଆଉ କେଉଁ କେଉଁ ପୁସ୍ତକ ବର୍ତ୍ତମାନ ପ୍ରକାଶନ ଅପେକ୍ଷାରେ ଅଛି ?

ଉତ୍ତର: ହଁ, କିଛି ପୁସ୍ତକ ଯନ୍ତ୍ରସ୍ଥ। ଯେପରି 'ମୁଁ ରଣପୁର କହୁଛି', 'ପୃଥ୍ୱୀ ବନ୍ଧକୀ' ଉପନ୍ୟାସ ଲେଖା ଚାଲିଛି। 'କଥା ଚହଟିଲା', 'ଟୁପୁର ଟାପର' ଆଦି ପ୍ରକାଶ ଅପେକ୍ଷାରେ।

ପ୍ରଶ୍ନ: ଆଉ କ'ଣ ଲେଖିବା ଯୋଜନା ଅଛି ?

ଉତ୍ତର: 'ନାମ୍ୱାର୍କି' ଉପନ୍ୟାସ ଅଧା ହୋଇଛି, ତାକୁ ସାରିବି।

ପ୍ରଶ୍ନ: ଆପଣଙ୍କ 'ଲୁଣ' କାହାଣୀ ବହୁ ଚର୍ଚ୍ଚିତ, ଏ ସମ୍ପର୍କରେ କିଛି କହିବେ ?

ଉତ୍ତର: କାହାଣୀ ଚରିତ୍ର ଗୋଟିଏ ଗାଁର ବୁଢ଼ୀ। ଗାଁଟା ସାରା ସମସ୍ତଙ୍କୁ ସବୁବେଳେ ବାଛିବା ଯେମିତି ତା'ର ଧର୍ମ। ଦୁର୍ନୀତି, ଧର୍ମ ସବୁ କଥା ବୁଢ଼ୀଟି ସବୁବେଳେ କହେ। ଲୁଣ ଯେପରି ଅଧିକ ପଡିଲେ ଖାଦ୍ୟ ଖରାପ ଲାଗେ ସେହିଭଳି କମ୍ ପଡ଼ିଲେ ବି ଖାଦ୍ୟ ଖରାପ ଲାଗେ। ଏହି ଅର୍ଥରେ ବୁଢ଼ୀଟି ଗାଁ ଲୋକଙ୍କ ପାଇଁ ଅସହ୍ୟ ହେଲା। ତାକୁ ଗାଁରୁ ବିତାଡ଼ିତ କରାଗଲା।

ପ୍ରଶ୍ନ: ବର୍ତ୍ତମାନ ପିଢ଼ିର ଲେଖକଙ୍କ ପାଇଁ ଅପଣଙ୍କ ବାର୍ତ୍ତା କ'ଣ ?

ଉତ୍ତର: ମାଟିର ମଣିଷମାନଙ୍କ ପାଇଁ, ମାଟି ପାଇଁ, ଜୀବନ ପାଇଁ ଯଦି ସେମାନଙ୍କର ସୃଷ୍ଟି ମୁଖର ହୁଅନ୍ତା ତେବେ ସାହିତ୍ୟ ଯୁଗଧର୍ମୀ ହୋଇପାରନ୍ତା। ତେଣୁ କବି ଲେଖକଙ୍କୁ ଏତିକି ଅନୁରୋଧ ସେମାନେ ମାଟିର କଥା ଲେଖନ୍ତୁ।





# କଥିତ ଭାଷାର ନିକଟବର୍ତ୍ତୀ ହେଉ ଲିଖିତ ଭାଷା

## ଡ଼ଃ ମହେନ୍ଦ୍ର ମିଶ୍ରଃ

**ଲୋ**କ ସାହିତ୍ୟ, ବିଶେଷକରି ଆଦିବାସୀ ସାହିତ୍ୟ ଉପରେ ତାଙ୍କର ରହିଛି ଗଭୀର ଅଧ୍ୟୟନ। ଗବେଷକ ଡ଼ଃ ମହେନ୍ଦ୍ର ମିଶ୍ରଙ୍କ ମତରେ ଲିଖିତ ଭାଷା ସଦାସର୍ବଦା କଥିତ ଭାଷାର ନିକଟବର୍ତ୍ତୀ ହେବା ଦରକାର। ତାଙ୍କ ସହ ହୋଇଥିବା ଆଳାପର କିଛି ଅଂଶ।

ପ୍ରଶ୍ନ: ଲୋକ ସାହିତ୍ୟ ଓ ସଂସ୍କୃତିକୁ ନେଇ ଆପଣଙ୍କ ଦୀର୍ଘଦିନର ଗବେଷଣା ରହିଛି। କହିବେ କି ଲୋକସଂସ୍କୃତି ଚର୍ଚ୍ଚା ମୁଷ୍ଟିମେୟ ଲୋକଙ୍କ ମଧ୍ୟରେ ସୀମିତ କାହିଁକି ?

ଉତ୍ତର: ବିଶ୍ୱବିଦ୍ୟାଳୟ ଓ କଲେଜ ସ୍ତରରେ ଲୋକସାହିତ୍ୟ ଓଡ଼ିଆ ଭାଷା ସାହିତ୍ୟର ଅଙ୍ଗୀଭୂତ। ଏଣେ ଲୋକସଂସ୍କୃତି ମାନବ ବିଜ୍ଞାନର ଅଂଶବିଶେଷ। ମାନବ ବିଜ୍ଞାନ କି ସମାଜ ବିଜ୍ଞାନ ସଂସ୍କୃତିର ଭୌତିକ ଓ ସାମାଜିକ ପକ୍ଷରୁ ସିନା ଦେଖେ, ଏହାର ଅଭିବ୍ୟକ୍ତି ଓ କଳା ପକ୍ଷକୁ ତା' ଶୃଙ୍ଖଳା ଭିତରେ ସେ ଦେଖେ ନାହିଁ। ଯେଉଁ ଜ୍ଞାନ ସ୍କୁଲ, କଲେଜ ଓ ବିଶ୍ୱବିଦ୍ୟାଳୟରେ ଓଡ଼ିଶାରେ ଚର୍ଚ୍ଚିତ ନୁହେଁ କିମ୍ବା ଅଳ୍ପ ଆଲୋଚିତ, ତାହାର ବିକାଶ ସମ୍ଭବ ନୁହେଁ। ତେଣୁ ମୁଷ୍ଟିମେୟ ଲୋକ ଏହି ଗବେଷଣାରେ ଅଛନ୍ତି। ଜ୍ଞାନ ସାଧନା ଲୋକାଭିମୁଖୀ ହେଲେ ଓ ନିରକ୍ଷରଙ୍କୁ ଶିକ୍ଷିତ ଅଧିକା ଜାଣିବାକୁ ଚେଷ୍ଟାକଲେ ଏହାର ପ୍ରଚାର ପ୍ରସାର ବଢ଼ିବ।

ପ୍ରଶ୍ନ: ଲୋକସାହିତ୍ୟରେ ଲିଖିତ ଭାଷା କଥିତ ହେବା ଠିକ୍ ନା ଶୁଦ୍ଧ ଓଡ଼ିଆ ?

ଉତ୍ତର: ଲୋକସାହିତ୍ୟରେ ଲିଖିତ ଭାଷା କଥିତ ଭାଷାର ନିକଟବର୍ତ୍ତୀ ହେବା ଦରକାର। ଶୁଦ୍ଧ ଓଡ଼ିଆରେ ଲେଖିବାରେ ଆପତ୍ତି ନାହିଁ। ଯଦି ଆପଣ ଉଚ୍ଚାଙ୍ଗ ପ୍ରବନ୍ଧ ଲେଖୁଛନ୍ତି ବିଶ୍ୱବିଦ୍ୟାଳୟର ଚର୍ଚ୍ଚା ପାଇଁ ତେବେ ସେଇଟି ଅଳଙ୍କାରିକ ବା ଶୁଦ୍ଧ ଓଡ଼ିଆ ଲେଖନ୍ତୁ। ଯଦି ସହଜ ଭାବରେ ଲେଖିଲେ ଯାହାଠୁ ଆସିଥିବା ଜ୍ଞାନର ପରିଚର୍ଚ୍ଚା ପୁଣି ତାଙ୍କ ପାଖରେ ପହଞ୍ଚାଇବା ଦାୟିତ୍ୱ ଗବେଷକଙ୍କର ଅଛି, ତେବେ ଲୋକଙ୍କ କଥିତ ଭାଷାରେ ଲେଖାହେବା ଆବଶ୍ୟକ। ଗୋପବନ୍ଧୁ, ନୀଳକଣ୍ଠ, ପ୍ରମୁଖ ଲୋକଭାଷାରେ ଲେଖିଲେ। ଆଧୁନିକ ଓଡ଼ିଆ କବିତା ଧାନସାଉଁଟା ଝିଅ କି ମହୁଲ ବଣର ଭାଷାକୁ ଆପଣାର କଲା। ଏହା ନିଜ ପ୍ରକାଶ ରୁଚି ଉପରେ ନିର୍ଭରକରେ।

ପ୍ରଶ୍ନ: ଆପଣ ଲୋକସାହିତ୍ୟ ପ୍ରତି ଏତେ ଆଗ୍ରହୀ ହେଲେ କିପରି ?

ଉତ୍ତର: ମୁଁ ଓଡ଼ିଆ ସାହିତ୍ୟର ଆଧୁନିକ ଦିଗ ଓ ପାଶ୍ଚାତ୍ୟ ସାହିତ୍ୟ ଏବଂ ଦର୍ଶନ ପ୍ରତି ଆଗ୍ରହୀ ଥିଲି। ମୁଁ ଯେହେତୁ ଓଡ଼ିଆର ଉଚ୍ଚତର ଗବେଷଣା କରିବି ଓ ମୁଁ କଳାହାଣ୍ଡିର ଗାଁ ଛାଡି କୋଉଠି ଯାଇ ପାରିବିନାହିଁ। ତେଣୁ ମୁଁ ଲୋକସଂସ୍କୃତି ଓ ଲୋକ ସାହିତ୍ୟରେ ଗବେଷଣା କରିବା ପାଇଁ ମୋର ଗୁରୁ ଡଃ ପ୍ରଫେସର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ଦିଗ୍‌ଦର୍ଶନ ଦେଲେ। ସେ ଗାଇଡ୍ କରି ନ ଥିଲେ ମୁଁ ହୁଏତ ଲୋକ ସାହିତ୍ୟ/ସଂସ୍କୃତି ଚର୍ଚ୍ଚାର ପ୍ରବୃତ୍ତ ନ ହୋଇ ଓଡ଼ିଆ ନାଟକ/ କବିତା କିମ୍ବା ଉପନ୍ୟାସରେ ଚର୍ଚ୍ଚା କରିଥାନ୍ତି।

ପ୍ରଶ୍ନ: ଲିଖିତ ଓ ମୌଖିକ ଭାଷାରେ ଭିନ୍ନତା ଏବଂ ବିଶେଷତା କ'ଣ ?

ଉତ୍ତର: ଲିଖିତ ସାହିତ୍ୟ ବ୍ୟକ୍ତିଗତ, ମୌଖିକ ସାହିତ୍ୟରେ ଶ୍ରୋତା ଓ ବକ୍ତା ଏକାଠି, ପରସ୍ପର ଆଦାନ ପ୍ରଦାନଶୀଳ। ଯାହା ଥରେ ଲିଖିତ ହେଲା ତାହା ବିଶ୍ଳେଷଣକ୍ଷମ ଓ ସଂରଚିତ। କଥିତ ସାହିତ୍ୟର କଥିତ ରୂପ ଥିଲା ଯାଏ ତାହା ମନ୍ତବ୍ୟ ମାତ୍ର।

ପ୍ରଶ୍ନ: ଓଡ଼ିଆ ଆଦିବାସୀ ସାହିତ୍ୟ ସମ୍ପର୍କରେ କି ଧାରଣା ରହିଛି ?

ଉତ୍ତର: ଓଡ଼ିଶାରେ ଆଦିବାସୀଙ୍କ ଉପରେ ଲେଖା ଯାଇଥିବା ଗଳ୍ପ, ଉପନ୍ୟାସକୁ ବା କବିତାକୁ ଆଦିବାସୀ ନିଜେ ଲେଖିଥିବା ବା କହିଥିବା ସାହିତ୍ୟ ନୁହେଁ। ଏହା ଆମ ଲେଖକଙ୍କ ପର୍ଯ୍ୟବେକ୍ଷଣ ଓ ସଂଗ୍ରହରୁ ସୃଷ୍ଟ କଳ୍ପନା ବାସ୍ତବ ମିଶ୍ରିତ ଉପନ୍ୟାସ ବା ଗଳ୍ପ। ଏହା ଅଣଆଦିବାସୀଙ୍କ ମୁଳକରେ ଆଦିବାସୀଙ୍କୁ ଚିହ୍ନାଇବାର ଏକ ମାଧ୍ୟମ। ଆଦିବାସୀ ନିଜର ମୌଖିକ ପରମ୍ପରାର ସୃଷ୍ଟ ସାହିତ୍ୟ ସେମାନଙ୍କ ନିଜର ଅଭିବ୍ୟକ୍ତି।

ପ୍ରଶ୍ନ: ଆଦିବାସୀ ସମାଜରେ ଆଦିବାସୀ ସାହିତ୍ୟର ଭୂମିକା କ'ଣ ଓ ଓଡ଼ିଶାରେ ଆଦିବାସୀ ସାହିତ୍ୟର ଭୂମିକା କ'ଣ ?

ଉତ୍ତର: ଆଦିବାସୀ ସମାଜରେ ଆଦିବାସୀ ନିଜର ସାହିତ୍ୟର ମୌଖିକ ପରମ୍ପରା ରୂପେ ମୂଲ୍ୟ ରହିଛି। ଲେଖିବା ଓ ପଢ଼ିବା ଆଗରୁ ଆଦିବାସୀ ସମାଜରେ ନ ଥିଲା। ଏବେ ତାହା ଆସିଛି। ହେଲେ ଅଣଆଦିବାସୀ ସଂସ୍କୃତିକୁ ନିଜେ ବେଶି ଘୃଣା କରିବା ଶିଖିଯାଇଛି। ଏହି ଶିଖିବା କାମଟା ଉଚ୍ଚଶିକ୍ଷା ଓ ଉଚ୍ଚସଂସ୍କୃତିର ଲୋକେ କରାଇଛନ୍ତି। ତେଣୁ ବାଡ଼ ସୃଷ୍ଟି ହୋଇଛି।

ପ୍ରଶ୍ନ: ଆଦିବାସୀ ଆଖ୍ୟାନ ଉପରେ ଆପଣ କ'ଣ କହିବାକୁ ଚାହାଁନ୍ତି ?

ଉତ୍ତର: ଆଦିବାସୀ ଆଖ୍ୟାନ ବହୁବର୍ଣ୍ଣି। ସଂସ୍କୃତି ପାଳନ ହେଲେ ବାକ୍ୟ ଆଖ୍ୟାନର କଥା ବାହାରେ। ଓଡ଼ିଆ ଆଦିବାସୀ ଆଖ୍ୟାନ ବହୁତ ଶକ୍ତିଶାଳୀ। ଏହା ବିଶ୍ୱର ଯେ କୌଣସି ଆଖ୍ୟାନ କାବ୍ୟ ପରି ଗୁରୁତ୍ୱପୂର୍ଣ୍ଣ।

ପ୍ରଶ୍ନ: ଆଦିବାସୀଙ୍କ ମୌଖିକ ସାହିତ୍ୟରେ ସାମାଜିକ ନ୍ୟାୟର ଚିତ୍ର ଅଛି କି ?

ଉତ୍ତର: ଯିଏ ଶୋଷିତ ହୁଏ, ସମାଜିକ ନ୍ୟାୟରୁ ବଞ୍ଚିତ ହୁଏ, ସିଏ ତା' ଶୋଷଣର କାରଣ ସ୍ୱରୂପକୁ ବି ବୁଝେ। ସେ ନିଜ ଗୀତରେ ଏହି ଶୋଷଣ ଓ ସାମାଜିକ ଅନ୍ୟାୟର କଥା ଗାଏ। ଯେମିତି କି କିର୍ପି ମେଲାକା ବୋଲି ଝିଅଟିଏ ଗାଏ – 'ତୁଇ ମୁନୁଷ ମୁଇଁ ମୁନୁଷ କାଏ କରୁ ଏତେ ଡ଼ରାଣ।'

ପ୍ରଶ୍ନ: ଏବେ ମଧ୍ୟପ୍ରଦେଶ ସରକାର ଆପଣଙ୍କୁ 'ବୀର ଶଙ୍କର ଶାହା ରଘୁନାଥ ଶାହା ରାଷ୍ଟ୍ରିୟ ସମ୍ମାନ' ପ୍ରଦାନ କରିଛନ୍ତି। ସେ ସମ୍ପର୍କରେ କ'ଣ କହିବେ ?

ଉତ୍ତର: ଏହି ସମ୍ମାନ ମୋତେ ମୋର ଏବେ ଯାଏ କରିଥିବା ଆଦିବାସୀ ସାହିତ୍ୟ ଓ କଳା ଗବେଷଣା ପାଇଁ ମିଳିଛି। ମଧ୍ୟପ୍ରଦେଶ ଆଦିବାସୀ କଲ୍ୟାଣ ବିଭାଗ ତରଫରୁ ଏହା ମୋତେ ଦିଆଯାଇଥିଲା। ମୋ ଜାଣିବାର ସାରା ଭାରତରେ ଆଦିବାସୀ ସଂସ୍କୃତି କଳା ଓ ସାହିତ୍ୟ ସାଧନା ପାଇଁ ଏହିପରି ପୁରସ୍କାର ଦେବା ପ୍ରଥମ। ୨୦୦୮ରେ ଆରମ୍ଭ ଏହି ପୁରସ୍କାରର ପ୍ରଥମ ଅଧିକାରୀ ଜଣେ ମଣିପୁରୀ ଆଦିବାସୀ କବି ଓ ୨୦୦୯ ବର୍ଷ ପାଇଁ ମୁଁ ଓ ମହାରାଷ୍ଟ୍ରର ଜଣେ ଓ୍ୱର୍ଲି ସମ୍ପ୍ରଦାୟର ପାରମ୍ପରିକ ଚିତ୍ରଶିଳ୍ପୀ।





# କବିତା ମାଟି ତଳର ମୂଲ୍ୟବାନ ଖଣି

## ଏକାଦଶୀ ପ୍ରସାଦ ବୋଇତାଇ:

**ଗ**ଳ୍ପ, ନାଟକ, ଉପନ୍ୟାସ ସର୍ବୋପରି କବିତା ସାହିତ୍ୟରେ ସବୁ ମୌଳିକ ବିଭାଗରେ ଲେଖନିଚାଳନା କରିଛନ୍ତି ଏକାଦଶୀ ପ୍ରସାଦ ବୋଇତାଇ (ଚକ୍ରୀ)। ପ୍ରଥମେ ସେ ଲେଖୁଥିଲେ କବିତା। ୧୯୭୦ରେ ତାଙ୍କର ପ୍ରଥମ କବିତା ସଂକଳନ 'ସ୍ମୃତି, ମୋ ପରାଜୟର' ପ୍ରକାଶ ପାଇଥିଲା। ପରବର୍ତ୍ତୀ ସମୟରେ ସେ ଗଳ୍ପ ଲେଖାରେ ହାତ ଦେଇଥିଲେ। ତା'ପରେ ନାଟକ ଓ ଉପନ୍ୟାସ। ଅଦ୍ୟାବଧି ତାଙ୍କର ୧୫ଟି କବିତା ସଂକଳନ, ୭ଟି ଉପନ୍ୟାସ, ୪ଟି ଗଳ୍ପ ସଂକଳନ ଓ ୫ଟି ନାଟକ ପ୍ରକାଶ ପାଇସାରିଛି। ରାଜ୍ୟସ୍ତରୀୟ କୌଣସି ସରକାରୀ ସମ୍ମାନରେ ସମ୍ମାନିତ ହୋଇ ନଥିଲେ ମଧ୍ୟ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ତାଙ୍କୁ ସମ୍ମାନିତ କରାଯାଇଛି।

ପ୍ରଶ୍ନ: ସାହିତ୍ୟର କେଉଁ ଦିଗ ପ୍ରତି ଆପଣଙ୍କ ଅଧିକ ଦୁର୍ବଳତା ?

ଉତ୍ତର: ସାହିତ୍ୟର ଯେତେଗୁଡ଼ିଏ ବିଭାଗ ଅଛି ତନ୍ମଧ୍ୟରେ କବିତା ବିଭାଗ ପ୍ରତି ମୋର ଅଧିକ ଦୁର୍ବଳତା । ତା'ର କାରଣ ହେଲା କବିତା ଏକ ସୂକ୍ଷ୍ମକଳା ଯାହା ଚୁମ୍ବକରେ ସବୁ କଥା କହିପାରେ । ଯେମିତି ଜଣେ ଚିତ୍ରଶିଳ୍ପୀ ଗୋଟିଏ ନାରୀର ଗଣ୍ଡଦେଶରେ କଳାଜାଇ ବୁନ୍ଦାଟିଏ ଦେଇ ତାରି ମାଧ୍ୟମରେ ବହୁ କଥା କହି ଦେଇଥାଏ, ସେହିପରି କବିଟିଏ ତା'ର ଶବ୍ଦ ମାଧ୍ୟମରେ ବହୁ କଥା କହିଦେଇଥାଏ ଯାହା ପରବର୍ତ୍ତୀ ସମୟରେ ଗବେଷକମାନଙ୍କ ପାଇଁ ବହୁ ଉପାଦେୟ ଖୋରାକ ଯୁଟାଇଥାଏ ।

ପ୍ରଶ୍ନ: କବିତାରେ ଆପଣ କ'ଣ ସବୁ କହିଦେଇପାରନ୍ତି ?

ଉତ୍ତର: କବିତାରେ ଯେତେ କଥା କୁହାଯାଏ ତା'ଠାରୁ ଖୁବ୍ ବେଶି ନ କହିଥିବା କଥା ଲୁଚି ରହିଥାଏ ଏବଂ ତାହାସବୁ ପାଠକମାନଙ୍କ ପାଇଁ ଓ ଗବେଷକମାନଙ୍କ ପାଇଁ ଚିନ୍ତାର ଉଦ୍ରେକ କରାଏ । ଭଗବତ୍‌ଗୀତା ଦେଖନ୍ତୁ ଯାହାର ବହୁ ଟୀକା ଲେଖାସରିଥିଲେ ମଧ୍ୟ ଆହୁରି ଅନେକ କିଛି କହିବାର ବାକି ଅଛି । କବିତା ଏକ ମାଟି ତଳର ଗଚ୍ଛିତ ମୂଲ୍ୟବାନ ଖଣି । ତାକୁ ଯେତେ ଖୋଳୁଥିବ ସେତେ ବାହାରୁଥିବ ।

ପ୍ରଶ୍ନ: ଆପଣ କବିତାର ବିଷୟବସ୍ତୁ ସଂଗ୍ରହ କରନ୍ତି କେଉଁଠୁ ?

ଉତ୍ତର: ଦେଖନ୍ତୁ, ବିଷୟବସ୍ତୁଗୁଡ଼ିକ ହାଉଜାଉ ହୋଇ ପ୍ରତିଦିନ ପ୍ରତି ମୁହୂର୍ତ୍ତରେ ଆପଣଙ୍କ ଚାରିକଡରେ ଖେଳେଇ ହୋଇ ବୁଲୁଛନ୍ତି । ସେଗୁଡ଼ିକ ଧରି ରଖି ମନ ଭିତରେ ତା'ର ତର୍ଜମା କରିବା, ତାହା ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ହେବାକୁ ଚେଷ୍ଟାକରିବା ହେଉଛି କବିର ଧର୍ମ । ତାହାର ନିର୍ଯାସ ହେଉଛି କବିତା । ଆନ୍ତରିକତାର ସହିତ କୌଣସି ଜିନିଷକୁ ଭଲ ନ ପାଇଲେ କବିତାର ସ୍ଫୁରଣ ହୁଏନାହିଁ ।

ପ୍ରଶ୍ନ: ସାହିତ୍ୟଠାରୁ ପାଠକ କ'ଣ ଦୂରେଇ ଯାଉଛନ୍ତି ?

ଉତ୍ତର: ମୋର ଯାହା ମନେହୁଏ ଏ ଜଗତୀକରଣ ଓ ବିଜ୍ଞାନର ଜୟଯାତ୍ରା ଯୁଗରେ ଓଡ଼ିଆ ସାହିତ୍ୟର ଗଳ୍ପରେ ଓ ଉପନ୍ୟାସରେ ମରୁଡ଼ି ସୃଷ୍ଟି ହେବାକୁ ଯାଉଛି । ତା'ର କାରଣ ହେଲା ଏ ଯାନ୍ତ୍ରିକ ଯୁଗରେ ମଣିଷ ଏତେ କର୍ମବ୍ୟସ୍ତ ଯେ, ତାକୁ ଲମ୍ବା କାହାଣୀ ବା ଉପନ୍ୟାସ ପାଠ କରିବା ପାଇଁ ସମୟ ମିଳୁନି ।

ତେଣୁ ଚାହିଦା କମିଯିବାରୁ ସୃଷ୍ଟି ଧୀରେ ଧୀରେ କମିବାରେ ଲାଗିଛି। ପ୍ରତ୍ୟକ ଓଡ଼ିଆ ନିଜକୁ ଓଡ଼ିଆ ମନେକରି ନିଜର ମାତୃଭାଷା ପ୍ରତି ଆନ୍ତରିକତା ପ୍ରକାଶ କରିବା ଏକାନ୍ତ କାମ୍ୟ। କଥାରେ, କାମରେ, ଆଚରଣରେ, ବେଶ ପୋଷାକରେ, ବ୍ୟବହାରରେ ଓଡ଼ିଆତ୍ୱ ପ୍ରକାଶ କରିବା ବାଞ୍ଛନୀୟ। ତାହାହେଲେ ଓଡ଼ିଆ ସାହିତ୍ୟର ଉନ୍ନତି ହେବ।

ପ୍ରଶ୍ନ: ସାହିତ୍ୟିକ ଜୀବନ ଉତ୍‌ଥାନ ପତନ ଦେଇ ଗତିକରିଥାଏ। ସେଭଳି କୌଣସି ଅନୁଭବ ଆପଣଙ୍କର ଅଛିକି ?

ଉତ୍ତର: ସେହି ଅନୁଭବରୁ ହିଁ ମୋ ସାହିତ୍ୟ ଜୀବନ ଆରମ୍ଭ। ଖୁବ୍ ଡେରିରେ ଆର୍ଥାତ୍ ୧୯୬୦ ମସିହାରେ ମୁଁ ଲେଖାଲେଖି ଆରମ୍ଭ କରିଥିଲି। ତା'ର କାରଣ ଥିଲା ଅନେକ। ସେଥିମଧ୍ୟରୁ ମୁଖ୍ୟ କାରଣ ଥିଲା ବାପାଙ୍କ ପରେ ମୁଁ ଆମ ପରିବାରର ଥିଲି ଏକମାତ୍ର ରୋଜଗାରକ୍ଷମ ବ୍ୟକ୍ତି। ସେଥିପାଇଁ ସମସ୍ତ ଆର୍ଥିକ ଭାର ସମ୍ଭାଳିବାକୁ ପଡୁଥିଲା। ସମସ୍ତଙ୍କ ଦାୟୀତ୍ୱ ତୁଲାଇ ମଧ୍ୟ ସାଂସାରିକ କ୍ଷେତ୍ରରେ କିଛି ପ୍ରଶଂସା ନ ଥିଲା ବରଂ କୁତ୍ସାଥିଲା। ସେଥିରେ ମର୍ମାହତ ହୋଇ ମୁଁ ଦିନେ ନିରୋଳାରେ ବସି ସ୍ଥିରକଲି ଯେ ଯେଉଁ ସମୟରେ ମୁଁ ଅନ୍ୟମାନଙ୍କ ପାଇଁ ଖର୍ଚ୍ଚ କଲି ସେଇ ସମୟତକ ନିଜ ପାଇଁ ବ୍ୟୟ କରିଥିଲେ ଭଲ ହୋଇଥାନ୍ତା ଓ ସେଥିପାଇଁ ଏତେ ଅନୁତାପ କରିବାକୁ ପଡି ନଥାନ୍ତା। ତାହା ହିଁ ଥିଲା ମୋର କଲମ ଧରିବାର ସଂକଳ୍ପ। ସେହିଦିନଠାରୁ ମୁଁ ଆଉ ପଛକୁ ନ ଚାହିଁ ଲେଖାଲେଖିରେ ମନୋନିବେଶ କରିଛି।

ପ୍ରଶ୍ନ: ଆପଣ ଗୋଟିଏ ସାହିତ୍ୟ ସଂସଦର ସମ୍ପାଦକ ଅଛନ୍ତି। ଲେଖାଲେଖି ସହ ସାଙ୍ଗଠନିକ କାର୍ଯ୍ୟ ତୁଲାଉଛନ୍ତି କିପରି ?

ଉତ୍ତର: ସମ୍ପାଦକ ବା ସଂଗଠନ ହେଉଛି ସମଧର୍ମୀ ଲୋକମାନଙ୍କୁ ଏକାଠି କରିବା ଓ ସେମାନଙ୍କ ମଧ୍ୟରେ ଏକ ସମନ୍ୱୟ ଭାବ ସୃଷ୍ଟି କରିବା। ତାହାଦ୍ୱାରା ପରସ୍ପର ମଧ୍ୟରେ ଭାବଗତ ସମ୍ପର୍କ ସ୍ଥାପନ ହେବା ସହିତ ଏକ ସାମୂହିକ ଐକ୍ୟ ସ୍ଥାପନ ହୁଏ। ତନ୍ମଧ୍ୟରୁ ନିର୍ଗତ ହେଉଥିବା ଭାବର ପ୍ରସାର ଓ ପ୍ରଚାର ହେବା ଦ୍ୱାରା ଏକତ୍ରିତ ହୋଇଥିବା ସମସ୍ତ ପାଠକପାଠିକା ଲେଖକଲେଖିକାମାନେ ମାନସିକ ସ୍ତରରେ ଉନ୍ନତ ହେବାର ଭାବ ସଂଗ୍ରହ କରନ୍ତି। ତେଣୁ ସମ୍ପାଦକ ଦାୟିତ୍ୱ ତୁଲାଇବା ମୋର ସୃଷ୍ଟି ପ୍ରତି ବାଧକ ନ ହୋଇ ବରଂ ସାହାର୍ଯ୍ୟ କରେ, ଅବଶ୍ୟ ତାହା ବ୍ୟକ୍ତିର ବ୍ୟକ୍ତିତ୍ୱ ନେଇ କଥା।

ପ୍ରଶ୍ନ: ଗୋଦାବରୀଶ ସାହିତ୍ୟ ସଂସଦ ସମ୍ପର୍କରେ କିଛି ?

ଉତ୍ତର: ଗୋଦାବରୀଶ ସାହିତ୍ୟ ସଂସଦ ସମ୍ପର୍କରେ ତୁମ୍ଭକରେ ମୁଁ ଏତିକି କହିବି ଯେ ଆରମ୍ଭ ହୋଇ ଏହା ମଧ୍ୟରେ ଏହା ତା'ର ରୌପ୍ୟ ଜୟନ୍ତୀ ଓ ସୁବର୍ଣ୍ଣ ଜୟନ୍ତୀ ପାଳନ କରିସାରି ହୀରକ ଜୟନ୍ତୀ ଉପଲକ୍ଷେ ଆଗେଇ ଚାଲିଛି। ତା'ର ଇତିହାସ ବୟସ ଖୁବ୍ ଲମ୍ବ।

ପ୍ରଶ୍ନ: ଯୁବପିଢ଼ିଙ୍କୁ ଆପଣଙ୍କ ବାର୍ତ୍ତା–

ଉତ୍ତର: ଯୁବପିଢ଼ିମାନଙ୍କୁ ମୋର ଏକମାତ୍ର ବାର୍ତ୍ତା ହେଉଛି ଯେତେପାର ସେତେ ଓଡ଼ିଆ ଲେଖକ ସୃଷ୍ଟିକର, ତାହାହେଲେ ନିଜ ଭାଷାର ଉନ୍ନତି ସାଧନ ହେବ।





# ଚଳନ୍ତି ସମାଜର କଥା କହେ ସାହିତ୍ୟ

## ମାନସ ରଞ୍ଜନ ମହାପାତ୍ର:

ପ୍ରଥମେ ଶିଶୁସାହିତ୍ୟ ପରେ ସାହିତ୍ୟର ମୁଖ୍ୟସ୍ରୋତରେ ନିଜକୁ ସାମିଲ କରିଥିବା କବି ମାନସ ରଞ୍ଜନ ମହାପାତ୍ରଙ୍କ ଜନ୍ମ ଜଗନ୍ନାଥ ଧାମରେ ୧୯୬୦ ମସିହାରେ। କେବଳ କବିତା ନୁହେଁ, କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ ରଚନାରେ ମଧ୍ୟ ସେ କେବେ ମନୋନିବେଶ କରିଛନ୍ତି। ତେବେ ସେ ନିଜକୁ ସହଜ ମଣନ୍ତି କବିତାର ଛନ୍ଦରେ। ଅଦ୍ୟାବଧି ପ୍ରକାଶିତ ତାଙ୍କର ୪ଟି  କବିତା ସଂକଳନ, ଗୋଟିଏ ଗଳ୍ପ ସଂକଳନ ଓ ଗୋଟିଏ ଉପନ୍ୟାସ। ଅନୁବାଦ କ୍ଷେତ୍ରରେ ନିଜକୁ ଧୁରୀଣ ମଧ୍ୟ ସାବ୍ୟସ୍ତ କରିଛନ୍ତି ମାନସ ରଞ୍ଜନ। ଦଶରୁ ଅଧିକ ପୁସ୍ତକ ସେ ହିନ୍ଦୀ ଓ ଇଂଲିଶରୁ ଓଡ଼ିଆକୁ ଅନୁବାଦ କରିଛନ୍ତି।

ପ୍ରଶ୍ନ: ଆପଣଙ୍କ ସାହିତ୍ୟ ଜୀବନର ଆରମ୍ଭ କିପରି ?

ଉତ୍ତର: ସାହିତ୍ୟ ମୋ ରକ୍ତରେ ଥିଲା। ମୋ ଜେଜେବାପା ଜଣେ ପଣ୍ଡିତ ଥିଲେ। ସେ ବ୍ୟାକରଣ ପୁସ୍ତକ ଲେଖିଥିଲେ। ମୋ ନନା ସାମ୍ବାଦିକତା କରୁଥିଲେ, ତା'ସହିତ ସାହିତ୍ୟ ଲେଖୁଥିଲେ। ୧୯୭୩ ମସିହାରେ ମୁଁ ଚିଲିକା ପ୍ରଥମେ ଦେଖିଲି। ଚିଲିକା ମୋ ସାହିତ୍ୟ ରଚନାର ମୂଳ ଉତ୍ସ। ମୋ ରଚିତ କବିତାଗୁଡ଼ିକୁ ସାଙ୍ଗମାନଙ୍କୁ ଶୁଣାଇଲି। ସେମାନଙ୍କ ଉତ୍ସାହ, ଆଗ୍ରହ ମୋତେ ଅଧିକରୁ ଅଧିକ ଲେଖିବାକୁ ପ୍ରେରଣା ଦେଇଛି। ମୋର ବଡ଼ଅପା ପ୍ରଭାତ ନଳିନୀ ମହାପାତ୍ର ମୋ କବିତାର ପ୍ରଥମ ଶ୍ରୋତା। ସେ ଶୁଣିଲା, ପଢ଼ିଲା ଓ ଆହୁରି ଲେଖିବାକୁ କହିଲା। ଧୀରେ ଧୀରେ ଆଉ ଅଧିକ କବିତା ଲେଖିଲି। ୧୯୭୫ ମସିହାରେ 'ମୀନାବଜାର'କୁ କବିତାଟିଏ ପଠେଇଲି। ସେଦିନ ସେପ୍ଟେମ୍ବର ୧୧, ୧୯୭୫ ସ୍କୁଲର ପ୍ରାର୍ଥନା ଶ୍ରେଣୀରେ ଶିକ୍ଷକ ଲୋକନାଥ ସାହୁ କହିଲେ, ଆଜି ଆମ ସ୍କୁଲର ଜଣେ ପିଲାର କବିତା ଖବରକାଗଜରେ ବାହାରିଛି। ସମସ୍ତେ ପରସ୍ପର ମୁହଁକୁ ଚାହିଁଲୁ। ରମାବଲ୍ଲଭ ମିଶ୍ର ମୋଠୁ ଦୁଇବର୍ଷ ଉପରେ ପଢୁଥାନ୍ତି। ଲୋକନାଥ ସାର୍‌ଙ୍କର ସେ ଭାରି ପ୍ରିୟ ଥିଲେ। ସେତେବେଳେ ସେ କଲେଜକୁ ଗଲେଣି। କାଳେ ତାଙ୍କ କବିତା ଛପିଥିବା କଥା ସାର୍ କହୁଥିବେ ଭାବି ମୁଁ ତାଳି ମାରିବାକୁ ପ୍ରସ୍ତୁତ ହେଉଛି, ସାର୍ ମୋ ନାଁ କହି କବିତାଟି ପଢ଼ିଲେ। କବିତାର ଶୀର୍ଷକ ଥିଲା 'ଶରତ ଆସିଛି ଧରାପରେ'। ମୋ ଛାତି ଧକ୍ ଧକ୍ ଶିହରଣରେ, ଉଲ୍ଲାସରେ। ତା'ପରେ ମୁଁ କବିତା ଲେଖିଚାଲିଛି।

ପ୍ରଶ୍ନ: ଶିଶୁକବି ହଠାତ୍ ବଦଳିଲେ କିପରି ?

ଉତ୍ତର: ମୁଁ ଉଭୟ ଲେଖୁଥିଲି। ସାହିତ୍ୟରେ ଶିଶୁସାହିତ୍ୟ କି ଯୁବସାହିତ୍ୟ ପରି ବିଭାଗୀକରଣ କରି ନ ଥିଲି। ଶିଶୁସାହିତ୍ୟ ବୋଲି ଭାବିକରି ମୁଁ ଲେଖୁ ନ ଥିଲି। ମୁଁ ଭାବେ ସାହିତ୍ୟ ଗୋଟେ।

ପ୍ରଶ୍ନ: ଆପଣ ଗଳ୍ପ ବି ଲେଖୁଥିଲେ, ଛାଡ଼ିଲେ କାହିଁକି ?

ଉତ୍ତର: ୧୯୭୭ରୁ ୧୯୯୦ ଭିତରେ ମୁଁ ପ୍ରାୟ ଶହେ ଗଳ୍ପ ଲେଖିଛି। ସେତେବେଳେ ଗଳ୍ପର ଚାହିଦା ଥିଲା। ପତ୍ରିକା 'ଗଳ୍ପଝର' ଓ 'ଧରିତ୍ରୀ'ର ତତ୍କାଳୀନ ସାହିତ୍ୟ ବିଭାଗ ମୋତେ ଗଳ୍ପ ଲେଖିବାକୁ ଖୁବ୍ ଉତ୍ସାହ ଦେଇଥିଲା। ଏହି ଉତ୍ସାହରୁ ମୁଁ ବହୁତ ଗଳ୍ପ ଲେଖିଲି। ମାତ୍ର ଗଳ୍ପରେ ଠିକ୍

ଚିନ୍ତା କରିଥିବା ଜିନିଷଟି ଉଲ୍ଲେଖ କରିବା ମୋ ପାଇଁ କଷ୍ଟକର ହେଉଥିଲା। ଗଳ୍ପର କ୍ୟାନଭାସ୍ ଗଢ଼ିବାକୁ ମୋ ପାଖରେ ମାଇଣ୍ଡସେଟ୍ ନ ଥିଲା। କବିତା ମୋର ପ୍ରଥମ ପ୍ରେମ ଥିଲା। ଏଣୁ କବିତା ପାଖକୁ ଫେରିଆସିଲି।

ପ୍ରଶ୍ନ: କେଉଁ ଲେଖାରେ ନିଜକୁ ସହଜ କରିପାରନ୍ତି ?

ଉତ୍ତର: କବିତାରେ। ମୁଁ ଗୀତିକବିତାକୁ ବେଶି ଭଲ ପାଏ। କବିତାର ଗୀତିମୟତା ଭିତରେ ମୁଁ ଜୀବନକୁ ଖୋଜିପାଏ।

ପ୍ରଶ୍ନ: ଗାଳ୍ପିକ ମାନସରଞ୍ଜନ କ'ଣ ବିଫଳ ?

ଉତ୍ତର: ନା, ସେମିତି ନୁହେଁ। ଗୋଟିଏ ବିଷୟ ଉଲ୍ଲେଖ କରିବାକୁ ଗଳ୍ପରେ ବେଶି ଲେଖିବାକୁ ପଡ଼ିବ। କିନ୍ତୁ କବିତାରେ ଅଳ୍ପରେ ଲେଖି ଅଧିକ କହିହେବ। ଏଣୁ ମୁଁ ଭାବିଲି ଗଳ୍ପ ଅପେକ୍ଷା କବିତାରେ ନିଷ୍ଠା ରଖିବା ଭଲ। ଗଳ୍ପ ଲେଖାର ସନ୍ତୁଷ୍ଟି ନ ଥିଲା। ମୁଁ ଭାବିଲି ଗଳ୍ପ ଅପେକ୍ଷା କବିତାରେ ଭଲ କରିପାରିବି।

ପ୍ରଶ୍ନ: ସମାଜକୁ ଦିଗ୍‌ଦର୍ଶନ ଦିଏ ସାହିତ୍ୟ, ଏ ବିଷୟରେ ଆପଣଙ୍କ ମତ କ'ଣ ?

ଉତ୍ତର: ନିଶ୍ଚୟ, ସାହିତ୍ୟିକର ସମାଜିକ ଦାୟିତ୍ୱଟି ପ୍ରତ୍ୟକ୍ଷ ଓ ରାଜନୈତିକ ଦାୟିତ୍ୱଟି ପରୋକ୍ଷ। ସାମାଜିକ ପ୍ରତିବଦ୍ଧତା ନିର୍ଭର କରେ ସାହିତ୍ୟିକର ସମାଜ ସହ ସମ୍ବନ୍ଧ ଉପରେ। ଶୀତତାପ ନିୟନ୍ତ୍ରିତ କୋଠରୀରେ ବସି ମରୁଡ଼ି, ବାତ୍ୟା ନ ଦେଖି ତା' ଉପରେ ଲେଖିଲେ ପଦର ମୋହରେ ପତ୍ରପତ୍ରିକା ସମ୍ପାଦକ ବା ପ୍ରକାଶକ ଛାପିଦେବେ ସିନା ସେ ସାହିତ୍ୟ କାଳଜୟୀ ହୋଇପାରିବ ନାହିଁ। ସମାଜର ପ୍ରତିବଦ୍ଧତା କଥା ପଡିଲେ ମୋର 'ଅନାମ' ଆନ୍ଦୋଳନ କଥା ମନେପଡେ। ମୁଁ ଏକ ଆନ୍ଦୋଳନ ସହ ଥିଲି। ଏବେ ସେ ଆନ୍ଦୋଳନ ଶିଥିଳ-ଯଦି କେବେ ପୁଣି ହୁଏ ମୁଁ ତା'ସହ ରହିବି। ସାମାଜିକ କୁସଂସ୍କାର ଜାତିପ୍ରଥା, ପଦପଦବୀର ଭେଳିକି, ପୁରସ୍କାରର ମୋହ, ଶାସନର ଗୋଲାମି ଏସବୁ ବିରୁଦ୍ଧରେ ଅନାମ ଥିଲା ଏକ ପ୍ରତିବନ୍ଧ ସ୍ୱର। ଅନାମ ଆଦର୍ଶରୁ ମୁଁ ଯାହା ଏ ଯାଏଁ ମୋ କବିତାରେ ରଖି ଆସିଛି ତା' ହେଉଛି ପ୍ରତିବାଦର ସ୍ୱର। ସାହିତ୍ୟିକ ସମାଜ ସହ ଅଛି ଓ ରହିବ। ସମାଜକୁ ଦିଗ୍‌ଦର୍ଶନ ଦେବା ଦାୟିତ୍ୱ ତ ସାହିତ୍ୟିକର, ସେଇ ତ ତା'ର ବିଶେଷତ୍ୱ। ଏସବୁ ଦୃଷ୍ଟିରୁ ମୋ ରଚନାର ସଫଳତା ସମ୍ପର୍କରେ ଯଦି ଆପଣ ପଚାରନ୍ତି ମୁଁ କହିବି ମୁଁ ନିଜକୁ ସବୁବେଳେ ଭାବିବି ସଫଳ କିନ୍ତୁ ମୋ ସାମ୍ନା ଲୋକଟି ହିଁ କହିବ ମୁଁ କେତେ ସଫଳ। ମୁଁ ଶାସନତନ୍ତ୍ର ଭିତରେ ଅଛି। ତଥାପି ବ୍ୟୁରୋକ୍ରାସି

ବିରୁଦ୍ଧରେ ଲେଖିଛି। ମୁଁ ସବୁବେଳେ ଫିଲ୍ କରେ ସାହିତ୍ୟ ଓ ସମାଜ ମୁଦ୍ରାର ଦୁଇପାର୍ଶ୍ୱ ପରି। ଜଣେ ଲେଖକର ସବୁବେଳେ ସାହିତ୍ୟକୁ ସମାଜକୁ ନେଇ ଲେଖିବା ଦରକାର। ସାହିତ୍ୟ ଚଳନ୍ତି ସମାଜର କଥା।

ପ୍ରଶ୍ନ: କେତେକ କୁହନ୍ତି ଆପଣ ଉତ୍ତର ଆଧୁନିକର ସ୍ୱର ?

ଉତ୍ତର: ମୋ କବିତା 'ଯାତ୍ରାର ଶେଷ ସୁର'କୁ ପଢ଼ି ଅନେକ ମୋତେ ଉତ୍ତର ଆଧୁନିକ ସ୍ୱର ବୋଲି କହିଲେ। ତେବେ ମୁଁ କହିବି ଭାରତୀୟ ସାହିତ୍ୟ ସବୁବେଳେ ଆଧୁନିକ। କାରଣ ଯିଏ ବେଦ ଲେଖିଥିଲେ ମଧ୍ୟ ସାରା ବିଶ୍ୱକୁ ନିଜର ବୋଲି କଳ୍ପନା କରି ଲେଖିଥିଲେ। ଭାରତୀୟ ସାହିତ୍ୟ ଚିରକାଳ ଉତ୍ତର ଆଧୁନିକ ଅଛି, ରହିବ ମଧ୍ୟ।

ପ୍ରଶ୍ନ: କେଉଁ ସମୟର ଓଡ଼ିଆ କବିତା ଆପଣଙ୍କୁ ଆନ୍ଦୋଳିତ କରିଛି ?

ଉତ୍ତର: ଓଡ଼ିଆ କବିତାରେ ବିବର୍ତ୍ତନରେ ୧୯୩୦-୧୯୪୦ ଏବଂ ୧୯୮୦-୧୯୯୦ ମଧ୍ୟରେ ଖୁବ୍ ଭଲ କବିତାର ସୃଷ୍ଟି ହୋଇଛି। ୧୯୩୦-୧୯୪୦ ମଧ୍ୟରେ କବି ସଚ୍ଚି ରାଉତରାୟଙ୍କ ଆବିର୍ଭାବ ହେଲା, ଯିଏ କି ଆଧୁନିକ ଓଡ଼ିଆ କବିତାରେ ମହାର୍ଘ। ୧୯୮୦-୯୦ ମଧ୍ୟରେ ଅନେକ ପ୍ରତିଷ୍ଠିତ କବି ଭାବେ ଲୋକଲୋଚନକୁ ଆସିଲେ। ସେମାନଙ୍କ କବିତାର ସ୍ୱରକୁ ସମସ୍ତେ ଚିହ୍ନିଲେ। ଏ ସମୟରେ ଭାରତରେ ଟେକ୍ନୋଲୋଜିର ରିଭୋଲ୍ୟୁଶନ ଆସିଥିଲା, ଯାହା ନିହାତି ଆବଶ୍ୟକ ଥିଲା। ପ୍ରଯୁକ୍ତିର ବିକାଶ କବିତାରେ ନୂଆ ମୋଡ ଆଣିଲା।





# ଏବେ ପ୍ରବନ୍ଧ କ୍ଲିଷ୍ଟତାରୁ ମୁକ୍ତ ହୋଇଚାଲିଛି

## ଡ଼ଃ ବାସୁଦେବ ବାରିକ୍‌ଃ

ଓଡ଼ିଆ ସାହିତ୍ୟରେ ପ୍ରବନ୍ଧ ରଚନାକୁ ପ୍ରାଧାନ୍ୟ ଦେଇ ସଫଳ ହୋଇଥିବା ବ୍ୟକ୍ତି ଡଃ ବାସୁଦେବ ବାରିକ୍‌। ଇଂଲିଶ ଭାଷା ସାହିତ୍ୟର ଅଧ୍ୟାପନା କରୁଥିଲେ ମଧ୍ୟ ଓଡ଼ିଆ ସାହିତ୍ୟ ପ୍ରତି ତାଙ୍କର ପ୍ରବଳ ଦୁର୍ବଳତା। ତେଣୁ ସେ ଓଡ଼ିଆରେ ଲେଖିଛନ୍ତି ଏକାଧିକ କବିତା ଓ ଗଳ୍ପ। ସମ୍ପ୍ରତି ଏକ ସଂକ୍ଷିପ୍ତ ଆଳାପରେ ସେ ସ୍ୱୀକାର କରିଛନ୍ତି ଯେ, ଏବେ ପ୍ରବନ୍ଧ ସାହିତ୍ୟ କ୍ଲିଷ୍ଟତାରୁ ମୁକ୍ତ ହୋଇ ଚାଲିଥିବାରୁ ପାଠକୀୟ ଆଦୃତି ବଢ଼ିଛି।

ପ୍ରଶ୍ନ:	ଏବେ କ'ଣ ଲେଖୁଛନ୍ତି ?

ଉତ୍ତର:	ଏବେ ଅଧିକାଂଶ ସମୟରେ ପ୍ରବନ୍ଧ ସହ ସଂଶ୍ଳିଷ୍ଟ ରହୁଛି। କାରଣ ଏତେ କଥା ମନକୁ ଆସୁଛି ତାକୁ ସଜେଇ ରୂପ ଦେବାକୁ ପ୍ରାଧାନ୍ୟ ଦେଉଛି। ତେବେ ଗଳ୍ପ ଓ କବିତାକୁ ଛାଡ଼ିନାହିଁ।

ପ୍ରଶ୍ନ:	ପ୍ରବନ୍ଧ, ଗଳ୍ପ ଓ କବିତା ସୃଜନଶୀଳତାକୁ ସ୍ପଷ୍ଟ ଭାବେ କେଉଁଥିରେ ଉତାରି ପାରନ୍ତି ?

ଉତ୍ତର:	ଏହା ଏକ ଜଟିଳ ପ୍ରଶ୍ନ। କାରଣ ସୃଜନଶୀଳତାର ରୂପକୁ ଯଥାର୍ଥ ଉତାରି ହୁଏ। କେତୋଟି ଗଳ୍ପ ଲେଖିଛି ଯେଉଁଥିରେ ସୃଜନ ତଲ୍ଲୀନତା ଆସିଯାଇଛି ଅଜାଣତରେ। ଏବେ ମୋର ଅଧିକାଂଶ ପ୍ରବନ୍ଧ ଫିଚରଧର୍ମୀ ଓ ସାହିତ୍ୟ ସମ୍ପର୍କିତ। ଗଭୀର ମନନଶୀଳ ପ୍ରବନ୍ଧରେ ସୃଜନର ଧାରା ମୋତେ ସବୁବେଳେ ଆକ୍ରାନ୍ତ କରେ। ତେଣୁ ପ୍ରବନ୍ଧରେ ଏହାକୁ ଅଧିକ ସକ୍ରିୟ କରିବାରେ ତତ୍ପର ହୁଏ।

ପ୍ରଶ୍ନ:	ଓଡ଼ିଆ ପ୍ରବନ୍ଧ ସମ୍ପର୍କରେ ଆପଣଙ୍କ ମତ କ'ଣ ?

ଉତ୍ତର:	ବିଶ୍ୱ ପ୍ରବନ୍ଧକୁ ଆମେ ଯଦି ଆଲୋଚନା କରିବା ତେବେ ମନେହୁଏ ଆମ ଓଡ଼ିଆ ପ୍ରବନ୍ଧ ପଛରେ ପଡ଼ି ନାହିଁ। ଖୁସିର କଥା ଏବେ ପ୍ରବନ୍ଧରେ ପ୍ରାଣର ଆବେଗ ପ୍ରାୟ ସୁସ୍ପଷ୍ଟ। ବିଶେଷତଃ ଓଡ଼ିଆରେ ଫିଚରଧର୍ମୀ ପ୍ରବନ୍ଧ ପାଠକକୁ ଅଧିକ ପ୍ରଭାବିତ କରୁଥିବା ଲକ୍ଷ୍ୟ କରାଯାଏ। ଏହାର ଭବିଷ୍ୟତ ଅତ୍ୟନ୍ତ ଉଜ୍ଜ୍ୱଳ।

ପ୍ରଶ୍ନ:	କ'ଣ କଲେ ଯୁବପିଢ଼ି ପ୍ରବନ୍ଧ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇ ଲେଖନୀ ଚାଳନା କରିବେ ?

ଉତ୍ତର:	ପ୍ରବନ୍ଧ ରଚନା ନିଶ୍ଚୟ କଷ୍ଟସାଧ୍ୟ। ପୁଣି ଏହା ପାଠକ ମନକୁ ଛୁଇଁବାକୁ ହେଲେ ନିଜର ପ୍ରତିବଦ୍ଧତା ଆବଶ୍ୟକ। ମନ, ପ୍ରାଣ ଓ ହୃଦୟକୁ ଏକାଗ୍ର କରି ବିଷୟବସ୍ତୁ ଉପରେ ଧ୍ୟାନ ଦେବା କଥା। ଯୁବପିଢ଼ି ପାଇଁ ପ୍ରବନ୍ଧ ରଚନା ଅସମ୍ଭବ ନୁହେଁ। ବହୁ କଥାକୁ ସଂକ୍ଷେପରେ ପ୍ରକାଶ କଲେ ଓ ସେଥିରେ ସୃଜନ ଲାଳିତ୍ୟ ଥିଲେ ପ୍ରବନ୍ଧ ପ୍ରାଣସ୍ପର୍ଶୀ ହେବା ସ୍ୱାଭାବିକ। ଏକଥାକୁ ଭୁଲିଗଲେ ପ୍ରବନ୍ଧ ନିରସ ହୋଇଯିବ।

ପ୍ରଶ୍ନ:	ଆପଣ ଗଳ୍ପ ଲେଖିଲାବେଳେ କେଉଁ ବିଷୟ ଉପରେ ଗୁରୁତ୍ୱ ଦିଅନ୍ତି ?

ଉତ୍ତର: ପ୍ରେମ, ପ୍ରଣୟ, କ୍ଳାନ୍ତି ଓ ଅନୁରକ୍ତିର ସମାହାର ଗଳ୍ପର ବିଷୟ। ତେବେ ସର୍ବହରା ମଣିଷର ଦୁଃଖ, କବିର ଦ୍ୱନ୍ଦ ଓ ସାମାଜିକ ବିପ୍ଳବର ସାଧାରଣ ମଣିଷର ଆର୍ତ୍ତିକୁ ମୁଁ ଗଳ୍ପରେ ପ୍ରଧାନ୍ୟ ଦେଇଛି। ଗଳ୍ପଟିଏ ପ୍ରକାଶିତ ହେବା ପରେ ଅନେକ ଚିଠି ଆସେ। ଏହା ଉଭୟ ପ୍ରଶଂସା ଓ ନିନ୍ଦାଜନକ।

ପ୍ରଶ୍ନ: ଉତ୍ତର ଆଧୁନିକତାକୁ ଆପଣ କିଭଳି ଗ୍ରହଣ କରନ୍ତି ?

ଉତ୍ତର: ଜଣେ ଆଧୁନିକ ଯୁଗର ଲେଖକ ସାମାଜିକ ଜୀବନରେ ସମସ୍ତ ଅବ୍ୟବସ୍ଥାକୁ ଗ୍ରହଣ କରିବାକୁ ମୁଁ ବାଧ୍ୟ। ସମସ୍ତ ପରିବର୍ତ୍ତନ ଆଧାରରେ ଆଧୁନିକ ରୂପ ଉତ୍ତର ଆଧୁନିକ ହେଲେ ସେଥିରୁ ମୁଁ ବାହାରିଯିବି ନାହିଁ। ତେଣୁ ଉତ୍ତର ଆଧୁନିକତା ଆମକୁ ଆନନ୍ଦ ଦେଇପାରୁଛି, ଗ୍ରହଣ କରିବାରେ ଅସୁବିଧା ନାହିଁ।

ପ୍ରଶ୍ନ: ବର୍ତ୍ତମାନର ଓଡ଼ିଆ ସାହିତ୍ୟ ଉତ୍ତର ଆଧୁନିକତାକୁ ଗ୍ରହଣ କଲାଣି ବୋଲି ଭାବୁଛନ୍ତି କି ?

ଉତ୍ତର: ଏହି ପ୍ରଶ୍ନଟି ଜଟିଳ। ଏହା ଆଧୁନିକତାର ଏକ ସମ୍ପ୍ରସାରଣ ବ୍ୟବସ୍ଥା। ଆଧୁନିକ ଚେତନାର ଉର୍ଦ୍ଧ୍ୱରେ ଯେଉଁ ଉପାଦାନଗୁଡ଼ିକ ରହିଛି ଏବଂ ଅପ୍ରକାଶିତ ଧାରାରେ ଅବଦମିତ ଚିନ୍ତା ରାଶି ଅଛି, ତାକୁ ସଜେଇ, ନୂଆ ନୂଆ ରୂପ ଦେଇ ବିଷୟକୁ ଅଧିକ ମାର୍ମିକ କରିବା ଉତ୍ତର ଆଧୁନିକତାର ଲକ୍ଷଣ। ତେବେ ଉତ୍ତର ଆଧୁନିକତା ନିରର୍ଥକ ନୁହେଁ ଏବଂ ଏହା ଉଦ୍ଭଟ ନୁହେଁ କି ଉନ୍ନତ ଚେତନାର ଅବକ୍ଷୟ ରୂପ ନୁହେଁ। ସମାଜ ବ୍ୟବସ୍ଥାର ବାହାରକୁ ଯାଇ ଯେଉଁ ଘଟଣା ଘଟୁଛି, ତାକୁ ରୂପଦେଲେ ତାହା ଉତ୍ତର ଆଧୁନିକତା ସୃଷ୍ଟିକରେ।

ପ୍ରଶ୍ନ: ବର୍ତ୍ତମାନ ସମୟରେ ସାମାଜିକ ଜୀବନର ଅବସ୍ଥାରେ ଆପଣଙ୍କ 'ଆମ ଗାଁ' ପ୍ରବନ୍ଧ କିପରି ପ୍ରଭାବ ପକାଉଛି ?

ଉତ୍ତର: 'ଆମ ଗାଁ' ପ୍ରବନ୍ଧରେ ଭାରତୀୟ ଗାଁଗୁଡ଼ିକର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଚିତ୍ର ପ୍ରଦତ୍ତ। ବର୍ତ୍ତମାନ ଗାଁର ସାମାଜିକ ସ୍ଥିତି ଦୋହଲି ଯାଇଛି। ଗାଁର ଏଭଳି ବିକଳ ରୂପ ଦେଖି ମୁଁ ମର୍ମାହତ ହୋଇଛି। ତେଣୁ ଗାଁ ମାଟିର ପୂର୍ବାବସ୍ଥା ଫେରିଆସିବା ପାଇଁ ମୁଁ ଆଶାବାଦୀ। ମନେହୁଏ, ଏଭଳି ପ୍ରବନ୍ଧ ପଢ଼ି କିଛି ପାଠକ ପ୍ରଭାବିତ ହୁଅନ୍ତି ଓ ଗାଁର ଦୁରବସ୍ଥା ପ୍ରତି ସଚେତନ ହୋଇଛନ୍ତି।

ପ୍ରଶ୍ନ: ଆପଣଙ୍କ ଅଧିକାଂଶ ଲେଖାରେ ସାମାଜିକ ଅବ୍ୟବସ୍ଥା ଓ ଜୀବନ ଚର୍ଯ୍ୟାର ଭୟ ସନ୍ନିହିତ। ଏହାର କିଛି ପ୍ରଭାବ ସମାଜ ଉପରେ ପଡୁଛି କି ?

ଉତ୍ତର: ସାମାଜିକ ଅବ୍ୟବସ୍ଥା ଓ ଜୀବନ ଚର୍ଯ୍ୟାର ଭୟ ମୋତେ ଅତ୍ୟନ୍ତ କଷ୍ଟ ଦେଇଛି। ସମାଜରେ କିଛି ଲୋକ ପ୍ରଚାରମୁଖୀ ହୋଇ ସାମାଜିକ ଅବସ୍ଥାକୁ ଖରାପ କରିବାରେ ବ୍ୟସ୍ତ। ସାଧାରଣ ଲୋକ ନିଜ ଜୀବନ ଚର୍ଯ୍ୟାରେ ସଂକୁଚିତ ହେଉଛନ୍ତି। ଜଣେ ଲେଖକ ଭାବେ ଏହାକୁ ସହ୍ୟ କରିବା ସମ୍ଭବ ନୁହେଁ। ଲେଖକର ନିରସ୍ତ୍ର ବିପ୍ଳବ ତା' ଲେଖାରେ ପ୍ରତିଫଳିତ ହୋଇଥାଏ। ସେହି ଧର୍ମକୁ ନିଭାଇବାରେ ମୁଁ ପ୍ରଚେଷ୍ଟା କରିଛି। ଆଶା, ଏହା ପାଠକକୁ ପ୍ରଭାବିତ କରିଥିବ।

ପ୍ରଶ୍ନ: ଆପଣଙ୍କ କବିତାରେ ନିମଗ୍ନ ବେଳର ଅନୁଭୂତି କିପରି ?

ଉତ୍ତର: କବିତାର ପ୍ରାଣ ସବୁବେଳେ ଛଳଛଳ। ପ୍ରେମରେ ଉବୁଟୁବୁ ହେବା ପରେ ବା ମାର୍ମିକ ଯନ୍ତ୍ରଣାରେ ଛଟପଟ ହେଲେ କବିତା ପ୍ରାଣକୁ ଛୁଇଁଥାଏ। ତା'ପରେ ଉତୁରି ଆସେ ସ୍ୱତଃସ୍ଫୂର୍ତ୍ତ ଭାବାବେଗର ଅଫୁରନ୍ତ ଧାରା। କବିତାରେ ପ୍ରେମରେ ମତୁଆଲା ହୋଇ ମୁଁ ତାକୁ କୋଳେଇନିଏ।

ପ୍ରଶ୍ନ: ବର୍ତ୍ତମାନ ଓଡ଼ିଆ ସାହିତ୍ୟ ସମ୍ପର୍କରେ ଆପଣଙ୍କ ମତ କ'ଣ ?

ଉତ୍ତର: ବର୍ତ୍ତମାନ ଓଡ଼ିଆ ସାହିତ୍ୟ ଉନ୍ନତରୁ ଉନ୍ନତ ହେବାରେ ଲାଗିଛି। ଓଡିଆ କବିତା ବିଶ୍ୱ କବିତା ସହ ତାଳ ଦେବାରେ କୌଣସି ଅସୁବିଧା ନାହିଁ। ଓଡ଼ିଆ ସାହିତ୍ୟରେ ଭଲ ଗପ ଓ ଉପନ୍ୟାସର ରଚନା ରହିଛି। ପୁଣି ଓଡ଼ିଆ ପ୍ରବନ୍ଧରେ ଗ୍ରହଣଶୀଳତା ବୃଦ୍ଧି ପାଇଛି। ଓଡ଼ିଆ ସାହିତ୍ୟରେ ବର୍ତ୍ତମାନ ଏକ ଉତ୍ତରିତ ପ୍ରବାହ ଚାଲିଛି।





# ନୂଆ ପିଢ଼ିର ସୃଜନଶୀଳତା ବରିଷ୍ଠଙ୍କ ଅହଂ ତଳେ ଚାପି ଦିଆ ନ ଯାଉ

## ବିଜୟ ମହାନ୍ତି:

ବିଜୟ ମହାନ୍ତି, ଏକାଧାରରେ ନାଟ୍ୟକାର, ଗାଳ୍ପିକ ଓ ଗୀତିକବି। ତାଙ୍କ ଲେଖାରେ ମଣିଷକୁ ଭଲପାଇବାର ବାର୍ତ୍ତା ଅଧିକ। ପତ୍ରପତ୍ରିକାରେ ତାଙ୍କର ଅଧିକ ଲେଖା ପ୍ରକାଶ ପାଉଥିଲେ ମଧ୍ୟ ଅଜିକାଲି ବ୍ୟବସାୟିକ ଭିତ୍ତିରେ ସାହିତ୍ୟ ପତ୍ରିକାର ସଂଖ୍ୟା ବୃଦ୍ଧି ନେଇ ସେ ଅସନ୍ତୁଷ୍ଟ। ସାହିତ୍ୟରେ ନଗ୍ନତାର ସେ ଘୋର ବିରୋଧୀ। କହନ୍ତି ନଗ୍ନତାଠାରୁ ବିକର୍ଷଣ କିଛି ନାହିଁ।

ପ୍ରଶ୍ନ: ଆପଣଙ୍କ ସାହିତ୍ୟ ଜୀବନର ଆରମ୍ଭ କିପରି ?

ଉତ୍ତର: ମୋ ସାହିତ୍ୟ ଜୀବନର ଆରମ୍ଭ ୧୯୬୦ ମସିହାରୁ ଯେତେବେଳେ ମୁଁ ଷଷ୍ଠଶ୍ରେଣୀରେ ପଢୁଥିଲି 'କୁଆଁର ପୁନେଇଁ' ଗୀତରୁ। ଯାହା ପଦକୁ ପଦ ଖଞ୍ଜି ଆଜି ବି ଗାଁମାନଙ୍କରେ ବୋଲା ହେଉଛି। ବାହାଘର ଗୀତ ବି ଲେଖିଲି। ଧୀରେ ଧୀରେ ଏ ଗୀତଗୁଡ଼ିକର ଆଦର ଦେଖି ମୁଁ 'ଅନୁତପ୍ତର ଅଶ୍ରୁ' ଶୀର୍ଷକ ଗପଟିଏ ଲେଖିଲି। ଏ ଗପ ଲେଖିଲା ବେଳକୁ ମୁଁ ଅଷ୍ଟମ ଶ୍ରେଣୀର ଛାତ୍ର। ଏହା ମୀନାବଜାରରେ ପ୍ରଥମେ ଛପା ହେଲା। ତା' ପରେ ପରେ ମୁଁ ଗଳ୍ପ କବିତା ଲେଖିବାରେ ଲାଗିଲି। ଗଳ୍ପରେ ଅଧିକ ମନୋନିବେଶ କଲି। କବିତା ଦୁର୍ବୋଧ ହେବା ଏବଂ ତା'ର ଯେଉଁଭଳି ପରୀକ୍ଷା  ନିରୀକ୍ଷା ହେଲା, ମୋତେ ଆଉ କବିତା ବେଶି ଆନ୍ଦୋଳିତ କଲା ନାହିଁ। ଯେଉଁଠି ଆତ୍ମମଗ୍ନ ହୋଇପାରିଲି ନାହିଁ ସେଠି ଅଧିକ ସମୟ ଦେବା ଉଚିତ ମନେକଲିନି, ଯଦିଓ ଆଜି ମୋ ଦ୍ୱାରା ଏକହଜାରରୁ ଅଧିକ କବିତା ରଚିତ। ୧୯୭୦ରୁ ଆଭାସ ଗଳ୍ପ ଲେଖିଲି। ଏକଶହରୁ ଅଧିକ ଅଭାସ ଗଳ୍ପ ଲେଖିଛି ଏବଂ ତାହା ପ୍ରକାଶିତ। ୧୯୭୭ରୁ ନାଟକ ଲେଖିଲି, କିନ୍ତୁ ବେଶି ନାଟକ ଲେଖିପାରିଲି ନାହିଁ।

ପ୍ରଶ୍ନ: ଆପଣଙ୍କ 'ପାହାଚ କଥା କହେ' ନାଟକ ମଞ୍ଚସ୍ଥ ହେବାସହ ଦୂରଦର୍ଶନରେ ମଧ୍ୟ ପ୍ରସାରିତ ହୋଇଛି। ଏତେ ସଫଳତା ପରେ ବି ନାଟକରେ ମନୋନିବେଶ କଲେନି କାହିଁକି ?

ଉତ୍ତର: ନାଟକ ପାଇଁ ମଞ୍ଚ ଦରକାର। ବରାଦିଆ ନାଟକ ହିଁ ମଞ୍ଚସ୍ଥ ହୋଇପାରେ। ଆଉ ମୋତେ ବରାଦ କଲାବେଳକୁ ସେମାନଙ୍କର ଯେଉଁଭଳି ବିଷୟବସ୍ତୁ ଏବଂ ସଂଳାପର ଡିମାଣ୍ଡ ରହୁଥିଲା ମୁଁ ସେଗୁଡ଼ିକ ଲେଖିବାକୁ ପ୍ରସ୍ତୁତ ନଥିଲି।

ପ୍ରଶ୍ନ: ଗଳ୍ପ ମାଧ୍ୟମରେ ଆପଣ ଲୋକଙ୍କୁ କେଉଁ ବାର୍ତ୍ତା ଦେବାକୁ ଚାହାଁନ୍ତି ?

ଉତ୍ତର: ମଣିଷକୁ ଭଲପାଇବା, ଚିହ୍ନିବା, ମଣିଷର ସାଂସ୍କୃତିକ ଏବଂ ମାନବିକତାର ଯେଉଁ ଅବକ୍ଷୟ ଘଟୁଛି ତାକୁ ଗଳ୍ପ ମାଧ୍ୟମରେ ସଚେତନ କରାଇବାକୁ ଚାହିଁଛି।

ପ୍ରଶ୍ନ: ଆପଣଙ୍କର ବହୁ ଲେଖା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଉଛି। ଏଠାରେ ପାଠକୀୟ ପ୍ରତିକ୍ରିୟା କିପରି ପାଉଛନ୍ତି ?

ଉତ୍ତର: ଗୀତିକବିତା ଏବଂ ଗଳ୍ପରେ ପାଠକ ସବୁବେଳେ ହଜିଯାଇଥିବା କଥା ସେମାନଙ୍କଠାରୁ ଜାଣିବାକୁ ପାଇଲି, ଲିଖିତରେ ହେଉ କି ମୌଖିକରେ। ତେବେ ଆଜି ଏତେ ସଂଖ୍ୟାରେ ପତ୍ରିକା ବାହାରିବା କେବଳ ବ୍ୟବସାୟିକ ମନୋବୃତ୍ତି

ନା ସମ୍ପାଦକ ହୋଇ ନାଁ'ଟିଏ କରିବାର ଅଭିପ୍ରାୟ କେବଳ। ମୁଁ ଦୁଇଟି ପିଢ଼ିକୁ ଦେଖିଛି। ପୂର୍ବରୁ ବାହାରୁଥିବା ପତ୍ରିକାରେ ଲେଖା ନିର୍ବାଚିତ ହୋଇ ବାହାରୁଥିଲା। ଏବେ ପତ୍ରିକା ସଂଖ୍ୟା ଅଧିକ। ଲେଖାର ଚାପ ଲେଖକକୁ ଭଲ ଲେଖେଇ ଦେଉନାହିଁ। ଫଳରେ ନାନା ଅସାମାଜିକ କଥା ସାହିତ୍ୟ ରୂପରେ ଆସୁଛି।

ପ୍ରଶ୍ନ: ଏବେ ଗଳ୍ପ, ଉପନ୍ୟାସରେ ଅଶ୍ଳୀଳତା ଦେଖାଯାଉଛି। ଏପରି କି ଚରିତ୍ରମାନଙ୍କୁ ଉଲଗ୍ନ କରି ଦିଆଯାଉଛି। ଆପଣ ଏ ସମ୍ପର୍କରେ କିଛି କହିବେ ?

ଉତ୍ତର: କାଳ କ୍ଷମା କରିବ ନାହିଁ। କିଛିଦିନ ପାଇଁ ପାଠକଙ୍କ ଭିତରେ ଉନ୍ମାଦନା ଆଣିବ। ଶସ୍ତା ଲୋକପ୍ରିୟତା କରାଇବ। କାରଣ ନଗ୍ନତାଠାରୁ ବିକର୍ଷଣ ପୃଥିବୀରେ ଆଉ କିଛି ନାହିଁ।

ପ୍ରଶ୍ନ: 'ଓଡ଼ିଆ ଉପନ୍ୟାସରେ ରାଜନୈତିକ ଚେତନା' ଏଥିରେ ଶହେବର୍ଷ ମଧ୍ୟରେ ଲିଖିତ ଉପନ୍ୟାସରେ ସାମାଜିକ ଘଟଣା ମଧ୍ୟରେ ରାଜନୈତିକ ଚେତନାକୁ ଆପଣ ଅନୁଧ୍ୟାନ କରିଛନ୍ତି। ଏହା ଲେଖିସାରିବା ପରେ ଆପଣଙ୍କ ପ୍ରତିକ୍ରିୟା କିପରି ?

ଉତ୍ତର: ଏହି ରିସର୍ଚ୍ଚ ମୋତେ ସାତବର୍ଷ ଲାଗିଲା। ପାଠକୀୟ ଆଦର ରହିଛି। ଏଣୁ ଏବେ ଦ୍ୱିତୀୟ ସଂସ୍କରଣ ଯନ୍ତ୍ରସ୍ଥ ଅଛି। ମୁଁ ଏହି ପୁସ୍ତକ ସମାପ୍ତ କଲା ପରେ ଖୁବ୍ ଆତ୍ମତୃପ୍ତି ପାଇଲି। ଏହି ରିସର୍ଚ୍ଚ ବେଳେ ମୁଁ ଯେତିକି ତଥ୍ୟ ପାଇଛି ତା' ଉପରେ ଆହୁରି ଅନେକ ପୁସ୍ତକ ହୋଇପାରିବ। ଏହି ପୁସ୍ତକ ଅନେକ ଗବେଷକମାନଙ୍କ ପାଇଁ ଉପାଦେୟ ହେଉଛି ଏବଂ ହେଉଥିବ।

ପ୍ରଶ୍ନ: ଉପନ୍ୟାସ ଲେଖିବାକୁ ଚାହିଁନାହାନ୍ତି ?

ଉତ୍ତର: 'ଅସ୍ତଚନ୍ଦ୍ର' ନାମରେ ଉପନ୍ୟାସଟି ପାଖାପାଖି ପଚାଶ ପୃଷ୍ଠା ଲେଖାହୋଇଛି, କିନ୍ତୁ ଅଧାରୁ ରହିଯାଇଛି। ଏଥିରେ ମଣିଷ ମନର ଭାବନା କେତେବେଳେ କେଉଁ ମୂହୂର୍ତ୍ତରେ ବଦଳେ ତାହା ଦେଖାଇଛି।

ପ୍ରଶ୍ନ: ଆପଣ ଲେଖିଛନ୍ତି ଗଳ୍ପ, କବିତା, ନାଟକ, ଗୀତିକବିତା, ପ୍ରବନ୍ଧ। ତେବେ କେଉଁଥିରେ ନିଜକୁ ଅଧିକ ଉନ୍ମୁକ୍ତ କରିପାରନ୍ତି ?

ଉତ୍ତର: ଗଳ୍ପରେ। ଗଳ୍ପରେ ଯାହା ସ୍ୱୟଂସମ୍ପୂର୍ଣ୍ଣ ହୁଏନି ତହା ଉପନ୍ୟାସରେ ହିଁ ହୋଇପାରେ। ଗୀତିକବିତାରେ ନିଜକୁ ସମ୍ପୂର୍ଣ୍ଣ ଉନ୍ମୁକ୍ତ କରିପାରେ। ଏଥିରେ ମୋର ଆତ୍ମସନ୍ତୁଷ୍ଟି ରହିଛି।

ପ୍ରଶ୍ନ: ଆପଣଙ୍କ ଆଭାସ ଗଳ୍ପଗୁଡ଼ିକ ଗୋଟିଏ ସମୟରେ ବହୁଚର୍ଚ୍ଚିତ ହୋଇଥିଲା। ସେଗୁଡ଼ିକ ଏଯାଏ ବହି ହୋଇ ଆସିପାରୁନାହିଁ କାହିଁକି ?

ଉତ୍ତର: ଏ ଅବହେଳା ପାଇଁ ଦାୟୀ ପ୍ରକାଶନ ସଂସ୍ଥା। ମୋଠାରୁ ଏସବୁ ଗଳ୍ପ ୧୯୮୦ ମସିହାରୁ ପ୍ରକାଶକଙ୍କ ପାଖକୁ ଯାଇଛି ବୋଲି ମୁଁ ଜାଣିଛି। କିନ୍ତୁ ଏବେ ସେଗୁଡ଼ିକ କୁଆଡେ ଗଲା ଜାଣିପାରୁ ନାହିଁ।

ପ୍ରଶ୍ନ: ଏବେ ଲେଖାଯାଉଥିବା ଗଳ୍ପଗୁଡ଼ିକ ଉପରେ ଆପଣଙ୍କ ମତାମତ କ'ଣ ?

ଉତ୍ତର: ସାମ୍ପ୍ରତିକ ସମସ୍ୟା ବିଜଡ଼ିତ ଅନେକ ଗଳ୍ପ, ଅବକ୍ଷୟୀ ସମାଜର ବାସ୍ତବ ଆଲେଖ୍ୟ ଏବଂ ଜୀବନବୋଧର ରୂପଚର୍ଯ୍ୟା ଅଜିକାଲି ଅନେକ ତରୁଣ ଗାଳ୍ପିକଙ୍କ ଗଳ୍ପରେ ବାରିହୋଇ ପଡୁଛି। ପଢ଼ିବା ପାଇଁ ଭଲ ଲାଗୁଛି। ବର୍ତ୍ତମାନ ଲେଖୁଥିବା ନୂଆ ଗାଳ୍ପିକମାନଙ୍କଠାରେ ଅନେକ ସମ୍ଭାବନା ଦେଖାଯାଉଛି।

ପ୍ରଶ୍ନ: ଆଗାମୀ ପିଢ଼ି ପାଇଁ କ'ଣ କହିବେ ?

ଉତ୍ତର: ସବୁବେଳେ ନୂତନତାକୁ ପ୍ରୋତ୍ସାହନ ଦେବା ଦରକାର। ସୃଜନଶୀଳ ଭାବଟିଏ ଯେଉଁଠି ସୁନ୍ଦର ଭାବରେ ଦେଖାଇବାର କଳା ଅଛି ତାକୁ ବରିଷ୍ଠମାନେ ନିଜ ଅହଂ ତଳେ ଚାପି ଦେଇ ବରଂ ସେମାନଙ୍କୁ ଗ୍ରହଣ କରିବାର ମନୋବୃତ୍ତି ରଖିବା ଦରକାର, ଯଦ୍ଦ୍ୱାରା ସାହିତ୍ୟର ସମୃଦ୍ଧି ହେବ, ଉନ୍ନତି ହେବ। ସାହିତ୍ୟ ଗଢ଼ିବାର ମନୋବୃତ୍ତି ସମସ୍ତଙ୍କର ରହିବା ଦରକାର।





# ଅନୁବାଦ ମାଧ୍ୟମରେ ମାତୃଭାଷାକୁ ସମୃଦ୍ଧ କରିବାକୁ ଚାହେଁ

## କୁଳମଣି ଜେନା:

**କ**ବି କ୍ରାନ୍ତିଦର୍ଶୀ। କ୍ରାନ୍ତିର ଅନୁଭବ ଓ ଦାର୍ଶନିକ ଜିଜ୍ଞାସାକୁ ପ୍ରକାଶ କରିବା ପାଇଁ ସେ କେତେବେଳେ କାବ୍ୟ ଭାଷା ଓ କେତେବେଳେ ଗଦ୍ୟ ଭାଷାକୁ ଆଦରି ନିଏ। ଗଦ୍ୟଭାଷା ଲୋକ ସଚେତନା ପାଇଁ ଅଧିକ କ୍ରିୟାଶୀଳ। ଅନୁବାଦ ମାଧ୍ୟମରେ ମାତୃଭାଷାକୁ ସମୃଦ୍ଧ କରାଯାଇ ପାରିବ। ଏଭଳି ମତବ୍ୟକ୍ତ କରୁଥିବା କବି କୁଳମଣି ଜେନା ଏବେ କବିତା ସହ ଗଦ୍ୟ ଲେଖା ଓ ଅନୁବାଦକୁ ନିଜର କରିଛନ୍ତି। ତାଙ୍କ ସାହିତ୍ୟାଦର୍ଶନ ଓ ମତାଦର୍ଶକୁ ଉନ୍ମୋଚିତ କରିବା ଏହି ସଂକ୍ଷିପ୍ତ ଆଳାପର ଉଦ୍ଦେଶ୍ୟ।

ପ୍ରଶ୍ନ: ଆପଣଙ୍କ ସାହିତ୍ୟିକ ଜୀବନର ଅୟମାରମ୍ଭ କିପରି ?

ଉତ୍ତର: ବିଂଶଶତାବ୍ଦୀର ୭୦ ଦଶକର କଥା। ସେତେବେଳେ ଗ୍ରାମାଞ୍ଚଳରେ ଦାରିଦ୍ର୍ୟ ଥିଲା ଅସହ୍ୟ। କିଶୋର ବୟସରେ ମଣିଷର ଦୁଃଖ ମୋତେ ବ୍ୟଥିତ କରିଥିଲା। ମୁଁ ଏହାର କାରଣ ଅନୁସନ୍ଧାନ କରିବାକୁ ଯାଇ ପାଖ ଗାଁର ଏକ ପାଠାଗାରରୁ ଓଡ଼ିଆ ସାହିତ୍ୟର ବେଶ୍ କିଛି ପୁସ୍ତକ ଆଣି ପଢ଼ିଲି। ପଠନର ପ୍ରଭାବରୁ ମଣିଷର ଦୁଃଖ ଓ ଦାରିଦ୍ର୍ୟ ଏପରି କି ମୋ ନିଜର ଦୁଃଖ ଓ ଦାରିଦ୍ର୍ୟକୁ ସାମ୍ନା କରିବା କ୍ଷେତ୍ରରେ ସାହିତ୍ୟକୁ ମାଧ୍ୟମ ଭାବରେ ଗ୍ରହଣ କରିନେଲି।

ପ୍ରଶ୍ନ: ଆପଣ ପ୍ରଗତିଶୀଳ ଚିନ୍ତା ଚେତନା ସହ କେବେ ନିଜକୁ ସଂଯୁକ୍ତ କଲେ ?

ଉତ୍ତର: ମଣିଷ ପ୍ରତି ଗଭୀର ଭଲପାଇବା ଓ ମୋ' ଭିତର ହେତୁବାଦୀ ମନ ମୋତେ ବିପ୍ଳବୀ ଭାବାଦର୍ଶ ଆଡକୁ ମୁହାଁଇ ନେଲା। ମୁଁ ବିପ୍ଳବୀ ଲେଖକମାନଙ୍କର ଲେଖା ପଢ଼ିଲି। କଟକର "ପୀୟୁଷ ସାହିତ୍ୟ ସଂସଦ'ରୁ ମାର୍କସ, ଏଙ୍ଗେଲଙ୍କର ପୁସ୍ତକ ସଂଗ୍ରହ କଲି। ପ୍ରସନ୍ନ ପାଟଶାଣୀ, ହୁସେନ ରବି ଗାନ୍ଧୀଙ୍କ ସହ ପରିଚୟ ହେଲା। ଯୁବ ଲେଖକ ସମ୍ମେଳନର ସଭ୍ୟ ହେଲି- ପରେ ତା'ର ନେତୃତ୍ୱ ନେଲି। ପ୍ରଗତିଶୀଳ ଲେଖକ ଶିଳ୍ପୀ ବୁଦ୍ଧିଜୀବୀ ସଂଘ (ରବି ସିଂ, ଡଃ ନାରାୟଣ ପ୍ରମୁଖଙ୍କୁ ନେଇ) ପ୍ରତିଷ୍ଠା ହେଲା।ଆମେ ସମସ୍ତେ ମିଶି "ଅଗ୍ନିବୀଣା" ପତ୍ରିକା ଛାପିଲୁ। ଏହାଥିଲା ୮୦ ଓ ୯୦ ଦଶକର କଥା।

ପ୍ରଶ୍ନ: ଆପଣ ନିଜ ସାହିତ୍ୟରେ ମାର୍କସବାଦର ସ୍ୱର ଶୁଣାଇ ସାହିତ୍ୟରେ ରାଜନୀତି କରୁଛନ୍ତି ବୋଲି ଅଭିଯୋଗ ହୁଏ ?

ଉତ୍ତର: ନେରୁଦା (ପବ୍ଲୋ ନେରୁଦା) ପ୍ରଥମେ ପ୍ରେମ କବିତା ଲେଖୁଥିଲେ। ପରେ ମାର୍କସବାଦୀ ହେଲେ। ତାଙ୍କୁ ମଧ୍ୟ ଅନୁରୂପ ଅଭିଯୋଗର ସମ୍ମୁଖୀନ ହେବାକୁ ପଡିଥିଲା। ତାଙ୍କର ପ୍ରଶଂସକମାନେ ତାଙ୍କୁ 'ଥିଓକ୍ରାଟିକ୍ (ନେରୁଦାଙ୍କ ଅନ୍ୟନାମ) ତୁମେ କେତେ ମହାନ୍' ସମ୍ବୋଧନ କରି ସେ କାହିଁକି ମାର୍କସବାଦୀ ହେଲେ ବୋଲି ଅଭିଯୋଗ କରିଥିଲେ। ସେତେବେଳେ ଆପଣା ପ୍ରଶଂସକମାନଙ୍କ ପ୍ରତି ନେରୁଦାଙ୍କର ଉତ୍ତର ଥିଲା "ମାର୍କସବାଦ ମଧ୍ୟରେ ମୁଁ ଜୀବନର ସଂଧାନ ପାଇଛି। ମୁଁ ଅତୀତର ଥିଓକ୍ରାଟିକ୍ (ପ୍ରେମିକ କବି) ନୁହେଁ।" ଆରିଷ୍ଟଟଲ କହିଛନ୍ତି ଗବଭ ସଷ୍ୱ ଛକ୍ଳକ୍ଷ୍ଣ କ୍ଷକ୍ଷସଷ୍ୱସ-ମସବଭ ମୁଁ ମାନୁଛି ସାହିତ୍ୟରେ ରାଜନୀତି ଅଛି। ତାହା ତ ଆମ ସମାଜକୁ ବଦଳାଇବାର ଏକ ଅଙ୍ଗୀକାରବଦ୍ଧତା।

ପ୍ରଶ୍ନ: ଆପଣଙ୍କ ରଚିତ 'ମୃତ ଈଶ୍ୱର' ସମ୍ପର୍କରେ କିଛି କୁହନ୍ତୁ ?

ଉତ୍ତର: 'ମୃତ ଈଶ୍ୱର' ସମ୍ପର୍କରେ ମୁଁ କିଛି କହିବା ଅପେକ୍ଷା 'ମୃତ ଈଶ୍ୱର' ସାମ୍ପ୍ରତିକ କାଳର କବିମାନଙ୍କ ସମ୍ପର୍କରେ କ'ଣ କହେ ଶୁଣନ୍ତୁ – "କବି ଏଠି କୁହୁଡ଼ିର ଛାତ / କବିନୁହେଁ ମାଟିରୁ ଜାତ / ମଣିଷ ନୁହେଁ ତା'ର ଫସଲର କ୍ଷେତ / ବାଟି ବାଟି ବନ୍ଧ୍ୟା ଜମି ଭୋକରେ ଅତୁଟ" । ଏହା ମୋର ଆଦ୍ୟ ଯୌବନର କ୍ଲାସିକ୍ । ଏହାର ତିନୋଟି ସଂସ୍କରଣ ହୋଇଛି।

ପ୍ରଶ୍ନ: ଆପଣ 'ଈଶ୍ୱର'ରେ ବିଶ୍ୱାସ କରନ୍ତି ନାହିଁ ଅଥଚ 'ଈଶ୍ୱର ହେବାକୁ ଚାହେଁ' କବିତା ଗ୍ରନ୍ଥରେ ଈଶ୍ୱର ହେବାକୁ ଚାହିଁଛନ୍ତି କିପରି ଓ କାହିଁକି ?

ଉତ୍ତର: 'ଈଶ୍ୱର' ମୋ ପାଇଁ ଏକ ଆଧିଭୌତିକାତ୍ମକ ପ୍ରତୀକ(Metaphysical symbol) ପୂର୍ଣ୍ଣାଙ୍ଗ ମଣିଷର। ମାନବବାଦ (humanism) ଈଶ୍ୱରଙ୍କୁ ଉଚ୍ଛେଦ ନ କଲା ପର୍ଯ୍ୟନ୍ତ 'ଈଶ୍ୱର' ବିଶ୍ୱାସ ମଣିଷ ମନରେ ବସା ବାନ୍ଧିଥିବ। ମଣିଷ ଈଶ୍ୱର ମଧ୍ୟରେ ଏକ ପୂର୍ଣ୍ଣ ମଣିଷ(Complete human being)ର ପରିକଳ୍ପନା କରେ। ମଣିଷ ଈଶ୍ୱର ମଧ୍ୟରେ ଯେଉଁ ପୂର୍ଣ୍ଣାଙ୍ଗ ମଣିଷର କଳ୍ପନା ପରେ ସେ ସେହି ମଣିଷର ପ୍ରକାଶ ବା ବିକାଶ ନିଜ ମଧ୍ୟରେ ଘଟାଇପାରିବ। ଈଶ୍ୱରହୀନ ପୃଥିବୀରେ ମଣିଷ ସ୍ୱପରିକଳ୍ପିତ 'ଈଶ୍ୱର'ର ସ୍ତରକୁ ନିଜେ ବି ଉନ୍ନୀତ ହୋଇପାରିବ। 'ଈଶ୍ୱର ହେବାକୁ ଚାହେଁ' କବିତାର ଶେଷ ପଂକ୍ତିଟି ହେଲା– "'ମୁକ୍ତ' ହେଉ ଏ ପୃଥିବୀରୁ ଯୌନତା ଓ ପ୍ରେମ / 'ଈଶ୍ୱର' ହେବାକୁ ଚାହେଁ ମୁଁ ଯେ ବିହଙ୍ଗମ।"

ପ୍ରଶ୍ନ: ଗୋଟିଏ ସମୟରେ ଆପଣ କବିତାରେ ପାଠକକୁ ମୁଗ୍ଧ କରୁଥିଲେ। ଭିଜେଇ ଦେଉଥିଲେ, ନିଜ ସହିତ ବାନ୍ଧି ରଖୁଥିଲେ। ଏହି ଶକ୍ତିଶାଳୀ କବିତାର ସୃଷ୍ଟି ପରେ ଏବେ ଅନୁବାଦ, ଆଲୋଚନା, ପ୍ରବନ୍ଧ ଆଦିରେ ମନଦେଇଛନ୍ତି କାହିଁକି ?

ଉତ୍ତର: କବି କ୍ରାନ୍ତିଦର୍ଶୀ ତା'ର କ୍ରାନ୍ତିର ଅନୁଭବ ଓ ଦାର୍ଶନିକ ଜିଜ୍ଞାସାକୁ ପ୍ରକାଶ କରିବା ପାଇଁ ସେ କେତେବେଳେ କାବ୍ୟ ଭାଷା ଓ କେତେବେଳେ ଗଦ୍ୟ ଭାଷାକୁ ଆଦରି ନିଏ। ଗଦ୍ୟଭାଷା ଲୋକ ସଚେତନ ପାଇଁ ଅଧିକ କ୍ରିୟାଶୀଳ। ଅନୁବାଦ ମାଧ୍ୟମରେ ମୁଁ ବିଶ୍ୱଦର୍ଶନ ଓ ବିଶ୍ୱଜ୍ଞାନରେ ମାତୃଭାଷାକୁ ସମୃଦ୍ଧ କରିବାକୁ ଚାହେଁ।

ପ୍ରଶ୍ନ: ଅପଣ କବି, ଆଲୋଚକ, ପ୍ରବନ୍ଧକାର, ଅନୁବାଦକ ଏ ମଧ୍ୟରୁ କେଉଁ ପରିଚୟ ବହନ କରିବାକୁ ପସନ୍ଦ କରିବେ ?

ଉତ୍ତର: ମୁଁ ଜଣେ ବିପ୍ଳବୀ ବୁଦ୍ଧିଜୀବୀ ଭାବରେ କାର୍ଯ୍ୟରତ। ନିପୀଡ଼ିତ ମାନବାତ୍ମାକୁ ମୁକ୍ତି ଚିନ୍ତାରେ ମୁଁ ଜର୍ଜରିତ। ଭବିଷ୍ୟତ ମୋର ପରିଚୟ ତିଆରି କରିବ।

ପ୍ରଶ୍ନ: ଆପଣଙ୍କ ସାହିତ୍ୟ ସୃଷ୍ଟିର ଲକ୍ଷ୍ୟ ଓ ଉଦ୍ଦେଶ୍ୟ କ'ଣ? ଆପଣ କାହା ପାଇଁ ଓ କାହିଁକି ଲେଖନ୍ତି?

ଉତ୍ତର: ମୋ'ର ଭାଷା, ଜାତି, କାଳ ଓ ଇତିହାସର ଅଂଶବିଶେଷ ଭାବରେ ମୁଁ ଲେଖନୀ ଚାଳନା କରେ। ମୋର ସୁଦୂରପ୍ରସାରୀ। ସକଳ ପ୍ରକାର ନିପୀଡ଼ନ କବଳରୁ ମଣିଷର ମୁକ୍ତି ସ୍ୱପ୍ନରେ ମୋର ଲେଖକୀୟ ବ୍ୟକ୍ତିସତ୍ତା ବିଗଳିତ, ମଂଥିତ ଓ ସଂଗ୍ରାମରତ। ମୁଁ ସେଇମାନଙ୍କ ପାଇଁ ଲେଖିବାକୁ ଚାହେଁ ଯେଉଁମାନଙ୍କ ଦ୍ୱାରା ବ୍ୟକ୍ତି ଓ ସମାଜର ପରିବର୍ତ୍ତନ ସମ୍ଭବ।

ପ୍ରଶ୍ନ: ଆପଣ ଆଜି ପର୍ଯ୍ୟନ୍ତ ପଢ଼ିଥିବା ଭଲ ପୁସ୍ତକ କେଉଁଟା ଓ କାହିଁକି?

ଉତ୍ତର: ମାର୍କସ୍‌ଙ୍କ "ଡାସ୍ କ୍ୟାପିଟାଲ"। ଏହି ପୁସ୍ତକ ମାଧ୍ୟମରେ ମୁଁ ମୋ ନିଜ ସମ୍ପର୍କରେ ଓ ନିଜର ପୃଥିବୀ ସମ୍ପର୍କରେ ପରିଚିତ ହେବାର ସୁଯୋଗ ଲାଭକଲି। ପୁସ୍ତକଟି ପୁଞ୍ଜିବାଦର ଏକ ସମାଲୋଚନା। ସମାଜବାଦକୁ ପୁଞ୍ଜିବାଦ ମଧ୍ୟରେ ପ୍ରକଟିତ ହେଉଥିବା ପ୍ରବଣତା ବୋଲି ଦର୍ଶାଇ ଦିଆଯାଇଛି। ଏହା ପୃଥିବୀର ଏକ ଶ୍ରେଷ୍ଠତମ ଦର୍ଶନ ଗ୍ରନ୍ଥ। ପୁସ୍ତକଟି ପଢ଼ିଲେ ମଣିଷ ଆତ୍ମସଚେତନ ହେବା ସହ ସମାଜ ସଚେତନ ଓ ଇତିହାସ ସଚେତନ ହେବ। ପୁଣି ପୁଞ୍ଜିବାଦ କିପରି କ'ଣ ଓ କାହିଁକି ଜାଣିପାରିବ?





# କବିତାରେ ସରଳ

## ଭିକାରୀ ଧଳ

ଓଡ଼ିଆ ଯୁବ କବିମାନଙ୍କ ମଧ୍ୟରେ ଅନ୍ୟତମ ଭିକାରୀ ଧଳ। ପ୍ରଥମେ ଗଦ୍ୟ ରଚନାରେ ହାତ ଦେଇଥିବା ଏହି ସ୍ରଷ୍ଟା କବିତା ପ୍ରତି ଆକୃଷ୍ଟ ହୋଇ ଫେରିଛନ୍ତି ସେହି ଧାରାକୁ। ମାନବପଣିଆକୁ ଗୁରୁତ୍ୱ ଦେଉଥିବା ଏହି କବିଙ୍କର ଏଯାବତ୍ ୭ଟି କବିତା ପୁସ୍ତକ ପ୍ରକାଶିତ। ଧଳ କୁହନ୍ତି – ସହଜରେ ବୁଝି ହେଉଥିବା, ମନରେ ଆଙ୍କି ହୋଇ ଯାଉଥିବା, ମନେପକାଇଲେ ପ୍ରତି ମୁହୂର୍ତ୍ତରେ ଆନନ୍ଦ ଦେଉଥିବା କବିତା ହିଁ ଭଲ କବିତା।

ପ୍ରଶ୍ନ: ଆପଣଙ୍କ ସାହିତ୍ୟ ଜୀବନର ଆରମ୍ଭ କିପରି ?

ଉତ୍ତର: ମୋର ହେତୁ ପାଇଲା ଦିନରୁ ସାହିତ୍ୟ ଜୀବନର ଆରମ୍ଭ। ମୁଁ ରାଜଧାନୀଠାରୁ ଦକ୍ଷିଣକୁ ୨୦କି.ମି ଦୂରକୁ ନିଜିଗଡ଼ପୁର କୁରୁଖିରେ ମୋର ଜନ୍ମ। ସାଧାରଣ ପରିବାର। ବାପା, ମାଆ, ଜେଜେ, ଜେଜେମା, ଦାଦା ଖୁଡ଼ି ଓ ପିଉସୀମାନଙ୍କୁ ନେଇ ଯେଉଁ ସଂସାରକୁ ଦେଖିଲି ମୁଁ ବିଭୋର ହୋଇଯାଇଥିଲି। ମୋ ଗାଁର ଚିତ୍ର ଓ ଗାଁଲୋକମାନେ ମୋର ଜନ୍ମ ଜନ୍ମର ପରିଚିତ ପରି ଲାଗିଲେ। ମୋ ବ୍ୟତୀତ ମୋ ଭିତରେ କେହି ଜଣେ ଏହି ଶୈଶବରୁ ହିଁ ସୃଜନ ମନସ୍କ କରାଇଲା।

ପ୍ରଶ୍ନ: ପ୍ରଥମେ କ'ଣ ଲେଖିଲେ ?

ଉତ୍ତର: ଏଭଳି ଗୋଟିଏ ପ୍ରବଣତା ମନକୁ ଆସିଲା ଯେ, ମୁଁ ଏକାଧାରରେ ସବୁକିଛି ଲେଖିଦେବାକୁ ଇଚ୍ଛାପ୍ରକାଶ କରୁଥିଲି। ଗାଁର ଶିକ୍ଷା ବ୍ୟବସ୍ଥାର ଅବ୍ୟବସ୍ଥା, ବାହାରକୁ ଗମନାଗମନର ଅସୁବିଧା, ଧୋୟା ଅଞ୍ଚଳରେ ଘର ହୋଇଥିବାରୁ ବଢ଼ି ମରୁଡ଼ିରେ ଅଭାବ ଅନଟନ ଉଚ୍ଚଶିକ୍ଷାର ବାଧକ ସାଜିଲା। ଯେମିତି ଅଧିକା ନ ପଢ଼ିଲେ ଅଧିକ ଲେଖି ହୁଏନି ମୋର ସେହି ଅବସ୍ଥା ହେଲା। ପ୍ରବଳ ଇଚ୍ଛାଶକ୍ତି ହାର ମାନିଲା ପରିସ୍ଥିତି ପାଖରେ। ଜୀବନ ଜୀଇଁବା ପାଇଁ ଅହରହ ସଂଗ୍ରାମ କରିବାକୁ ପଡ଼ିଲା ସମୟ ସାଥିରେ। ତେଣୁ ଭାବକୁ କେବଳ ପରବର୍ତ୍ତୀ ସମୟରେ କବିତାରେ ସୀମାବଦ୍ଧ ରଖିବା ପାଇଁ ପଡିଲି। ଯଦିଓ ସତୁରି ପରବର୍ତ୍ତୀ ସମୟରେ ଅନେକ ଗୁଡ଼ିଏ ଗଳ୍ପ ଓ କେତୋଟି ଉପନ୍ୟାସ ଲେଖିଥିଲି ତାକୁ ପୁନଃପଠନ କରିବାକୁ ସୁଯୋଗ ମିଳିଲାନାହିଁ, ସେବେଠାରୁ କବିତାରେ ଅଛି ବୋଲି ଭାବୁଛି।

ପ୍ରଶ୍ନ: ଗୀତି କବିତା ଏବଂ କବିତା ଉଭୟ ଲିଖନ ମଧ୍ୟରୁ କେଉଁଟିରେ ସନ୍ତୁଷ୍ଟ ?

ଉତ୍ତର: ଗୀତିକବିତା ମୋ ମନ ଭିତରର ପ୍ରବଳ ଆବେଗକୁ ଯେଉଁ ଭାବରେ ଉପସ୍ଥାପନା କଲା ତାହାର ପ୍ରକାଶନ ପରେ ପାଠକ ତାକୁ ଗୀତି କବିତା କହିଲା, ଯାହାକୁ କି ମୁଁ ମୋର ଆଦ୍ୟ ଯୌବନରେ ଅଶୀ ମସିହା ପୂର୍ବବର୍ତ୍ତୀ ସମୟରେ ଗୁଣୁଗୁଣାଉଥିଲି ଏବଂ ବିକ୍ଷିପ୍ତ ଭାବରେ ଲେଖିଦେଇଥିଲି। ଏବେ ସେପରି ଇଚ୍ଛା କଲେ ବି ପାରୁନି। ସମୟ ଏବଂ ଜୀବନଯନ୍ତ୍ରଣା ସମ୍ପର୍କରେ ଯେଉଁ ବ୍ୟାପକ ଅନୁଭବକୁ ମଣିଷର ସୂକ୍ଷ୍ମ ଏବଂ ସାବଲୀଳ ଜୀବନଯାପନରେ ବ୍ୟାଘାତ ସୃଷ୍ଟି କରୁଛି ବୋଲି ତା'ର ପ୍ରତିକାର ପାଇଁ ମୋର ଇଚ୍ଛାମାନଙ୍କୁ ଯେଉଁ ଢ଼ଙ୍ଗରେ ମୁଁ ଲେଖିଲି ତାକୁ ସମସ୍ତେ କବିତା କହିଲେ। ସେହି ସହଜ ସରଳ ବାଗଟିକୁ ମୁଁ ଏଯାଏ ଧରି ରଖିଛି।

ପ୍ରଶ୍ନ: ଆପଣ ଶିଶୁ ସାହିତ୍ୟ ମଧ୍ୟ ଲେଖୁଛନ୍ତି ?

ଉତ୍ତର: ଶିଶୁଟିଏ ଭଲ ମଣିଷ ହେବା ପାଇଁ ଅନେକ ଦର୍ଶନ ପୂର୍ବରୁ ଲେଖା ମାଧ୍ୟମରେ ଆଉ କଥା ଛଳରେ କୁହାହେଉଛି । ଯେକୌଣସି ଶିଶୁ ଯଦି ସେସବୁ ଜାଣନ୍ତା, ସେ ଜଣେ ସଫଳ ବ୍ୟକ୍ତିତ୍ୱ ରୂପେ ନିଜକୁ ଗଢ଼ିପାରନ୍ତା । ଅନେକାଂଶରେ ସେକଥା ସବୁ ପିଲାଙ୍କ ପାଖରେ ପହଞ୍ଚେ ନାହିଁ । ବେଳେବେଳେ ପିଲାମାନଙ୍କୁ ଦେଖିଲେ ଯେଉଁ ଉପଦେଶମୂଳକ ଭାବନା ଆସେ, ପିଲାମାନେ ପଢ଼ିଲାଭଳି ବାଗରେ ମୁଁ ତାକୁ ଲେଖିଦିଏ ।

ପ୍ରଶ୍ନ: ଭଲ କବିତା କାହାକୁ କହିବେ ?

ଉତ୍ତର: ଭଲ କବିତା ଯାହା ଅତି ସହଜରେ ବୁଝି ହେଉଥିବ । ମନକୁ ଛୁଇଁବା ସହିତ ମନରେ ରହିଯାଉଥିବ । ପ୍ରତି ମୁହୂର୍ତ୍ତରେ ମନେପକେଇଲେ କେବଳ ଆନନ୍ଦ ହିଁ ଦେଉଥିବ ଏବଂ ଆବଶ୍ୟକସ୍ଥଳେ କଥା ପ୍ରସଙ୍ଗରେ ଉଦାହରଣ ହୋଇ ରହିପାରିବ । ତେଣୁ ମାୟାଧର ମାନସିଂ, ସଚ୍ଚି ରାଉତରାୟ, ରାଧାମୋହନ ଗଡ଼ନାୟକ ପ୍ରଭୃତି କବିମାନଙ୍କୁ ସ୍ମରଣ କରାଯାଇପାରେ । ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଗୋପାଳକୃଷ୍ଣ, ଅଭିମନ୍ୟୁଙ୍କୁ ପ୍ରମାଣ କରାଯାଇପାରେ ।

ପ୍ରଶ୍ନ: ଆପଣ କବିତାରେ ବିଶେଷତଃ ମାନବପଣିଆକୁ ଗୁରୁତ୍ୱ ଦେଇଥାନ୍ତି ?

ଉତ୍ତର: ବିଶେଷକରି ମଣିଷ କଥାକୁ ଯେଉଁଠି ସହଜ ସରଳ ଭାବରେ ବୁଝାଇ ଦିଆଯାଇଥାଏ ପ୍ରେମ ପ୍ରଣୟର ମାଧ୍ୟମ ଦେଇ । ଦୁଃଖ ଶୋକକୁ ଭୁଲାଇବାର ଉପକ୍ରମ କରାଯାଇଥାଏ ଏବଂ ପରିଶେଷରେ ଈଶ୍ୱରଙ୍କ ପାଖରେ ସମର୍ପିତ ଭାବକୁ ବ୍ୟାପକ କରାଯାଇଥାଏ । ତାଙ୍କ ସୃଷ୍ଟି ଏହି ମଣିଷକୁ ଗୋଟିଏ ସୁସ୍ଥ ସରଳ ଓ ସାବଲୀଳ ଜୀବନ ଜିଇବା ପାଇଁ । ଯିଏ ମଣିଷକୁ ଭଲପାଏ ସେ ଗୋଟେ ବ୍ୟାପକ ପୃଥିବୀରେ ଜୀବନ ଜିଏଁ । ଯେଉଁ ଲେଖାରେ ମିଥ୍ୟା, କପଟତା, ଅବିଶ୍ୱାସ ପ୍ରକଟିତ ହୁଏ, ସେ କବିତା ଆଉ କବି ଅତି ସଂକୀର୍ଣ୍ଣ ପରିଧିରେ ରହି ଜୀବନକୁ ସଂକୁଚିତ କରିଦେଇଥାନ୍ତି । ତେଣୁ ମାନବସେବା ହିଁ ମାଧବ ସେବା । ଗୋଟିଏ ସଫଳ ଜୀବନର ଏହା ବ୍ୟାପକ ପରିଚୟ ।

ପ୍ରଶ୍ନ: ସାଧାରଣ ପାଠକ କବିତା ପ୍ରତି ଆଗ୍ରହ ରଖୁନାହିଁ । ଏ ସମ୍ପର୍କରେ ଆପଣ କ'ଣ କହିବେ ?

ଉତ୍ତର: ଜଗନ୍ନାଥଙ୍କ ପ୍ରସାଦ ହିଁ ନିର୍ମାଲ୍ୟ ହୁଏ । ପରିମାଣ ଦୃଷ୍ଟିରୁ ନିର୍ମାଲ୍ୟ ବହୁତ କମ୍ କିନ୍ତୁ ତା'ର ମହାତ୍ମ୍ୟ ଏତେ ବ୍ୟାପକ ଯେ ସେଠି କୌଣସି ଯୁକ୍ତି ବା

ଆଳର ପରିପ୍ରକାଶ ନାହିଁ। ମାତ୍ର କବିତା କ୍ଷେତ୍ରରେ ଏ ପ୍ରଶ୍ନ ଏପରି ଯେ ସମଗ୍ର ପୃଥିବୀର ଲୋକସଂଖ୍ୟା ତୁଳନାରେ ଲୋକ ଯେତିକି କବିତା ମନସ୍କ ତାହାର ସଂଖ୍ୟା କମ୍ ନୁହନ୍ତି। ତେଣୁ ତାକୁ ଆମେ ପାଠକ ସଂଖ୍ୟାରେ କେମିତି କମ୍ କହିବା। ଏବେ ବୈଦ୍ୟୁତିକ ଗଣମାଧ୍ୟମ। ଆଧୁନିକ ନୃତ୍ୟଗୀତ ଯେଉଁପରି ଭାବରେ ମଣିଷର ସମୟକୁ କବଳିତ ବା ପ୍ରଭାବିତ କରୁଛି ସେଠି କବିତା ପରି ଏକ ବୌଦ୍ଧିକ ଧାରାକୁ ଆପଣାଇବା ପାଇଁ ସେହି ସ୍ତରର ପାଠକ ସଂଖ୍ୟା ନିଶ୍ଚୟ କମ୍ ରହିବ। ଏକଥା ବୁଝିଲେ ମଧ୍ୟ ଯାହା ପରମ୍ପରା ତାକୁ ସମ୍ମାନ ଦେବାକୁ ପଡ଼ିବ। ନିଜର ଇଚ୍ଛାକୁ ମଧ୍ୟ।

ପ୍ରଶ୍ନ: ଶେଷରେ କ'ଣ କହିବେ ?

ଉତ୍ତର: ଭଲ କବି ବା ଲେଖକଟିଏ ହେବା ପାଇଁ ହେଲେ ଭଲ ମଣିଷଟିଏ ହେବା ଅପରିହାର୍ଯ୍ୟ। ମିଛ, ଅବିଶ୍ୱାସ ଓ ଶଠତାଠାରୁ ଦୂରେଇ ରହିବା ମଣିଷଟିଏ ହିଁ ଈଶ୍ୱରଙ୍କ ସୃଷ୍ଟିକୁ ସମୃଦ୍ଧ କରୁଛି ବୋଲି ଅନୁଭବ ହେବା ଉଚିତ।





# ନୈରାଶ୍ୟବାଦୀ କବିତା ସମାଜର ବୋଝ

## ସଂଗ୍ରାମ କେଶରୀ ମିଶ୍ର:

ପ୍ରଶାସକ, କବି, ପ୍ରାବନ୍ଧିକ। ଏକାଧାରରେ ଏଭଳି ପ୍ରତିଭାର ଅଧିକାରୀ ସଂଗ୍ରାମ କେଶରୀ ମିଶ୍ର। କବିତାରେ ସେ ଯେତିକି ସ୍ୱଚ୍ଛନ୍ଦ, ଗୀତିକବିତାରେ ସେ ସେତିକି ତଲ୍ଲୀନ। ତାଙ୍କ କବିତାରେ ଆଶାବାଦର ଝଲକ, ରୋମାଣ୍ଟିସିଜିମ୍‌ର ପୁଲକ। ନୈରାଶ୍ୟବାଦୀ କବିତା ତାଙ୍କର ନାପସନ୍ଦ। ସେ କହନ୍ତି - ଏଭଳି କବିତା ସମାଜ ପାଇଁ ବୋଝ। ସଂଗ୍ରାମ କେଶରୀଙ୍କ ସହ ହୋଇଥିବା ଆଳାପର କିୟଦଂଶ।

ପ୍ରଶ୍ନ: ଆପଣଙ୍କ ସାହିତ୍ୟ ଜୀବନର ଆରମ୍ଭ କିପରି ?

ଉତ୍ତର: ଅଷ୍ଟମ ଶ୍ରେଣୀରୁ ମୋର ସାହିତ୍ୟର ଆରମ୍ଭ । ମୋ ବାପା ପ୍ରଫେସର ଗଗନ ମିଶ୍ର ଜଣେ କବି ଥିଲେ । ତାଙ୍କଠାରୁ କବିତା ଲେଖାର ପ୍ରେରଣା ପାଇଥିଲି । ମୋ ଅଜା ମଧ୍ୟ ଜଣେ ସାହିତ୍ୟିକ ଥିଲେ ଓ ତୁଳସୀ ରାମାୟଣର ଓଡ଼ିଆ ଅନୁବାଦ କରିଥିଲେ । ସାରସ୍ୱତ ସାଧନାର ପ୍ରେରଣା ମୋତେ କୈଶୋରରୁ ମିଳିଥିଲା । ମୋର ପ୍ରଥମ କବିତା ଲାଲବାହାଦୂର ଶାସ୍ତ୍ରୀଙ୍କ ଉପରେ ଲେଖିଥିଲି । ଏହି କବିତାଟି ଲେଖିବାର ରୋମାଞ୍ଚ ମୋତେ ପ୍ରେରଣା ଦେଇ ଚାଲିଲା ଏବଂ ତା'ପରେ ମୁଁ ଗୋଟି ଗୋଟି କରି ଲେଖି ଚାଲିଲି । ବାପା ଉତ୍ସାହିତ କଲେ ଭଲ ଲେଖୁଛୁ । ତା'ପରଠାରୁ ଏବେ ପର୍ଯ୍ୟନ୍ତ ବିଭିନ୍ନ ପତ୍ରପତ୍ରିକାରେ ବାହାରି ଚାଲିଛି ।

ପ୍ରଶ୍ନ: ଆପଣଙ୍କ ପ୍ରଥମ ପ୍ରକାଶିତ କବିତା ପୁସ୍ତକ ସମ୍ପର୍କରେ କ'ଣ କହିବେ ?

ଉତ୍ତର: ମୋର ପ୍ରଥମ ପ୍ରକାଶିତ କବିତା ପୁସ୍ତକ ଆଦ୍ୟାଶା । ଏହା ଗ୍ରନ୍ଥମନ୍ଦିର ଦ୍ୱାରା ପ୍ରକାଶିତ । ମୁଁ ସାଧାରଣତଃ ପାରିପାର୍ଶ୍ୱିକ ଅବସ୍ଥା ସାମାଜିକ ତଥା ପୃଷ୍ଠଭୂମି ଭିତ୍ତିକ କବିତା ଲେଖିଥାଏ । ଏହା ମୋର ପ୍ରଥମ କବିତା ବହି ଆଦ୍ୟାଶାର ମଧ୍ୟ ପ୍ରତିଫଳିତ । ମୋର କବିତାର ବୈଶିଷ୍ଟ୍ୟ ହେଉଛି ସକାରତ୍ମକତା ଓ ଆଶାବାଦ ।

ପ୍ରଶ୍ନ: ଆପଣ ଖୁବ୍ ଆଶାବାଦୀ ?

ଉତ୍ତର: ମୁଁ କେବଳ ଆଶାବାଦୀ ନୁହେଁ ସକାରାତ୍ମକ ଚିନ୍ତାଧାରାରେ ବିଶ୍ୱାସ କରେ । କବିର ସମାଜ ପ୍ରତି ଉତ୍ତର ଦାୟୀତ୍ୱ ରହିଛି । ନକାରାତ୍ମକ କବିତା ସମାଜର ବୋଧ ସଦୃଶ ।

ପ୍ରଶ୍ନ: ଆପଣ କାହାପାଇଁ ଲେଖୁଛନ୍ତି ?

ଉତ୍ତର: ମୁଁ ସମାଜ ପାଇଁ ଲେଖିଥାଏ । ତେବେ ମୁଁ ଯଦି କହେ ମୁଁ ଖାଲି ସମାଜ ପାଇଁ ଲେଖୁଛି ତାହା ଶହେ ପ୍ରତିଶତ ସତ୍ୟ ହୋଇ ନପାରେ । ବେଳେ ବେଳେ ସ୍ୱ-ଭାବନାର ଉତ୍ସ ମଧ୍ୟ ମୋ କବିତାରେ ପ୍ରତିଧ୍ୱନିତ ହୋଇଥାଏ ।

ପ୍ରଶ୍ନ: "ଜହ୍ନର କବିତା" ଏଭଳି ଏକ ନାମକରଣ କଲେ କାହିଁକି ?

ଉତ୍ତର: ଜହ୍ନ ପ୍ରାୟ ପ୍ରତ୍ୟେକ କବି ପାଇଁ ବା ଗୀତିକାର ପାଇଁ ଏକ ପ୍ରେରଣାର ଉତ୍ସ । ତେବେ ଜହ୍ନକୁ କିଏ କିଭଳି ଭାବରେ ଚିତ୍ରଣ କରୁଛି ତାହା ଉପରେ ବହୁ ତାରତମ୍ୟ ଦେଖାଯାଇଥାଏ । ମୁଁ ଜହ୍ନକୁ ସଦାସର୍ବଦା ଶାନ୍ତି ସ୍ନିଗ୍ଧର ଓ ପ୍ରେରଣାର

ଉପ୍ଲ ହିସାବରେ ଚିତ୍ରଣ କରିଛି ଓ ଚନ୍ଦ୍ରକଳାର ହ୍ରାସ ଓ ବୃଦ୍ଧିକୁ ମଣିଷ ଜୀବନର ଉତ୍‌ଥାନ ପତନ ସାଙ୍ଗରେ ତୁଳନା କରିଛି।

ପ୍ରଶ୍ନ: ଆପଣ କବିତାରୁ ଗୀତିକବିତାକୁ କାହିଁକି ଗଲେ ?

ଉତ୍ତର: ଗଭୀର ଭାବରେ ଦେଖିଲେ ଗୀତିକବିତା ଓ କବିତା ମଧ୍ୟରେ ବିଶେଷ ପାର୍ଥକ୍ୟ ନାହିଁ। ବର୍ତ୍ତମାନର କବିତା ଏବର ଜୀବନ ଶୈଳୀର ପ୍ରତିଫଳନ ହିସାବରେ ଛନ୍ଦହୀନ ବା କେତେବେଳେ ଦୁର୍ବୋଧ। କିନ୍ତୁ ଗୀତିକବିତା ସଙ୍ଗୀତର ଛାୟାରେ ଉଦ୍‌ବୁଦ୍ଧ ହୋଇଥିବାରୁ ସଦା ସର୍ବଦା ଛନ୍ଦମୟ, ଲାଳିତ୍ୟମୟ ଓ ସୁମଧୁର। ଅତୀତରେ ଓ ମଧ୍ୟଯୁଗୀୟ କବିତାରେ ମଧ୍ୟ ଛନ୍ଦର ପ୍ରଭାବ ଦେଖିବାକୁ ମିଳେ। ତେଣୁ ସଙ୍ଗୀତର ଆକର୍ଷଣ ଓ ଲାଳିତ୍ୟର ମୋହରେ ମୁଁ ଗୀତିକବିତା ଲେଖା ଆରମ୍ଭ କରିଥିଲେ ମଧ୍ୟ କବିତା ମୋର ପୂର୍ବବତ୍ ଆଦରଣୀୟ ହୋଇ ରହିଛି।

ପ୍ରଶ୍ନ: ଆପଣଙ୍କ କବିତାଗୁଡିକ ରୋମାଣ୍ଟିକ ଭାବଧାରାର ନୁହେଁ କିନ୍ତୁ ଗୀତିକବିତାଗୁଡ଼ିକ ସବୁ ରୋମାଣ୍ଟିକ, ଏହା କେମିତି ?

ଉତ୍ତର: କବିତା ଜୀବନ ଓ ସମାଜର ଏକ ନିଛକ ପ୍ରତିଫଳନ। ବିଚ୍ଛନ୍ଦ ଓ ଉତ୍ପତ୍ତିର ସମୟ ସାଙ୍ଗରେ ସଂଲଗ୍ନ ସେଥିପାଇଁ କବିର କବିତାକୁ ପର୍ଯ୍ୟାଲୋଚନା କଲାବେଳେ ସମସାମୟିକ ବ୍ୟବସ୍ଥାର ପ୍ରତିଫଳନ ଦେଖିବାକୁ ହୋଇଥାଏ। ତେବେ ରୋମାଣ୍ଟିକ୍ ବା ପ୍ରେମ ଭଳି କବିତା ସର୍ବଦା ଛନ୍ଦମୁକ୍ତ ଓ ଲାଳିତ୍ୟ ଗୀତିକବିତା ବା ଛନ୍ଦ କବିତାକୁ ପ୍ରବେଶ କଲାପରେ ରୋମାଣ୍ଟିସିଜିମ୍‌ର ଅଙ୍କୁରୋଦ୍‌ଗମ ହେବା ସ୍ୱାଭାବିକ।

ପ୍ରଶ୍ନ: କବିତା ସହିତ ଆପଣ ମଧ୍ୟ ପ୍ରବନ୍ଧ ଲେଖନ୍ତି। ସାହିତ୍ୟର ଅନ୍ୟାନ୍ୟ ଦିଗକୁ ଗୁରୁତ୍ୱ ଦେଇନାହାଁନ୍ତି କାହିଁକି ?

ଉତ୍ତର: ଦିନର ମାତ୍ର ୨୪ ଘଣ୍ଟା ଥାଏ। ସିନିୟର ଅଫିସର ହିସାବରେ ଅଫିସ୍ କାର୍ଯ୍ୟସାରି କବିତା ଓ ସଙ୍ଗୀତ ଦୁନିଆକୁ ସ୍ପର୍ଶ କରିସାରିଲା ପରେ ମୋ ପାଖରେ ସମୟ ଖୁବ୍ ଅଭାବ ଥାଏ। ତଥାପି ଏକ ଇଂଲିଶ ଖବରକାଗଜରେ ସାପ୍ତାହିକ ପ୍ରବନ୍ଧ ଲେଖୁଛି। ଯାହାକି ରାଜ୍ୟର ବିଭିନ୍ନ ସମସ୍ୟା ଉପରେ ଆଧାରିତ। ଏହାଛଡା ଅନ୍ୟାନ୍ୟ ଖବରକାଗଜ ଓ ପତ୍ରପତ୍ରିକାରେ ମୋର ପ୍ରବନ୍ଧ ପ୍ରକାଶ ପାଇ ଆସୁଛି। ଗଳ୍ପ କେତୋଟି ଲେଖିଥିଲେ ମଧ୍ୟ ତା'ଉପରେ ସବିଶେଷ ପ୍ରାଧାନ୍ୟ ଦେଇପାରିନାହିଁ।

ପ୍ରଶ୍ନ: ଆପଣଙ୍କ ଏଯାବତ୍ ୯ଟି କବିତା ପୁସ୍ତକ ପ୍ରକାଶିତ, କେଉଁ କବିତା ପୁସ୍ତକ ଆପଣଙ୍କୁ ବେଶି ଭଲ ଲାଗେ ?

ଉତ୍ତର: ଥରେ ଦିବଂଗତ ଦେବାନନ୍ଦଙ୍କୁ ପ୍ରଶ୍ନ କରାଯାଇଥିଲା ତାଙ୍କର ଅତୀତର ସିନେମାଗୁଡ଼ିକ ମଧ୍ୟରୁ କେଉଁଟି ତାଙ୍କୁ ସବୁଠୁ ଅଧିକ ଭଲ ଲାଗେ, ତା'ର ଉତ୍ତରରେ ସେ କହିଥିଲେ ମୋର ଶ୍ରେଷ୍ଠ କୃତୀ ଆସିବାକୁ ବାକି ଅଛି। ସେହିପରି ମୋର ଶ୍ରେଷ୍ଠ କବିତାଗ୍ରନ୍ଥ ଆସିବାକୁ ବାକି ଅଛି "ଅବ୍ୟକ୍ତି"। ତେବେ ପୂଜ୍ୟ ସଚ୍ଚିରାଉତଙ୍କ ଭାଷାରେ "ଶ୍ରଯୋଦ୍ଧା" ଓଡ଼ିଆ ସାହିତ୍ୟର ଏକ ଅନବଦ୍ୟ କୃତି।





# କୋରାନ୍‌ରେ ନାରୀକୁ 'ସମ୍ଭୋଗର ସାମଗ୍ରୀ' ରୂପେ ବର୍ଣ୍ଣନାକୁ ବିରୋଧ କରୁଛି

ତସ୍‌ଲିମା ନାସ୍‌ରିନ୍

କୋରାନରେ ଉଲ୍ଲିଖିତ ନିର୍ଦ୍ଦିଷ୍ଟ ଉକ୍ତିକୁ ବିରୋଧ କରି ଏବଂ ନାରୀକୁ ତାର ପ୍ରକୃତ ଅଧିକାର ମିଳିବାକୁ ନେଇ କଲମ ଚାଳନା କରିଥିବା ତସ୍‌ଲିମା ଯେ ଦେଶାନ୍ତର ହୋଇ ମଧ୍ୟ ନିଜ ସଂଗ୍ରାମକୁ ଜାରି ରଖିଛନ୍ତି ଏବଂ ବିଶ୍ୱ ସାହିତ୍ୟ ଦରବାରରେ ନିଜର ଏକ ସ୍ୱତନ୍ତ୍ର ପରିଚୟ ବାଢ଼ି ପାରିଛନ୍ତି । ଆନ୍ତର୍ଜାତୀୟ ସ୍ତରରେ ନିଜର କଲମ ମୁନରେ ଚହଳ ସୃଷ୍ଟି କରିପାରିଥିବା ତସ୍‌ଲିମା ନସରିନ୍‌ଙ୍କ ସହ ହୋଇଥିବା ସଂକ୍ଷିପ୍ତ ଆଳାପ ।

ପ୍ରଶ୍ନ: ଆପଣ ଧର୍ମ ଏବଂ ପୁରୁଷ ବିରୋଧରେ ହିଁ କାହିଁକି ଲେଖନ୍ତି ?

ଉତ୍ତର: ନା, ମୁଁ ଧର୍ମ ବିରୋଧରେ ନୁହେଁ ଧର୍ମାନ୍ଧତା ବିରୋଧରେ ଲେଖେ । ପୁରୁଷଙ୍କ ବିରୋଧରେ ନୁହେଁ ପୁରୁଷର ଚରିତ୍ର ବିରୋଧରେ ଲେଖେ। ଯାହା ସବୁ ମୁଁ ଦେଖିଛି ସାମ୍ନା କରିଛି କେବଳ ସେହି ଗୁଡିକୁ ସମାଜ ସାମ୍ନାକୁ ଆଣିବାକୁ ଚେଷ୍ଟା କରିଛି । ପିଲା ଦିନେ ଆରବୀ ଭାଷାରେ ମୁଁ କୋରାନ୍ ପାଠ କଲାବେଳେ ଖୁବ୍ ଆଶ୍ୱସ୍ତି ବୋଧ କରୁଥିଲି । ଭାଷାର ଅର୍ଥ ନଜାଣି ମୁଁ ପଢ଼ିବାକୁ ଚାହୁଁନଥିଲି ଏବଂ ତା'ବଦଳରେ ବଙ୍ଗଳା ଭାଷାରେ ଅନୁଦିତ କୋରାନର ପାଠ କରିଥିଲି । କିନ୍ତୁ ମୋ ମାଆଙ୍କ ମତରେ "କେବଳ ଆରବୀ ଭାଷାରେ ଲେଖା ଯାଇଥିବା କୋରାନ ପାଠ କଲେ ହିଁ ଆଲ୍ଲା ସନ୍ତୁଷ୍ଟ ହେବେ। କିନ୍ତୁ ମୁଁ ଏକଥାରେ ଏକମତ ନହୋଇ ବଙ୍ଗଳା ଅନୁଦିତ କୋରାନକୁ ପଢ଼ି ଜାଣିଲି କୋରାନରେ ନାରୀ ମାନଙ୍କୁ ସମ୍ଭୋଗର ସାମଗ୍ରୀ ଭାବେ ବ୍ୟବହାର କରିବା ସପକ୍ଷରେ ଲେଖାଥିବା ଦେଖି ତାକୁ ବିରୋଧ କଲି।

ପ୍ରଶ୍ନ: ଆପଣ ପଶ୍ଚିମ ଦେଶମାନଙ୍କରେ କିଛି ବର୍ଷ ବିତାଇଥିଲେ, ସେହି ଦେଶମାନଙ୍କରେ ମହିଳାମାନଙ୍କର ସ୍ଥିତି କେମିତି ?

ଉତ୍ତର: ପଶ୍ଚିମ ଦେଶମାନଙ୍କରେ ମହିଳାମାନେ ବହୁତ ସ୍ୱାଧୀନତା ପାଆନ୍ତି। ତଥାପି ମୁଁ ଭାବେ ସେମାନେ ସଂପୂର୍ଣ୍ଣ ସ୍ୱାଧୀନତା ପାଇନାହାନ୍ତି । ସେହି ଦେଶମାନଙ୍କରେ ମଧ୍ୟ ମହିଳାମାନଙ୍କୁ ଚାପି ଦିଆଯାଉଛି । କିନ୍ତୁ ତୁଳନାତ୍ମକ ଭାବେ ଭାରତୀୟ ଉପମହାଦେଶ ମହିଳାମାନଙ୍କଠାରୁ ସେମାନେ କିଛିଟା ଅଧିକ ସ୍ୱାଧୀନତା ଉପଭୋଗ କରୁଛନ୍ତି ।

ପ୍ରଶ୍ନ: ସେଠାକାର ମହିଳାମାନଙ୍କର ସାମାଜିକ ସୁରକ୍ଷା ଅଛି କି ? ବିଶେଷଭାବେ ସନ୍ତାନ ସହିତ ଛାଡପତ୍ର ପାଇଥିବା ମହିଳା ସାମାଜିକ ସୁରକ୍ଷା ପାଉଛନ୍ତି କି ?

ଉତ୍ତର: ହଁ, ସେଠାକାର ସମସ୍ତ ମହିଳା ସାମାଜିକ ସୁରକ୍ଷା ପାଉଛନ୍ତି । ଛାଡପତ୍ର ପାଇଥିବା ମହିଳାମାନେ ସରକାରଙ୍କଠାରୁ ସମସ୍ତ ପ୍ରକାର ସୁବିଧାସୁଯୋଗ ପାଉଛନ୍ତି । ଏକାକୀ ଜୀବନଯାପନ ପାଇଁ ସେମାନଙ୍କର କୌଣସି ସାମାଜିକ କିମ୍ବା ଅର୍ଥନୈତିକ ସମସ୍ୟା ଆଦୌନାହିଁ ।

ପ୍ରଶ୍ନ: ପାଶ୍ଚାତ୍ୟ ଦେଶମାନଙ୍କରେ ମହିଳାଙ୍କ ସୁରକ୍ଷା ପାଇଁ କୌଣସି ନିର୍ଦ୍ଦିଷ୍ଟ ଆଇନ ଅଛି କି ?

ଉତ୍ତର: ହଁ ସେହି ଦେଶମାନଙ୍କରେ ସମସ୍ତ ପ୍ରକାର ଆଇନ ଅଛି ମହିଳାଙ୍କ ସୁରକ୍ଷା ପାଇଁ । ସେଠାକାର ମହିଳାମାନେ ସମ୍ମାନର ସହ ବଞ୍ଚନ୍ତି ।

ପ୍ରଶ୍ନ: ମହିଳା ଦିବସ ପାଳନ ଉପରେ ଆପଣଙ୍କ ମତ କ'ଣ ?

ଉତ୍ତର: ମୁଁ ବିଶ୍ୱାସ କରେନା, ମହିଳା ଦିବସରେ। କାରଣ ୩୬୫ ଦିନରୁ ଗୋଟିଏ ଦିନ (୮ ମାର୍ଚ୍ଚ)କୁ ମହିଳାଙ୍କ ପାଇଁ ରଖି ବାକି ୩୬୪ ଦିନ ପୁରୁଷମାନଙ୍କ ପାଇଁ କ'ଣ ଉତ୍ସର୍ଗ କରାଯାଇଛି ? ମୁଁ ଚାହେଁ ପ୍ରତ୍ୟେକ ଦିନ ସବୁ ମଣିଷଙ୍କ ପାଇଁ ସମାନ ହେଉ ।





# କବିତା ମୋର ପ୍ରଥମ ପ୍ରେମ

## ଜଗନ୍ନାଥ ପ୍ରସାଦ ଦାସ

ଜଗନ୍ନାଥ ପ୍ରସାଦ ଦାସ ଏକାଧାରରେ ଜଣେ କବି, ନାଟ୍ୟକାର, ଗାଳ୍ପିକ, ପ୍ରାବନ୍ଧିକ ଓ ଗବେଷକ। ଭାରତୀୟ ପ୍ରଶାସନ ସେବାରୁ ସ୍ୱେଚ୍ଛାରେ ଅବସର ନେଇ ବିଗତ ପଚିଶ ବର୍ଷରୁ ଊର୍ଦ୍ଧ୍ୱ ସାହିତ୍ୟ ରଚନାରେ ସଂପୂର୍ଣ୍ଣ ଭାବେ ନିଯୁକ୍ତ । ତାଙ୍କର ରଚନା ଅନେକ ଭାରତୀୟ ଭାଷା ତଥା ଇଂରାଜୀରେ ଅନୂଦିତ ଓ ତାଙ୍କର ନାଟକ ଦେଶର ବିଭିନ୍ନ ସ୍ଥାନରେ ମଞ୍ଚସ୍ଥ। ଊନବିଂଶ ଶତାବ୍ଦୀ ଓଡ଼ିଶାର ପୃଷ୍ଠଭୂମିରେ ଲିଖିତ ତାଙ୍କର ଉପନ୍ୟାସ 'ଦେଶ କାଳ ପାତ୍ର' ଓ ନାଟକ 'ସୁନ୍ଦର ଦାସ' କ୍ଲାସିକ୍ ରୂପେ ସ୍ୱୀକୃତ । କବିତା ସଂକଳନ 'ପରିକ୍ରମା' ପାଇଁ 'ସରସ୍ୱତୀ ସମ୍ମାନ' ପ୍ରାପ୍ତ । ୧୯୭୩ରୁ ସେ ଦିଲ୍ଲୀଠାରେ ଅବସ୍ଥିତ।

ପ୍ରଶ୍ନ: ଆପଣଙ୍କର 'ଦେଶ କାଳ ପାତ୍ର' ଏକ ସ୍ୱୟଂ ସଂପୂର୍ଣ୍ଣ ଉପନ୍ୟାସ, ଏହି ଗ୍ରନ୍ଥ ରଚନାରେ ଆପଣଙ୍କ କି ଉଦ୍ଦେଶ୍ୟ ରହିଥିଲା ?

ଉତ୍ତର: 'ଦେଶ କାଳ ପାତ୍ର'କୁ ସ୍ୱୟଂ ସଂପୂର୍ଣ୍ଣ ଉପନ୍ୟାସ କହି ହେବ କି ନାହିଁ, ତାହା ସାହିତ୍ୟିକମାନେ କହିପାରିବେ । କିଛି ବର୍ଷ ତଳେ ଜୋଆନ୍ନା ଉଲିଆମ୍ସ ଓ ମୁଁ ଓଡିଶାର ଜଣେ ଊନବିଂଶ ଶତାବ୍ଦୀର ଚିତ୍ରକର (ରଘୁନାଥ ପୃଷ୍ଟି, ମୁଣ୍ଡମରାଇ, ଧରାକୋଟ)ଙ୍କ ବିଷୟରେ ଗବେଷଣା କରୁଥିଲୁ । ଏହି ଗବେଷଣା ପୁସ୍ତକଟି ପାମଲିଫ ମିନିଏଚର୍ସ ନାମରେ ପ୍ରକାଶ ପାଇ ସାରିଛି । ସେହି ସନ୍ଦର୍ଭରେ ମୁଁ ସେତେବେଳର ଓଡିଶା ବିଷୟରେ ପଢ଼ାପଢ଼ି କରିଥିଲି ଏବଂ ଊନବିଂଶ ଶତାବ୍ଦୀର ଓଡ଼ିଶା ମତେ ଅତ୍ୟନ୍ତ ଚିତ୍ତାକର୍ଷକ ମନେ ହୋଇଥିଲା । ମୁଁ ସେହିସବୁ ସାମଗ୍ରୀକୁ ନେଇ 'ଦେଶ କାଳ ପାତ୍ର' ଲେଖିଥିଲି ।

ପ୍ରଶ୍ନ: 'ଦେଶ କାଳ ପାତ୍ର' ଅଧିକାଂଶ ସତ୍ୟ ଘଟଣା ଉପରେ ଆଧାରିତ । କିନ୍ତୁ ସେହି ସତ୍ୟ ସନ୍ଧାନର ଉତ୍ସ ବିଷୟରେ ଆପଣ ନୀରବ ରହିଛନ୍ତି ପୁସ୍ତକଟିରେ । ଏପରି କାହିଁକି ?

ଉତ୍ତର: ମୁଁ ପ୍ରଥମେ ଭାବିଥିଲି ଉଭୟ ସତ୍ୟ ଏବଂ କଳ୍ପନାର ଆଧାର ଉପରେ ବହିଟି ଲେଖିବି, ଯେପରି କି ଆମେରିକାନ୍ ଉପନ୍ୟାସ 'ରାଗ ଟାଇମ୍' । କିନ୍ତୁ ସେତେବେଳର ପ୍ରକୃତ ଘଟଣାମାନ ଏତେ ନାଟକୀୟ ଓ ରୋଚକ ଥିଲା ଯେ ଶେଷ ପର୍ଯ୍ୟନ୍ତ, ମୁଁ କେବଳ ସତ୍ୟ ଘଟଣାକୁ ନେଇ ହିଁ ଲେଖିଲି । 'ଦେଶ କାଳ ପାତ୍ର' ସାଧାରଣ ପାଠକଙ୍କ ପାଇଁ ଉଦ୍ଦିଷ୍ଟ, ବିଦ୍ୱାନମାନଙ୍କ ପାଇଁ ନୁହେଁ ଏବଂ ଏହାର ବର୍ଣ୍ଣନା କାହାଣୀ ଶୈଳୀରେ, ଗବେଷଣା ପ୍ରବଂଧ ଭଳି ନୁହେଁ । ସେଥିପାଇଁ ଏଥିରେ ବିବରଣୀମାନଙ୍କର ଉତ୍ସ ଦିଆଯାଇନାହିଁ ।

ପ୍ରଶ୍ନ: ଆପଣ ଜଣେ ପ୍ରତିଷ୍ଠିତ କବି ଭାବରେ ପ୍ରତିଷ୍ଠା ପାଇଲେ । କବିର ଗୌରବ ଅକ୍ଷୁର୍ଣ୍ଣ ରହିଥିବାବେଳେ ଗଳ୍ପ ନାଟକକୁ କାହିଁକି ଆସିଲେ ?

ଉତ୍ତର: ମୁଁ ପ୍ରଥମ ଗଳ୍ପ "ଶବ୍ଦଭେଦ" ଲେଖିଲି ୧୯୮୦ରେ । ମୋର ମନେହେଲା ମୁଁ ଏପରି କିଛି କଥା କହିବାକୁ ଚାହୁଁଛି ଯାହା କବିତାରେ (ଅନ୍ତତଃ ମୁଁ ଯେଉଁଭଳି କବିତା ଲେଖୁଥିଲି, ସେଥିରେ) କହିବା ସମ୍ଭବ ନୁହେଁ । ସେଥିପାଇଁ ମୁଁ ଗଳ୍ପରେ ହାତ ଦେଲି । ଅବଶ୍ୟ ତା' ପୂର୍ବରୁ ମୁଁ ନାଟକ "ସୂର୍ଯ୍ୟାସ୍ତ ପୂର୍ବରୁ" ଏବଂ "ପୂର୍ବରାଗ" ଲେଖିଥିଲି । ଗଳ୍ପ ଲେଖିବା ପରେ ଅବଶ୍ୟ ଗୋଟିଏ ନୂଆ କଥା ହେଲା ଯେ ମୁଁ କିଛି ଭିନ୍ନ ପ୍ରକାରର କବିତା ଲେଖିବା ଆରମ୍ଭ କଲି । ସମାଜ ମନସ୍କ ଗଳ୍ପରୁ ସମାଜ ମନସ୍କ କବିତାକୁ ଆସିଲି ।

ପ୍ରଶ୍ନ: କ'ଣ କବିତାରେ ଏପରି କିଛି କହିବାକୁ ସୁଯୋଗ ମିଳିଲାନାହିଁ ନା କବିତା ଉପଯୁକ୍ତ ମାଧ୍ୟମ ହେବ ନାହିଁ ଭାବି ଆପଣ ଏ ନିଷ୍ପତ୍ତି ନେଲେ ?

ଉତ୍ତର: କବିତାରେ ନିଶ୍ଚୟ ସବୁକିଛି କହିହେବ ଏବଂ ଅନେକ ବି ସଫଳତାର ସହିତ ବିଭିନ୍ନ ବିଷୟରେ କବିତା ଲେଖିଛନ୍ତି । ତେବେ ସବୁ କବି ସବୁ ବିଷୟରେ କବିତା ଲେଖନ୍ତିନାହିଁ । କେତେକ ବିଷୟ ପାଇଁ ମୁଁ ଭାବିଲି ହୁଏତ କବିତା ଅପେକ୍ଷା ଗଳ୍ପ, ନାଟକ ଭଲ ମାଧ୍ୟମ ହେବ । ମୋର ଗବେଷଣା ବେଳେ ମୁଁ ଉନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଓଡ଼ିଶାରେ ଖ୍ରୀଷ୍ଟିୟାନ ମିଶନାରୀମାନଙ୍କ କାର୍ଯ୍ୟ କଳାପ ବିଷୟରେ ଯେଉଁ ତଥ୍ୟ ସଂଗ୍ରହ କରିଥିଲି, ତାକୁ ନେଇ 'ଦେଶକାଳପାତ୍ର' ଭଳି ଆଉ ଗୋଟିଏ ବହି ନଲେଖି ମୁଁ ଭାବିଲି ଯେ ଗୋଟିଏ ନାଟକ ଲେଖିବା ଉପଯୁକ୍ତ ହେବ । ୧୯୯୩ରେ ରଚିତ 'ସୁନ୍ଦର ଦାସ' ତାରି ପରିଣତି ।

ପ୍ରଶ୍ନ: କବି, କଥାଶିଳ୍ପୀ ଓ ନାଟ୍ୟକାର ଭିତରୁ କେଉଁଟି ଆପଣଙ୍କୁ ଅଧିକ ଆକୃଷ୍ଟ କରେ ? ଆପଣ କ'ଣ ସତକୁ ସତ ନିଜ ଭିତରେ ତିନୋଟି ଅଲଗା ଅଲଗା ବ୍ୟକ୍ତିତ୍ୱର ସନ୍ଧାନ ପାଆନ୍ତି ?

ଉତ୍ତର: ଲେଖକର ବ୍ୟକ୍ତିତ୍ୱ ଗୋଟିଏ ମାତ୍ର, ସେ ବିଭିନ୍ନ ପ୍ରକାରର ଲେଖା କବିତା, ଗଳ୍ପ, ନାଟକ ଲେଖୁଥାଉ ପଛେ ତେବେ କବିତା ମୋର ପ୍ରେମ ହୋଇଥିବାରୁ ମୁଁ ନିଜକୁ ପ୍ରଥମେ କବି ଭାବରେ ଭାବିଥାଏ ।

ପ୍ରଶ୍ନ: ଆପଣଙ୍କର 'ମନ୍ତ୍ର', 'ବୁଢ଼ୀଆଣୀ ଜାଲ' ପରି ଗଳ୍ପଗୁଡ଼ିକ କ'ଣ ଅନ୍ୟାନ୍ୟ ଭାରତୀୟ ଭାଷାରେ ଅଥବା ଇଂରାଜୀରେ ଅନୁବାଦିତ ହୋଇଛି କି ? ଉପରୋକ୍ତ ଗଳ୍ପ ଭିନ୍ନ ଅନ୍ୟ କେଉଁଗୁଡ଼ିକୁ ଆପଣ ଆପଣଙ୍କର ପ୍ରତିନିଧି ସ୍ତରୀୟ ଗଳ୍ପ ବୋଲି ମନେ କରନ୍ତି ?

ଉତ୍ତର: ମୋର କିଛି ଗଳ୍ପ ('ମନ୍ତ୍ର' ଓ 'ବୁଢ଼ୀଆଣୀ ଜାଲ' ସମେତ) ହିନ୍ଦୀ ଓ ଇଂରାଜୀରେ ଅନୁବାଦିତ ହୋଇଛି । ତେବେ ଏଗୁଡ଼ିକ ମୋର ପ୍ରତିନିଧିମୂଳକ ଗଳ୍ପ କି ନା ମୁଁ ଜାଣେନା । ମୁଁ ମୋର ନିଜର ଲେଖା ବିଷୟରେ ଭାବେ ନାହିଁ ବା ତାକୁ ବିଶ୍ଳେଷଣ କରିବାକୁ ଚେଷ୍ଟା କରେନାହିଁ । ତେଣୁ ମୋର କେଉଁ ଲେଖା ମୋର ପ୍ରତିନିଧିତ୍ୱ କରନ୍ତି ସେ ବିଷୟରେ ମୋର ଧାରଣା ନାହିଁ ।

ପ୍ରଶ୍ନ: ପଟ୍ଟଚିତ୍ର ଉପରେ ଗବେଷଣା କରି ଆପଣ ପିଏଚଡି ପାଇଛନ୍ତି । ସାହିତ୍ୟରେ କବିତା, ଗଳ୍ପ, ନାଟକ ସହିତ ରଂଗ ତୂଳୀର ଚିତ୍ର ଜଗତକୁ ପ୍ରବେଶ କଲେ କିପରି ଓ ଆପଣ ସେଥିପ୍ରତି ଆକୃଷ୍ଟ ହେଲେ କେମିତି ?

ଉତ୍ତର: ମୋର ଅନେକ ଦିନରୁ ଚିତ୍ରକଳା ପ୍ରତି ଆଗ୍ରହ ଥିଲା ଏବଂ ମୁଁ ନିଜେ କିଛି କିଛି ଚିତ୍ର କରୁଥିଲି । ମୋର ପଟ୍ଟଚିତ୍ର ବିଷୟରେ ଗବେଷଣା କରିବାର କାରଣ ଥିଲା ଯେ ଯଦିଓ ଓଡିଶାର ଭାସ୍କର୍ଯ୍ୟ ଉପରେ ଅନେକ ଗବେଷଣା ହୋଇସାରିଥିଲା, ସେତେବେଳକୁ ଓଡିଶାର ଚିତ୍ରକଳା ଉପରେ କିଛି କାମ ହୋଇ ନଥିଲା ।

ପ୍ରଶ୍ନ: ଆପଣ children Film Society ସହ ସଂପୃକ୍ତ। ସେ ବିଷୟରେ ଆପଣଙ୍କର ନୂଆ ଯୋଜନା କଥା ପାଠକଙ୍କୁ କହିବେ ?

ଉତ୍ତର: ମୁଁ ବିଭିନ୍ନ ସମୟରେ ଯେଉଁ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ଓ କାର୍ଯ୍ୟକ୍ରମ ସହିତ ଜଡ଼ିତ ରହିଛି, ସେଥିରୁ ଶିଶୁ ଚଳଚ୍ଚିତ୍ର ସମିତି ଅନ୍ୟତମ । ମୁଁ ୧୯୮୫ରୁ ୧୯୯୦ ପର୍ଯ୍ୟନ୍ତ ପାଞ୍ଚ ବର୍ଷ ଏହି ଅନୁଷ୍ଠାନ ସହିତ ସଂପୃକ୍ତ ଥିଲି । ସେହି ସହଯୋଗର ମୋ ପାଇଁ ଦୁଇଟି ସାହିତ୍ୟିକ ସୁଫଳ ଥିଲା। ମୁଁ ଗୋଟିଏ ଶିଶୁ କବିତା ବହି ଲେଖିଥିଲି ('ଅଳିମାଳିକା' ୧୯୯୩) ଏବଂ ସମିତିର ଆନ୍ତର୍ଜାତିକ ଶିଶୁ ଚଳଚ୍ଚିତ୍ର ସମାରୋହବେଳେ (୧୯୮୭) ଭୁବନେଶ୍ୱରରେ ଅନେକ ଦିନ ରହିବା ସମୟରେ 'ଦେଶ କାଳ ପାତ୍ର' ପାଇଁ ଗବେଷଣା କରି ପାରିଥିଲି ।

ପ୍ରଶ୍ନ: ସାହିତ୍ୟିକ ସମାଜ ପ୍ରତି ଅଙ୍ଗୀକାର ରହିବା ଉଚିତ୍। ଏ ସଂପର୍କରେ ଆପଣଙ୍କ ନିଜସ୍ୱ ମତ କ'ଣ ?

ଉତ୍ତର: ସାହିତ୍ୟିକ ସମାଜବଦ୍ଧତା ଓ ସାମାଜିକ ଦାୟିତ୍ୱ ବିଷୟରେ ଦ୍ୱିମତ ହୋଇପାରେନା; ସାହିତ୍ୟିକକୁ ସମାଜମନସ୍କ ହେବାକୁ ହିଁ ହେବ। ସମାଜ ସାହିତ୍ୟିକ ଓ ତାର କୃତିକୁ ସମ୍ମାନ ଦେଉଥିବାରୁ ଲେଖକର ସମାଜ ପ୍ରତି ଏକ ବିଶେଷ ଦାୟିତ୍ୱ ରହିଛି । କୌଣସି ସମସ୍ୟାର ସମାଧାନ ନିରୂପଣ କରିବା ଲେଖକର କର୍ତ୍ତବ୍ୟ ହୋଇ ନପାରେ । କିନ୍ତୁ ସାମାଜିକ ସମସ୍ୟାକୁ ଲୋକମାନଙ୍କ ଆଗରେ ଠିକ୍ ଭାବରେ ଉପସ୍ଥାପିତ କରିବା ସାହିତ୍ୟିକର ଦାୟିତ୍ୱ ନିଶ୍ଚୟ। ଏକଥା ଆଶା କରିବା ଉଚିତ୍ ନୁହେଁ ଯେ, ପ୍ରତି ଲେଖକର ପ୍ରତିଟି ଲେଖା ସମାଜର କୌଣସି ବିଶେଷ ସମସ୍ୟାକୁ ନେଇ ଲେଖା ହେବ। ତେବେ ସବୁ ଲେଖକ ଯଦି ନିଜର ଲେଖାକୁ ସମାଜ ଓ ରାଜନୀତିରୁ ଅଲଗା କରି ନିଅନ୍ତି ତାହା ଚିନ୍ତାର ବିଷୟ ହେବ ।



## ସୁନୀତି ମୁଣ୍ଡଙ୍କ ଅନ୍ୟାନ୍ୟ କୃତି:

୧. ପର୍ଦ୍ଦାପଛର ଚର୍ଯ୍ୟାପଦ (କବିତା)
୨. ଶବ୍ଦ ଖେଳ (କବିତା)
୩. ଯେତେସବୁ ସକାଳ (କବିତା)
୪. ବେପଥୁ ବେହାଗ (କବିତା)
୫. ଦସ୍ତାବିଜ୍ (କବିତା)
୬. ଅନିର୍ଦ୍ଦିଷ୍ଟ (କବିତା)
୭. ଝିଅ (କବିତା)
୮. ଅନୁଷ୍ଟୁପ (ଗଳ୍ପ)
୯. ଛାଇ ଓ ଅନ୍ୟାନ୍ୟ ଗଳ୍ପ (ଗଳ୍ପ)
୧୦. ଅଭିଶପ୍ତା (ଉପନ୍ୟାସ)
୧୧. ଭାଲେଣ୍ଟାଇନ୍ (ଉପନ୍ୟାସ)
୧୨. ବ୍ରେଭ୍‌ର ଦୁଃଖ (ଉପନ୍ୟାସ)
୧୩. ଅଗରବତୀର ଘର (ଉପନ୍ୟାସ)
୧୪. ମାଟ୍ରିମନି ଡଟ୍ କମ୍ (ଉପନ୍ୟାସ)
୧୫. ଜିଗୋଲୋ (ଉପନ୍ୟାସ)
୧୬. ବନ୍ଧୁ ଓ ଅନ୍ୟାନ୍ୟ ଗଳ୍ପ (ଅନୁବାଦ)
୧୭. ଜିବ୍ରାନ୍‌ଙ୍କ ଜୀବନ ଜିଜ୍ଞାସା-୧ (ଅନୁବାଦ)
୧୮. ଜିବ୍ରାନ୍‌ଙ୍କ ଜୀବନ ଜିଜ୍ଞାସା-୨ (ଅନୁବାଦ)
୧୯. ପରିବ୍ରାଜକର ଆଖିରେ (ଭ୍ରମଣ)





"ଧରିତ୍ରୀ" ସାହିତ୍ୟାୟନର ଆଳାପ ସ୍ତମ୍ଭରେ ଧାରାବାହିକ ଭାବେ ପ୍ରକାଶ ପାଇଆସୁଥିବା ବିଭିନ୍ନ ସାହିତ୍ୟ ସାଧକଙ୍କ ସହ ସାକ୍ଷାତ୍‌କାରକୁ ଏକତ୍ର କରାଯାଇଛି ଏହି ସଂକଳନରେ । ଏହିସବୁ ସାକ୍ଷାତ୍‌କାର ଭିନ୍ନ ଭିନ୍ନ ସମୟରେ କରିଥିଲେ ସୁନୀତି ମୁଣ୍ଡ୍ । ସାକ୍ଷାତକାର ସଂକଳନ ପ୍ରକାଶ କରି ସୁନୀତି ଏକ ନୂଆ ଧାରା ସୃଷ୍ଟିର ପ୍ରୟାସ କରିଛନ୍ତି। ସାରସ୍ୱତ ସାଧକଙ୍କ ଫଟୋ ସହିତ ପ୍ରକାଶିତ ଏହି ସାକ୍ଷାତକାରଗୁଡିକ ଖୁବ୍ ହୃଦୟସ୍ପର୍ଶୀ ଓ ଜ୍ଞାନବର୍ଦ୍ଧକ । ସୁନୀତିଙ୍କୁ ଏଥିପାଇଁ ଅନେକ ଶୁଭେଚ୍ଛା ଏବଂ ତାଙ୍କ ସାହିତ୍ୟ ଜୀବନରେ ସେ ଆହୁରି ଯଶସ୍ୱୀ ହୁଅନ୍ତୁ ।

**ତଥାଗତ ସତପଥି**
ସଂପାଦକ, ଧରିତ୍ରୀ




ALAPA
by **Suniti Mund**

**Dakshya Books**
*(A unit of dakshya venture pvt. ltd.)*

Cover design : Prakash Mohapatra